# ଧର୍ମ ସମାଜ ଓ ସାହିତ୍ୟ





ଡକ୍ଟର କାହ୍ନୁଚରଣ ମିଶ୍ର



Digitized by srujanika@gmail.com

# ଧର୍ମ, ସମାଜ ଓ ସାହିତ୍ୟ

ଲେଖକ :
ଡ. କାହ୍ନୁଚରଣ ମିଶ୍ର

ପ୍ରକାଶକ :
ଜେ. ମହାପାତ୍ର ଏଣ୍ଡ କୋ.
କଟକ-୨

୧୯୮୫ ୨୫ ଟଙ୍କା

Digitized by srujanika@gmail.com

# ସୂଚିପତ୍ର

ବିଷୟ — ପୃଷ୍ଠା





Digitized by srujanika@gmail.com

# ସୂଚନା

ଧର୍ମ ସମାଜ ଓ ସାହିତ୍ୟ ଗ୍ରନ୍ଥଟି ଏକୋଇଶଟି ପ୍ରବନ୍ଧର ସମାହାର । ବିଭିନ୍ନ ବିଷୟକୁ ଉପଜୀବ୍ୟ କରି ପ୍ରବନ୍ଧଗୁଡ଼ିକ ସମାଜର ବିଶେଷାଙ୍କ ଓ ସତ୍ୟବାଦୀ, ବୀଣା, ଦିଗନ୍ତ ପ୍ରଭୃତି ମାସିକ ପତ୍ରିକା ଏବଂ ବିଷ୍ଣୁଭିକ୍ଷା ଜୟନ୍ତୀ ଗ୍ରନ୍ଥାଦିରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇଥିଲି । ବନ୍ଧୁ ବାନ୍ଧବଙ୍କର ଅନୁରୋଧରେ ଆଜି ଏଗୁଡ଼ିକ ଗ୍ରନ୍ଥାକାରରେ ରୂପାୟିତ । ଓଡ଼ିଶାର ଧାର୍ମିକ, ସାମାଜିକ ତଥା ସାଂସ୍କୃତିକ ଜୀବନକୁ ସ୍ପର୍ଶ କରିଥିବା କେତେକ ପ୍ରବନ୍ଧ ଏଥିରେ ସ୍ଥାନ ପାଇଛି । ବିଶେଷତଃ ଜଗନ୍ନାଥ-ଧର୍ମ ଓ ଦର୍ଶନର ମହତ୍ତ୍ୱ ତଥା ବିଶେଷତ୍ୱ ଏବଂ ପୁରୁଷୋତ୍ତମ ଧାମର ବିବିଧ ଯାତ୍ରା ଓ ବିଚିତ୍ର ପଙ୍କପଦ୍ମବାଣୀର ଆଲୋଚନା ଏଥିରେ ଅନ୍ତର୍ଗର୍ଭିତ । ଆଦିବାସୀ ଶବରମାନଙ୍କର ଜୀବନୀ ଓ ଓଡ଼ିଆର ଖାଦ୍ୟପେୟ, ବେଶଭୂଷା, ବିଳାସ, ଉପଭୋଗ ଠାରୁ ଆରମ୍ଭ କରି ସାହିତ୍ୟରେ ଧ୍ୱନିବାଦ ପର୍ଯ୍ୟନ୍ତ ବ୍ୟାପକ ବିଷୟରେ ବିସ୍ତୃତ ଆଲୋଚନା କରି ସାଧାରଣରେ ପରିବେଷଣ କରିବାକୁ ମୋର ବହୁଦିନରୁ ବାସନା ଥିଲି ।

ଓଡ଼ିଶାର ଅଗଣିତ ପାଠକ ପାଠିକା ତଥା ସାହିତ୍ୟାନୁରାଗୀ ଅନୁସନ୍ଧିତ୍ସୁମାନଙ୍କ ପ୍ରାଣରେ ଏ ଗ୍ରନ୍ଥ ଆନନ୍ଦ ଓ କୌତୂହଳ ସୃଷ୍ଟି କରି ପାରିଲେ ମୋର ଶ୍ରମ ସାର୍ଥକ ହେବ ।

ଅଧ୍ୟାପକ **କାହ୍ନୁଚରଣ ମିଶ୍ର**

Digitized by srujanika@gmail.com

# ଧର୍ମ, ସମାଜ ଓ ସାହିତ୍ୟ

## ଧର୍ମ ଓ ସମାଜ

ଧର୍ମର ସ୍ୱରୂପ ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ସମାଜ ଓ ସାହିତ୍ୟ ସହିତ ଏହା କିପରି ସଂଯୁକ୍ତ ତାହା ଜାଣିବା ଉଚିତ । ମନୁଷ୍ୟର ଭାଷା, ସମାଜ ଓ ଧର୍ମ ଇତର ପ୍ରାଣୀମାନଙ୍କଠାରୁ ତାହାର ବିଶେଷତ୍ୱର ପରିଚୟ ଦେଇଥାଏ । ସେ ନିଜର ଅନ୍ତର୍ନିହିତ ପ୍ରବୃତ୍ତିକୁ କେବଳ ଯେ ଭାଷା ସାହାଯ୍ୟରେ ଲିପିବଦ୍ଧ କରିଛି ତା'ନୁହେଁ, ତାହାକୁ ରେଖାରେ, ରଙ୍ଗରେ, ସଙ୍ଗୀତରେ ମଧ୍ୟ ପ୍ରକାଶ କରିଛି । ଏହି ପ୍ରକାଶରେ ସେ କେବଳ ନିଜେ ପରିତୃପ୍ତ ନ ରହି ତାହାକୁ ବହୁଜନ ମଧ୍ୟରେ ବିତରଣ ଓ ପରିବେଷଣ କରିବାକୁ ଚେଷ୍ଟା କରିଛି । ପୁଣି ସେ ଦଳ, ସଂଘ, ଗୋଷ୍ଠୀ ଓ ସମାଜ ସୃଷ୍ଟି କରିଛି । କାରଣ, ମନୁଷ୍ୟ ଏକାକୀ ଅପୂର୍ଣ୍ଣ ; ବହୁ ମଧ୍ୟରେହିଁ ତାର ପରିପୂର୍ଣ୍ଣତା । ପୁଣି ତାର ବିରାଟ ଆନନ୍ଦର ଆୟୋଜନ ମଧ୍ୟରେ ନିଜେ ତୃପ୍ତ ଓ ଅନ୍ୟକୁ ପରିତୃପ୍ତ କରାଇ ସେ କେବଳ ସନ୍ତୁଷ୍ଟ ରହି ନାହିଁ; ଜୀବନରେ ଶ୍ରେଷ୍ଠ ସତ୍ୟ ଉପଲବ୍ଧି କରିବାକୁ ସେ ପ୍ରୟାସୀ ହୋଇଛି ।

ସମାଜ, ସାହିତ୍ୟ ଓ ଧର୍ମ ଅଙ୍ଗାଙ୍ଗୀଭାବେ ସଂଯୁକ୍ତ । ଗୋଟିଏ ଦିଗରେ ସମାଜର ପ୍ରଭାବ ସାହିତ୍ୟ ଉପରେ ଯେପରି ସ୍ପଷ୍ଟ, ଅନ୍ୟ ଦିଗରେ ସାହିତ୍ୟର ପ୍ରଭାବ ମଧ୍ୟ ସମାଜ ଉପରେ ସେହିପରି କ୍ରିୟାଶୀଳ । ପୃଥିବୀର ଯେ କୌଣସି ଦେଶୀୟ ବା ଆଞ୍ଚଳିକ ସାହିତ୍ୟକୁ ଲକ୍ଷ୍ୟ କଲେ ଏହାର ସତ୍ୟତା ସହଜରେ ଉପଲବ୍ଧ ହେବ ; କିନ୍ତୁ ସମାଜ ଓ ସାହିତ୍ୟର ଦ୍ୱୈତ ସଂପର୍କରେ ଧର୍ମ କିପରି ଆଲୋକଛଟା ବିକୀରଣ କରି ସମାଜ ଓ ସାହିତ୍ୟକୁ ସର୍ବଦା ନୂତନ ସରଣୀର ସନ୍ଧାନ ଦେଇଛି ଏବଂ ନୂତନ ଯାତ୍ରା ପାଇଁ ପାଥେୟର ଆୟୋଜନ କରିଛି, ତାହାହିଁ ଆମର ଆଲୋଚ୍ୟ । ସମାଜ ଓ ସାହିତ୍ୟ ନିଜ ରୂପରେ ସମ୍ପୂର୍ଣ୍ଣତାର ଅଧିକାରୀ ନୁହନ୍ତି; ଧର୍ମାଦର୍ଶ, ଯାହାକି ମାନବାତ୍ମାର ନିଷ୍କର୍ଷ, ତାହାହିଁ ସମାଜକୁ ଓ ସାହିତ୍ୟକୁ ମଧ୍ୟ ପୂର୍ଣ୍ଣତାର ସ୍ୱାଦୁ ପ୍ରଦାନ କରିଥାଏ । ସମାଜ-ଜୀବନ ଯେପରି ଏକକ ଓ

Digitized by srujanika@gmail.com

ନାଃସଙ୍ଗ ଜୀବନର ପୂର୍ଣ୍ଣ ପ୍ରକାଶ, ସାହିତ୍ୟ ସେହିପରି ସାମାଜିକ ଜୀବନର ଇଚ୍ଛାମୟ ଓ ଆନନ୍ଦମୟ ରୂପର ପୂର୍ଣ୍ଣତର ଅଭିବ୍ୟକ୍ତି ଏବଂ ଧର୍ମ ହେଉଛି ମନୁଷ୍ୟର ସାମାଜିକ ଓ ସାହିତ୍ୟିକ ଜୀବନର ପୂର୍ଣ୍ଣତମ ପରିପ୍ରକାଶ ।

ଧର୍ମ କହିଲେ ଆମେ ସାଧାରଣତଃ ବୁଝୁ କୌଣସି ଦଳଗତ, ଗୋଷ୍ଠୀଗତ, ସାଂପ୍ରଦାୟିକ ଓ ସାମାଜିକ ବିଶ୍ୱାସ । କାଳର ସହସ୍ର ପ୍ରତିବନ୍ଧକ ଓ ଅତ୍ୟାଗ୍ରହ ସତ୍ତ୍ୱେ ଏହି ବିଶ୍ୱାସ ତାହାର ଅନ୍ତରାତ୍ମା ସହିତ ବିଜଡ଼ିତ ହୋଇ ରହିଥାଏ । କିନ୍ତୁ ଧର୍ମ ପ୍ରକୃତରେ ଏହି ଦଳ, ଗୋଷ୍ଠୀ, ସମ୍ପ୍ରଦାୟ ବା ସମାଜଗତ ବିଶ୍ୱାସ ମାତ୍ର ନୁହେ ; ବରଂ ଏହି ସମସ୍ତଙ୍କୁ ଆଧାରିତ କରି ତାହା ଏକ ଆଧାରାତିରିକ୍ତ ପ୍ରତ୍ୟୟ । ଏହି ଧର୍ମ ବିଶ୍ୱାସରେ ଦୁଇଟି ପଥ ଉନ୍ମୁକ୍ତ ; ଗୋଟିଏ ହେଉଛି ସାମାଜିକ ଓ ଅନ୍ୟଟି ହେଉଛି ସାର୍ବଜନୀନ ।

ଧର୍ମର ବହିଃ-ରୂପ ଆଗ୍ରହ ଓ ଅନୁଷ୍ଠାନ ପଦ୍ଧତି ଉପରେ ଆବଦ୍ଧ ରହିଥିଲେହେଁ, ତାହାର ଅନ୍ତର-ରୂପ ସାର୍ବଜନୀନତା ଓ ସାର୍ବଭୌମିକତା ଦିଗରେ ସଂପ୍ରସାରିତ । ଧର୍ମର ଏହି ବାହ୍ୟ ରୂପ କ୍ଷଣିକ ଓ କ୍ଷୟିଷ୍ଣୁ । ତାହା କାଳର ଅଧୀନ ଓ ପରିବର୍ତ୍ତନଶୀଳ ; କିନ୍ତୁ ତାର ଅନ୍ତର-ରୂପର ଦୃଷ୍ଟି ଅଜର, ଅମର ଓ ଅବ୍ୟୟ ।

ବିଶ୍ୱର ଯେ କୌଣସି ଧର୍ମ ଆଡ଼କୁ ଆମେ ଦୃଷ୍ଟିପାତ କଲେ ଲକ୍ଷ୍ୟ କରିହେବ ଯେ ଏହି ଉଭୟ ରୂପ ପ୍ରତି ଦେଶ, ଜାତି ଓ ସଂପ୍ରଦାୟ ମଧ୍ୟରେ ସମାନ୍ତରାଳ ଭାବେ ଗତିଶୀଳ ; କିନ୍ତୁ ଯେଉଁ ଦେଶ, ଜାତି ବା ସଂପ୍ରଦାୟ ବିଶ୍ୱକୁ ନିଜର ସାଂପ୍ରତିକତା ଓ ସମକାଳୀନତାକୁ ଅତିକ୍ରମ କରି କିଛି ଶାଶ୍ୱତ ଓ ଅକ୍ଷୟ ଐଶ୍ୱର୍ଯ୍ୟ ପ୍ରଦାନ କରିଛି, ତାହାହିଁ କେବଳ ଅମରତ୍ୱ ଅର୍ଜନ କରିବା ସଙ୍ଗେ ସଙ୍ଗେ ସ୍ୱକୀୟ ଧର୍ମର ଚିରନ୍ତନତା ବିଶ୍ୱ ଦରବାରରେ ପ୍ରମାଣିତ କରିଛି ।

ଧର୍ମର ଅନ୍ତରାତ୍ମା ପ୍ରତି ଦୃଷ୍ଟିପାତ କଲେ ଆମେ ଲକ୍ଷ୍ୟ କରିବା ଯେ, ପୃଥିବୀର ଯେ କୌଣସି ଧର୍ମର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ହେଉଛି ଏକ, ଅଭିନ୍ନ । ମାନବ ସମାଜ ମଧ୍ୟରେ ମୈତ୍ରୀ ଓ ମଙ୍ଗଳ ବିତରଣ କରିବା ହେଉଛି ତା'ର ମୌଳିକ ଲକ୍ଷ୍ୟ ; କିନ୍ତୁ ଆଗ୍ରହ ଓ ଅନୁଷ୍ଠାନ ପଦ୍ଧତିରେ ବୈଷମ୍ୟ ହେତୁ ଏହା ବିଭିନ୍ନ ରୂପରେହିଁ ପ୍ରଦର୍ଶିତ ଓ ବିବେଚିତ ।

Digitized by srujanika@gmail.com

ଭାରତବର୍ଷର ବୈଦିକ, ଜୈନ, ବୌଦ୍ଧ, ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମକୁ ଲକ୍ଷ୍ୟ କଲେ ଏହାର ସତ୍ୟତା ଉପଲବ୍ଧି କରିହେବ । ଅବଶ୍ୟ ଦେଶ କାଳ ପାତ୍ରାନୁଯାୟୀ ମାନବଜୀବନର ପୂର୍ଣ୍ଣତମ ସତ୍ୟ ଲାଭ କରିବା ସକାଶେ ବିଭିନ୍ନ ଧର୍ମ ନିଜର ଶକ୍ତି ଅନୁଯାୟୀ ସାଧନା କରିଛନ୍ତି ଏବଂ ସିଦ୍ଧିପଥରେ ମଧ୍ୟ ଅଗ୍ରସର ହୋଇଛନ୍ତି ; କିନ୍ତୁ ବିଶ୍ୱଜନୀନତା ହେଉଛି ପ୍ରତ୍ୟେକ ଧର୍ମ ଓ ଦର୍ଶନର ଲକ୍ଷ୍ୟ ଏବଂ ପୂର୍ଣ୍ଣ ସତ୍ୟ ହେଉଛି ଆରାଧ୍ୟ ।

ଆମର ଏହି ଭାରତବର୍ଷରେ କେତୋଟି ବିଶିଷ୍ଟ ଧର୍ମାନ୍ଦୋଳନ ଦେଖାଦେଇଛି । ସେମାନଙ୍କ ମଧ୍ୟରୁ ପୂର୍ବୋକ୍ତ ଜୈନ, ବୌଦ୍ଧ, ଶୈବ, ଶାକ୍ତ ଓ ବୈଷ୍ଣବ ଉପାସନାହିଁ ଉଲ୍ଲେଖଯୋଗ୍ୟ ।

ଏହି ପ୍ରସଙ୍ଗରେ ବୈଦିକ ଧର୍ମ କଥା ଆମେ ଉଲ୍ଲେଖ କରୁନାହୁଁ । କାରଣ ବୈଦିକ ଧର୍ମକୁ ଯଦି ଏକ ବୃକ୍ଷ ରୂପରେ ପରିକଳ୍ପନା କରାଯାଏ ତା'ହେଲେ ଏହି ସକଳ ଧର୍ମ ତାହାର ପଲ୍ଲବିତ, ପୁଷ୍ପିତ ଓ ଫଳାନ୍ୱିତ ଅଭିବ୍ୟକ୍ତି ମାତ୍ର । ଅବଶ୍ୟ କେହି କେହି ଜୈନ ଧର୍ମକୁ ବୈଦିକ ଧର୍ମଠାରୁ ପ୍ରାଚୀନତର ଧର୍ମ ବୋଲି ମତବ୍ୟକ୍ତ କରିଥାନ୍ତି ; କିନ୍ତୁ ଜୈନ ଧର୍ମ ଓ ଦର୍ଶନରେ ଯେଉଁ ଚିନ୍ତାଧାରା ଲିପିବଦ୍ଧ ହୋଇଅଛି, ତାହା ବୈଦିକ ଧର୍ମର ମଧ୍ୟ ଦେଇ ସତ୍ୟ, ଆଲୋକ ଓ ପୂର୍ଣ୍ଣତାର ସନ୍ଧାନୀ ହୋଇଛି । ବୟଃସାଧିକ୍ୟ ଜୀବନରେ ପୂର୍ଣ୍ଣତା ଆଣି ନ ଥାଏ ; ପୂର୍ଣ୍ଣତା ଆଣେ ଜୀବନର ସତ୍ୟଲାଭ ଓ ଜ୍ଞାନାର୍ଜନ । ତେଣୁ ବିଭିନ୍ନ ଧର୍ମ ମଧ୍ୟରେ ଭାରତବର୍ଷର ଆତ୍ମା କିପରି ନିଜକୁ ଆବିଷ୍କାର କରିବାରେ ବ୍ରତୀ, ତାହାହିଁ ଲକ୍ଷ୍ୟ କରିବାର କଥା । ବୈଦିକ ଧର୍ମର ସ୍ପର୍ଶ ଦେଶ, ଜାତି ଉପଲବ୍ଧି କରିବା ସଙ୍ଗେ ପରବର୍ତ୍ତୀ ଯୁଗର ଇସ୍‌ଲାମ-ସୁଫୀ ମତବାଦ ଓ ଖ୍ରୀଷ୍ଟାନ ଧର୍ମର ସଂଘର୍ଷ ଓ ଆଲୋଡ଼ନ କିପରି ଆତ୍ମସାତ୍ କରିଛି, ଭାରତବର୍ଷର ଇତିହାସ ତା'ର ଉତ୍କୃଷ୍ଟ ପ୍ରମାଣ ।

ବିସ୍ମୟବୋଧ ମଧ୍ୟରୁ ବିଭିନ୍ନ ଧର୍ମବିଶ୍ୱାସ କିପରି ଉତ୍ପନ୍ନ ଓ ବିଭିନ୍ନ ବିଶ୍ୱାସ ପ୍ରକୃତିର ଖାମ ଓ କାନ୍ତ କୋଳରେ କିପରି ଲାଳିତ ପାଳିତ ଏବଂ ପ୍ରକୃତି ଓ ମଣିଷର ସଂଘର୍ଷ ମଧ୍ୟରେ ଏହି ବିଶ୍ୱାସ କିପରି ଧର୍ମ ଓ ଦର୍ଶନର ପ୍ରତିଷ୍ଠା ଅର୍ଜନ କରିଛି, ତାହା ଆଜି ଦାର୍ଶନିକ ଆଲୋଡ଼ନରେ ସ୍ପଷ୍ଟ । ତେଣୁ ବିଶ୍ୱର ଯେ କୌଣସି ଧର୍ମ-ଦର୍ଶନର ଅନ୍ତରାଳରେ ତାହାର

Digitized by srujanika@gmail.com

ସାମାଜିକ ଓ ଆତ୍ମିକ ରୂପ ବିଦ୍ୟମାନ । ସେହିପରି, ଭାରତୀୟ ଧର୍ମ-ଦର୍ଶନ ଆମ୍ଭେ ଯେତେବେଳେ ଆଲୋଡ଼ନ କରୁ, ତା'ର ଆତ୍ମିକ ଓ ଅନନ୍ତରୂପ ଆଚରଣ ଓ ଚିରନ୍ତନ ସତ୍ୟ ଆମ୍ଭେ ଲକ୍ଷ୍ୟ କରିଥାଉଁ ।

ଆତ୍ମାର ମୁକ୍ତିହିଁ ପ୍ରତ୍ୟେକ ଧର୍ମ ଓ ଦର୍ଶନର କାମ୍ୟ । ଆତ୍ମା ଓ ପରମାତ୍ମାଙ୍କ ସମ୍ମେଳନରେ ରୂପ ଓ ଅରୂପ, ଏକ ଓ ବହୁ, ସାନ୍ତ ଓ ଅନନ୍ତ କିପରି ସମ୍ମିଳିତ ହୁଅନ୍ତି, ତାହାର ସାଧନାହିଁ ପ୍ରତ୍ୟେକ ଧର୍ମଦର୍ଶନର ମୂଳକଥା ।

Digitized by srujanika@gmail.com

# ଉତ୍କଳର ଖାଦ୍ୟପେୟ
# ଓ
# ବେଶଭୂଷା

କୌଣସି ଜାତିର ପରିଚୟ ପାଇବାକୁ ହେଲେ ତାହାର ବାହ୍ୟ ତଥା ଅଭ୍ୟନ୍ତର ଅଭିରୁଚି, ହାବଭାବ ଓ କ୍ରିୟାକଳାପର ବିଶ୍ଳେଷଣ ଆବଶ୍ୟକ ।

ଜାତୀୟ ପ୍ରଗତି ସଙ୍ଗେ ସଙ୍ଗେ ଆଚାର ବ୍ୟବହାରରେ ମଧ୍ୟ ପରିବର୍ତ୍ତନ ହେବା ସୁନିଶ୍ଚିତ । ଏହା ଦେଶ-କାଳ-ପାତ୍ର ନିର୍ବିଶେଷରେ ସର୍ବତ୍ର ପରିଲକ୍ଷିତ ହୋଇଥାଏ । ଉତ୍କଳର ପୂର୍ଣ୍ଣ ପରିଚୟ ପାଇବାକୁ ହେଲେ ଏହାର ଆଚାର ବ୍ୟବହାର, ଖାଦ୍ୟପେୟ, ବେଶଭୂଷା, ବିଳାସ-ବ୍ୟସନ ଆଦିର ଅନୁଶୀଳନ ତଥା ବିଶ୍ଳେଷଣ ଆବଶ୍ୟକ । ଏଥିଲାଗି ଆଲୋଚକ ନିଜର ଇଚ୍ଛାନୁସାରେ ମତବ୍ୟକ୍ତ କରିବା ଠିକ୍ ନୁହେଁ । ବିଷୟବସ୍ତୁର ସର୍ବାଙ୍ଗସୁନ୍ଦର ପରିଶୀଳନ ତଥା ଅନୁଶୀଳନ ଲାଗି ଜାତୀୟ ପରଂପରା ପ୍ରତି ସମୁଚିତ ଦୃଷ୍ଟି, ସାହିତ୍ୟକ ତଥା ଐତିହାସିକ ଉପାଦାନର ସଂକଳନ ଓ ଦୈନନ୍ଦିନ ରୀତି ଅନୁସାରେ ଏ ସମସ୍ତର ବିଚାର କରିବା ଉଚିତ । ବିଶେଷତଃ ଉତ୍କଳୀୟ ଏପରି ଏକ ଜାତି ଯାହାର ଇତିହାସରେ ଅନେକ ସାଂସ୍କୃତିକ ଆନ୍ଦୋଳନର ଛାପ ଦୃଢ଼ ତଥା ଗମ୍ଭୀର ରୂପରେ ଅଙ୍କିତ । ଯେଉଁ ଜାତିର ସାଂସ୍କୃତିକ ବିକାଶ ସହିତ ପ୍ରତିବେଶୀ ତଥା ବୈଦେଶିକ ଜାତିମାନଙ୍କର ରାଜନୀତିକ ଘାତ ପ୍ରତିଘାତ ଅଙ୍ଗାଙ୍ଗୀ ଭାବେ ଯୁକ୍ତ, ତାହାର ଅନ୍ତଃକରଣ ଉଦ୍‌ଘାଟନ ପାଇଁ ବହୁମୁଖୀ ତଥା ତଥ୍ୟପୂର୍ଣ୍ଣ ବିଚାରାବଳୀର ପ୍ରୟୋଜନ ।

Digitized by srujanika@gmail.com

ଜୀବନଧାରଣ ପାଇଁ ମାନବ ଖାଦ୍ୟ ସଂଗ୍ରହ କରେ ଓ ଦୀର୍ଘଜୀବନ ପାଇବାଲାଗି ସେ ଉପଯୁକ୍ତ ତଥା ପୁଷ୍ଟିକର ଖାଦ୍ୟପେୟ ଦରକାର କରେ । ଆମ ଦେଶର ପୁରାଣ ଶାସ୍ତ୍ରାଦି ଗ୍ରନ୍ଥରେ ମଧ୍ୟ ଆହାର ବିହାରାଦିର ଏକ ନିର୍ଦ୍ଦିଷ୍ଟ କ୍ରମ ତଥା ସମୟ ନିରୂପିତ ହୋଇଛି । ଗୀତାର "ମିତାହାର ବିହାରସ୍ୟ" ଉପଦେଶ ଉପରେ ବିଚାର କରାଯାଇପାରେ । ରାମାୟଣ, ମହାଭାରତ, ଭାଗବତ ଆଦିରେ ଏ ସମ୍ବନ୍ଧରେ ଯେତେ ଉପାଦେୟ ଉକ୍ତିର ଉଲ୍ଲେଖ ଅଛି ସେ ସବୁ ଆଲୋଚନାର ଆବଶ୍ୟକତା ରହିଛି । ମହାଭାରତରେ ଧର୍ମଙ୍କ ପ୍ରଶ୍ନରେ ଯୁଧିଷ୍ଠିର କହିଛନ୍ତି—

"ଦିବସସ୍ୟାଷ୍ଟମେ ଭାଗେ ଶାକଂ ପାଚତି ଯୋ ନରଃ
ଅନୃଣୀ ଚ ଅପ୍ରବାସୀ ଚ ସ ବାରିଚର ମୋଦତେ ।।"

ଅର୍ଥାତ ଯେଉଁ ଲୋକ ଦିବସର ଅଷ୍ଟମ ଭାଗରେ ସାଧାରଣ ଅନ୍ନଶାକାଦି ଭୋଜନ କରେ ସେ ଲୋକ ଋଣ ଓ ପ୍ରବାସରୁ ରହିତ ତଥା ସୁଖୀ ରହେ । ରାତିଭୋଜନ ଅପେକ୍ଷା ଦିବସ ଭାଗର ଭୋଜନ ଶ୍ରେୟସ୍କର । ଏହା ଶାସ୍ତ୍ରସିଦ୍ଧ ଓ ସମ୍ମତ ।

ଭୋଜନରେ କାଳ, ସମୟ, ମୌନ, ଏକାଗ୍ରତା ଆଦିର ପାଳନ ଏକାନ୍ତ ଆବଶ୍ୟକ । ଏ ବିଷୟରେ ମନୁସଂହିତାରେ ଏହିପରି ଉକ୍ତ ଅଛି:— "ବାଗ୍ୟତୋ ଭୂଞ୍ଜ ଆଚରେତ୍" । ଏଥିଲାଗି ମାନବ ମାତ୍ରକେ ଭୋଜନ କରିବା ଲାଗି ଦୁଇଟି ଉପଯୁକ୍ତ ସମୟ ହେଉଛି, ସାୟଂକାଳ ଓ ପ୍ରାତଃକାଳ । ଖାଇବାବେଳେ ମୌନ ରହିବା ଶାସ୍ତ୍ରସମ୍ମତ ।

ଅସମର୍ଥ ବ୍ୟକ୍ତି ତଥା ବାଳକ କେହି ମଧ୍ୟଭାଗରେ ଅତିରିକ୍ତ ଭୋଜନ କରିବା ଅନୁଚିତ । "ସାୟଂ ପ୍ରାତର୍ଦ୍ୱିଜାତୀନାଂ ଅଶନଂ ଶ୍ରୁତିବୋଦିତମ୍, ନାନ୍ତରା ଭୋଜନଂ କୁର୍ଯ୍ୟାତ୍ ଷଟ୍ସୁ ମୌନଂ ବିଧୀୟତେ ।"

ପ୍ରଥମେ ଉତ୍କଳରେ ରନ୍ଧନ ପ୍ରଣାଳୀ ଅତ୍ୟନ୍ତ ସରଳ ଥିଲା । ଆଜିକାଲି ନାନାପ୍ରକାର ମସଲା ଓ ଅତ୍ୟଧିକ ତେଲ ଦ୍ୱାରା ଯେଉଁ ବ୍ୟଞ୍ଜନାଦି ପ୍ରସ୍ତୁତ ହେଉଅଛି ସେଥିରେ ଜନସାଧାରଣଙ୍କର ସ୍ୱାସ୍ଥ୍ୟ ଦ୍ରୁତ ଗତିରେ ଯେ ଅବନତି ଆଡ଼କୁ ଗତି କରିଛି ତାହା ନିଃସନ୍ଦେହ । ଲୋକମାନେ ପୂର୍ବେ କେବଳ ସିଦ୍ଧ କରି ଅଳ୍ପ କିଛି ଲବଣ ସଂଯୋଗ ପୂର୍ବକ ଖାଦ୍ୟାଦି ଭୋଜନ

Digitized by srujanika@gmail.com

କରୁଥିଲେ । ନାନାବିଧ ରନ୍ଧନଶାସ୍ତ୍ର ମଧ୍ୟ ଥିଲା । ରନ୍ଧନକ୍ରିୟାର ବିବିଧ ଶାସ୍ତ୍ର ସମ୍ବନ୍ଧରେ ସାରଳା ଦାସ ସ୍ୱୀୟ ମହାଭାରତର ବିରାଟ ପର୍ବରେ କହିଛନ୍ତି—

"ବାତ ପିତ ଶ୍ଳେଷ୍ମ ଆଦି ତାହାଁ ନାହିଁ ବ୍ୟାଧି
ସମସ୍ତ ପ୍ରସିଦ୍ଧି ହେଲା ରାନ୍ଧଣା ପ୍ରସିଦ୍ଧି
ପାଂଚ ଲକ୍ଷ ସୂପକାର କାର୍ଯ୍ୟ ନିଜେ କଲେ,
ଗୌଶ୍ଚ ଶୌଶ୍ଚ ନଳବିଧି ରାନ୍ଧଣା ରାନ୍ଧିଲେ ।।"

ଏଥିରୁ ଅନୁମିତ ଯେ ପ୍ରାଚୀନ କାଳରୁ ଉତ୍କଳରେ ତ୍ରିବିଧ ଶାସ୍ତ୍ର ଅନୁସାରେ ଖାଦ୍ୟ ପ୍ରସ୍ତୁତ କରାଯାଉଥିଲା । ସେ ଶାସ୍ତ୍ରଗୁଡ଼ିକ ହେଉଛି ଗୌଶ୍ଚ, ଶୌଶ୍ଚ ଓ ନଳ । ବର୍ତ୍ତମାନ ପର୍ଯ୍ୟନ୍ତ ଜଗନ୍ନାଥ ମନ୍ଦିରରେ ଏହି ନଳବିଧି ଅନୁସାରେ ପାକ କରାଯାଉଛି । ଭୀମ ସୂପକାର ରୂପରେ ତ୍ରିବିଧ ରନ୍ଧନ ଦ୍ୱାରା ପ୍ରସ୍ତୁତ ଭୋଜନରେ ସମସ୍ତଙ୍କୁ ତୃପ୍ତ କରିଥିଲେ । ଏଥିରେ ଉତ୍କଳୀୟ ରନ୍ଧନ ପ୍ରଣାଳୀର ଆଦର୍ଶ ମଧ୍ୟ ସୂଚିତ ।

ଗୌଶ୍ଚ ଶାସ୍ତ୍ର—

ଷୋଡ଼ଶ ନ ବାଛି କମ୍ବା ପରିବା ନ କାଟି
ସବୁ ଏକ କରି ଭାଣ୍ଡେ ଦିଅନ୍ତି ତାକୁ ଘାଣ୍ଟି ।
ହେଙ୍ଗୁ ଯେ ମରିଚ ଜିରା ପୁଣି ଦୁଗ୍ଧ ଖଣ୍ଡ
ଏକା ଘାନ୍ତକେ ପୂରାଇ ଘାଣ୍ଟେ ସେହି ଭାଣ୍ଡ ।

ଶୌଶ୍ଚ ଶାସ୍ତ୍ର—

ମୃଗ ମାଂସ କାଢ଼ି କରି ଯାହା ଥାଏ କଂଗୃ
ସବୁ ଏକ ଯୋଗ କରି ପାନେ କରି ଫାନ୍ଦୃ
ତଇଳ କ୍ଷୀର ଲବଣ ଆଦି ପାନେ ଭରି
ଶିଆଳି ଲତା ଗୁଡ଼ାଇ ପନେ ବାନ୍ଧି କରି
ଅଗ୍ନି ଜାଳି କରି ତାକୁ ପୋଡ଼ି କରେ ପକ୍ୱ
ଭୋଜନେ କେ ସରିହେବ ତାହାଠୁଁ ଅଧିକ ।

ନଳ ଶାସ୍ତ୍ର—

ନାନା ଯୋଗାଡ଼ରେ ସେହି ସର୍ବ ଏକ କରି
ଆମିଷ ଆମ୍ବିଳ ଏକ ଭାଣ୍ଡେ ନେଇ ଭରି

Digitized by srujanika@gmail.com

ତାହାକୁ ସିଝାନ୍ତେ ସେହି ମିଶେ ଅତି ବେଗି
ନଳ ବଧି ରାନ୍ଧଣା ଯେ ଅଟେ ସୂର୍ଯ୍ୟପାଗୀ ।

ଉତ୍କଳରେ ବିଭିନ୍ନ ଜାତିର ଲୋକ ବାସ କରନ୍ତି । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ରଙ୍କ ବ୍ୟତୀତ ଅନେକ ଆଦିବାସୀ ତଥା ହରିଜନ ମଧ୍ୟ ଏହି ଭୂମିର ଅଧିବାସୀ । ଆମ୍ଭର ବ୍ୟବହାର ସଦୃଶ ଖାଦ୍ୟପେୟରେ ବିଭିନ୍ନ ଜାତିମାନଙ୍କ ମଧ୍ୟରେ ଭିନ୍ନ ରୀତିମାନ ପରିଦୃଷ୍ଟ ହୋଇଥାଏ । କେହି ଶାକ-ଜୀବୀ, କେହି ମାଂସଜୀବୀ ଏବଂ କେହି ଉଭୟଜୀବୀ । ଅନ୍ନ ବ୍ୟଞ୍ଜନ ହିଁ ଉତ୍କଳର ପ୍ରଧାନ ଖାଦ୍ୟ ଏବଂ ଶାକାନ୍ନ ଭୋଜନ ମଧ୍ୟ ପ୍ରତ୍ୟେକ ଗୃହସ୍ଥର ପ୍ରଚଳିତ ରୀତି ।

ସକାଳ ସମୟରେ ଉତ୍କଳବାସୀ ସାମାନ୍ୟ ଜଳଖିଆ, ଭୁଜା ଚୂଡ଼ା, ପିଠା, ପଖାଳ ମଧ୍ୟ ଖାଏ । ମଧ୍ୟାହ୍ନରେ ତାର ପ୍ରଧାନ ଭୋଜନ ଭାତ, ଡାଲି ଆଦିରେ ସମ୍ପନ୍ନ ହୋଇଥାଏ । ପୁଣି ସାନ୍ଧ୍ୟ ଭୋଜନ ସେହି ଡାଲି ଭାତ ମଧୁର (ଖଟା ମିଠା ତର୍କାରୀ), ବେସର (ସୋରିଷ ମିଶ୍ରିତ ତର୍କାରୀ) ଆଦିରେ ସମ୍ପନ୍ନ ହୁଏ । ସାଧାରଣତଃ ଚାଉଳକୁହିଁ ନାନାପ୍ରକାର ଭାବରେ ପ୍ରସ୍ତୁତ କରି ଅଥବା ଚାଉଳ ଅଟା, ବିରିଅଟା ବା ମାଣ୍ଡିଆ ଅଟାରେ ନାନା ପ୍ରକାର ପିଠା ପ୍ରସ୍ତୁତ କରି ସେମାନେ ଖାଆନ୍ତି ।

ଉତ୍କଳରେ ବାରମାସରେ ତେର ପର୍ବ ଲାଗିଥାଏ । ଅନ୍ୟ କୌଣସିଠାରେ ଏତେ ଉତ୍ସବ ପର୍ବ-ପର୍ବାଣି ଦେଖାଯାଏ ନାହିଁ । ବିଶେଷତଃ ଜଗନ୍ନାଥ ମନ୍ଦିରରେ ଅନୁଷ୍ଠିତ ଦ୍ୱାଦଶ ଯାତ୍ରା ତଥା ପର୍ବ ଆଦିରେ ଭୋଗାଦିର ଯେଉଁ ବ୍ୟବସ୍ଥା ଅଛି ଏବଂ ଭିନ୍ନ ଭିନ୍ନ ଋତୁରେ ଜଗନ୍ନାଥ ମହାପ୍ରଭୁଙ୍କୁ ଭିନ୍ନ ଭିନ୍ନ ଭୋଗାର୍ପଣର ଯେଉଁ ପଦ୍ଧତି ଅଛି ସେଥିରେ ଉତ୍କଳୀୟ ଜନ-ସାଧାରଣଙ୍କର ସାମାଜିକ ତଥା ପାରିବାରିକ ଜୀବନର କମ୍ ପ୍ରଭାବ ପଡ଼ିନାହିଁ । "ଯଥା ଦେହେ ତଥା ଦେବେ" ଏହା ହେଉଛି ଉତ୍କଳର ଦୃଷ୍ଟିକୋଣ । ଏଥିଲାଗି ଦେବମନ୍ଦିରମାନଙ୍କରେ ଯେଉଁ ପ୍ରକାର ଭୋଗ ଓ ପିଷ୍ଟକାଦିର ପରିଚୟ ମିଳେ ସେହି ପ୍ରକାର ଉତ୍କଳର ପ୍ରତ୍ୟେକ ଘରେ ମଧ୍ୟ ଅନୁସୃତ ହୋଇଥାଏ ।

ପ୍ରତିଦିନ ଧୂପ-ଆରତି ସମୟରେ ଜଗନ୍ନାଥ ମହାପ୍ରଭୁଙ୍କ ନିକଟରେ ମହାପ୍ରସାଦ ଓ ଶତାଧିକ ପିଷ୍ଟକ ଭୋଗ ସମର୍ପିତ ହୁଏ । ଛେନା, ବିରି,

Digitized by srujanika@gmail.com

ଚାଉଳ, ସୁଜି ତଥା ଗହମ ଅଟାରେ ଯେଉଁ ବିବିଧ ପ୍ରକାରର ପିଷ୍ଟକ ଭୋଗ ଲଗାଯାଏ ସେ ମଧ୍ୟରୁ ନିମ୍ନୋକ୍ତ ୫୭ ପ୍ରକାରର ଭୋଗ ହେଉଛି ପ୍ରଧାନ— କାକରା, ପିଠା, ଆରିସା, ପୁ, ଭଜାମଣ୍ଡା, ଠୋଲିକା, ଚଟାଉମଣ୍ଡା, ପାଣିମଣ୍ଡା, ପାଣିଗଇଁଠା, ଛେନା ଚାଡ଼ଆ, ଚାଡ଼ଆ, ଝର ଚାଡ଼ଆ, ନଡ଼ଆ-ବଡ଼ା, ବେସନବଡ଼, ଚଟଡାଉ, ମଣ୍ଡା, ଏଣ୍ଡୁରି, କାନ୍ତି, ନଳମନ, ଗୁପ୍ତିଚନ୍ଦ୍ର, ଛେନାଖଇ, ଛେନାକାଣ୍ଟା, ଝଡବଣ୍ଟା, ଜଗନ୍ନାଥ ବଲ୍ଲଭ, ଖୁରୁମା, ଲୁଣିଖୁରୁମା, ଖଜା, ଖସ୍ତା, ମୋହନଭୋଗ, ଲକ୍ଷ୍ମୀବିଳାସ, ଗୋପାଳବଲ୍ଲଭ, ବଦଳୀ ବଡ଼ା, ସୁଣ୍ଠିଗଜା, ମାଠପୁଳି, ଟାକୁଆ, ଶରପିଠା, ଝରବରା, ଜେନାମଣି,ପଦ୍ମଆରସା, ପାଗ ଆରସା, ଚଡ଼େଇ ନେଦା, ଝିରି ନାଡ଼ୁ, ବିପ୍ଲବୀ, ଆଳପକା, ମନୋହର, କାନିକା, ବଡ଼ ବଡ଼ା, ସରପୁଳି ପିଠା, କାନ୍ତିକା, ଥିଉଡ଼, ବଡ଼କୋରା, ସାନପିଠା, ସାନ କାନ୍ତି, ପାନ ଅମାଲୁ, ଘିଅଭରଡ଼, ଚଟାଉ ଆଦି ଏଥିରେ କେତେକ ନୁଣିଆ କେତେକ ମିଠାଳିଆ ଆଉ କେତେକ ମିଶ୍ରିତ ।

ଏତଦ୍‌ବ୍ୟତୀତ ଉତ୍କଳୀୟ ପରିବାରରେ ବୁଢ଼ା ଚକୁଳି, ସରୁଚକୁଳି, ଚକୁଳି, ଖୁଦମଣ୍ଡା, ପୋଡ଼ପିଠା, ଖୁଦଚକୁଳି ଆଦି କେତେ ପ୍ରକାର ପିଠା ପ୍ରସ୍ତୁତ ହୁଏ । ଏ ସମସ୍ତର ସ୍ୱାଦ ପ୍ରତ୍ୟେକ ଗୃହସ୍ଥହିଁ ଅନୁଭବ କରେ ।

ଅନ୍ନ ମହାପ୍ରସାଦ ସହିତ ଡାଲି, ମହୁର, ବେସର, ଭଜା, ରାଇ, ମଣ୍ଡାରାଇ, ଶାକର, ଡାଲମା ଇତ୍ୟାଦି ବ୍ୟଞ୍ଜନ ଭୋଗ ରୂପରେ ପ୍ରତିଦିନ ଜଗନ୍ନାଥ ମନ୍ଦିରରେ ନୈବେଦ୍ୟ ରୂପରେ ସମର୍ପଣ କରାଯାଏ ।

ଏହା ଆମ ଖାଦ୍ୟର ଆଦର୍ଶ । ଅନ୍ନ ସହିତ ଡାଲି, ମହୁର, ବେସର ଆଦିର ସଂଯୋଗ ଆମ ଲୋକଙ୍କର ଅଭ୍ୟାସ ତଥା ଜାତିଗତ ଭୋଜନ ବିଧାନ । ଗହମ ରୋଟି, ସୁଜିରୋଟି ପ୍ରଭୃତି ଖାଦ୍ୟ ଅଳ୍ପଦିନ ହେଲା ପ୍ରଚଳିତ । ସମ୍ଭ୍ରାନ୍ତ ପରିବାର ଅଥବା ରାଜବଂଶୀୟ ଲୋକ ଏହାର ଅଧିକାରୀ ଥିଲେ । କିନ୍ତୁ ମଧ୍ୟବିତ୍ତ ପରିବାର ତଥା କୃଷୀ ମୂଲିଆଙ୍କପାଇଁ ପଖାଳ ହେଉଛି ପ୍ରଧାନ ଖାଦ୍ୟ । ଭାତକୁ ଧୋଇ କରି ସେମାନେ ଖାଆନ୍ତି । ବାସି ତେଜଦିଆ ଏହି ପଖାଳରେ ଖାଦ୍ୟସାର ନିହିତ । ଏଥିଲାଗି ଏହା ନିତ୍ୟ ବ୍ୟବହାର୍ଯ୍ୟ । ମାଣ୍ଡିଆ ଜାଉ ମଧ୍ୟ ଦୈନିକ ବ୍ୟାବହାରିକ ଖାଦ୍ୟ । ମାଣ୍ଡିଆ ଜାଉ ତଥା ପଖାଳରେ ପ୍ରଚୁର ଖାଦ୍ୟସାର ଥିବା କଥା ଗବେଷକମାନେ ଦୃଢ଼ରୂପେ ସ୍ୱୀକାର କରିଛନ୍ତି ।

Digitized by srujanika@gmail.com

ଆମର ଏଠାରେ ସାଧାରଣତଃ ଉଷୁନା ଚାଉଳକୁ ପାକକରି ଭୋଜନ କରାଯାଏ । କିନ୍ତୁ ଅରୁଆ ଚାଉଳର ଖାଦ୍ୟ ମଧ୍ୟ ଶାସ୍ତ୍ରପ୍ରସିଦ୍ଧ । ଭୋଜି ଏବଂ ଶ୍ରାଦ୍ଧ ଆଦିରେ ଅରୁଆ ଚାଉଳ ନୈବେଦ୍ୟରୂପେ ବ୍ୟବହାର କରାଯାଏ । ବିଭିନ୍ନ ପ୍ରକାର ଭଜା ଆମର ବ୍ୟଞ୍ଜନମାନଙ୍କ ମଧ୍ୟରେ ପ୍ରଧାନ । ପିତାଶୁଖୁଆ, କଳରା, ଓଉ ଖଟା ଆଦି ଧନୀ ଲୋକମାନେ ନ ଖାଇଲେ ମଧ୍ୟ ଏହା ସାଧାରଣ ଗୃହସ୍ଥର ଦୈନିକ ଖାଦ୍ୟ । ଯେତେପ୍ରକାର ଖାଦ୍ୟସାର (ଭିଟାମିନ) ଆଜିକାଲି ବାହାରିଛି ସେ ସମସ୍ତ ଆମର ଖାଦ୍ୟରେ ପ୍ରଚୁର ରୂପେ ମିଳିଥାଏ । ଉଷୁନା ଚାଉଳ, ଗଇଁଠା, କଣ୍ଡାପିଠା ଆଦିରେ ଖାଦ୍ୟସାର ପୂର୍ଣ୍ଣମାତ୍ରାରେ ଅଛି । ତେଣୁ ତାହା ଗରିବର ରୁଚିକର ଖାଦ୍ୟ ।

ବହୁ ପୂର୍ବରୁ ଆମର କୃଷକ ପରିବାରରେ ଖୁଦୁରୁକୁଣି ବା ଖୁଦ ରୁକୁଣୀ ବ୍ରତ ଚାଲି ଆସୁଅଛି । ତଅପୋଇ ନାମକ ପୁସ୍ତକରେ କେତେକ ବ୍ୟଞ୍ଜନର ସଙ୍କେତ ମିଳିଥାଏ ।

"ଖୁଦ କଣ୍ଡାରେ ପିଠା କରି
ଖୁଦ ତଣ୍ଡୁଳ ଘୃତରେ କରି
ସଖୀଙ୍କୁ ମାଗିଲା ବହନ
ଫଳଫୁଲରି ପିଠାମାନ ।"

ଏହି ବ୍ୟଞ୍ଜନରେ ପୁଷ୍ଟିସାର ତଥା ଧାତବ ଲବଣ ପର୍ଯ୍ୟାପ୍ତ ମାତ୍ରାରେ ମିଳେ । ଓଡ଼ିଆ ଘରେ କାଞ୍ଜି ବା ବାସିତୋରାଣୀ ମଧ୍ୟ ଦୈନିକ ଖାଦ୍ୟ ରୂପେ ବ୍ୟବହୃତ । ଏହା ମସ୍ତିଷ୍କ ପକ୍ଷରେ ଉପକାରୀ ବୋଲି ସାଧାରଣରେ କଥିତ ।

ଆୟୁର୍ବେଦରେ ଏହି କାଞ୍ଜିର ଉପକାରିତା ବର୍ଣ୍ଣିତ ହୋଇଛି । ଏହା ବ୍ୟତୀତ ବିଭିନ୍ନ ଋତୁରେ ଏକ ଏକ ସ୍ୱାସ୍ଥ୍ୟକର ତଥା ସ୍ୱାସ୍ଥ୍ୟବର୍ଦ୍ଧକ ପଦାର୍ଥର ଭୋଜନ ସମ୍ବନ୍ଧରେ ଓଡ଼ଣୀ ପ୍ରବଚନ ରହିଅଛି । ଏହା ଅଧ୍ୟୟନ କଲେ ପ୍ରତୀତ ହୁଏ ଯେ, ଓଡ଼ିଆମାନେ କେତେ ସରସ ପ୍ରାଣ—

"ମାଘେ ଦହି ପୁଷେ ଖଇ
ଚଇତେ ନିମ ଚକୁଲି ଖାଇ" ତଥା
ଅନ୍ତେ ତକ୍ର ଦନ୍ତେ ଲୁଣ,

Digitized by srujanika@gmail.com

ପେଟ ପୂରିବ ତିନିକୋଣ
ମଥାରେ ବସନ ପାଦେ ତେଲ ।
ବଇଦ ସଙ୍ଗରେ କରିବ ଗେଲ ।।"

ମାଘରେ ଦହି, ପୌଷରେ ଖଇ ତଥା ଚୈତ୍ରରେ ନିମ ଅତ୍ୟନ୍ତ ପ୍ରୟୋଜନ । ପୁଣି ପେଟରେ ସର୍ବଦା କିଛି ଉକ୍ତ ପଦାର୍ଥ ପଡ଼ିବା, ପେଟର କେବଳ ତିନିଭାଗ ପୂର୍ତ୍ତି କରି ଭୋଜନ କରିବା ତଥା ଠେସି କରି ନ ଖାଇବା ଉଚିତ । ପ୍ରବଚନ ଅନୁସାରେ ଦାନ୍ତର ମଜବୁତ ଲାଗି ସେଥିରେ ଲବଣ ପ୍ରୟୋଗ କରିବା ମଧ୍ୟ ବିଧେୟ ।

## ବେଶ-ଭୂଷା

ଯେପରି ଉତ୍କଳବାସୀ ବିବିଧ ଖାଦ୍ୟ ସାମଗ୍ରୀ ବ୍ୟବହାର କରନ୍ତି ସେହିପରି ନିଜକୁ ବିଭିନ୍ନ ବେଶଭୂଷାରେ ସଜାଇବାକୁ ମଧ୍ୟ ଚାହାନ୍ତି । ଆଜିକାଲି ଅବଶ୍ୟ ଆମ ଶିକ୍ଷିତ ସମାଜରେ ବେଶଭୂଷା, ପୋଷାକ ପରିଚ୍ଛଦ, ଚାଲିଚଳନ, ଆଚାର ବ୍ୟବହାରରେ ଘୋର ପରିବର୍ତ୍ତନ ପରିଲକ୍ଷିତ । ପ୍ରାଚୀନକାଳରେ ଉତ୍କଳୀୟ ଯେପରି ସବୁ ବିଷୟରେ ସ୍ୱତନ୍ତ୍ର ଥିଲେ ସେହିପରି ବେଶଭୂଷାରେ ମଧ୍ୟ ସ୍ୱକୀୟ ବୈଶିଷ୍ଟ୍ୟ ରକ୍ଷା କରିଥିଲେ । ଏହି କଳା ଓ କଳ୍ପନାପ୍ରିୟ ଜାତି ବହୁପ୍ରକାର ବେଶଭୂଷା ତଥା ଅଳଙ୍କାର କଳ୍ପନା କରିଥିଲେ । ଆଜିଠାରୁ ୫୦୦ ବର୍ଷ ପୂର୍ବେ ଆଦିକବି ସାରଳା ଦାସ ତାଙ୍କର ମହାଭାରତରେ ପୁରୁଷ ଓ ନାରୀର ବେଶଭୂଷା ଏବଂ ଅଳଙ୍କାରର ସୁସ୍ପଷ୍ଟ ପରିଚୟ ଦେଇଛନ୍ତି । ସେ ସମସ୍ତ ସଂଗୃହୀତ ଓ ଲିପିବଦ୍ଧ ହେଲେ ଏକ ବିରାଟ ନିବନ୍ଧ ହେବ ।

ପୂର୍ବେ ଆମ ଦେଶରେ ବୟନ ଶିଳ୍ପ ଯେ ବହୁତ ଉନ୍ନତ ଅବସ୍ଥାରେ ଥିଲା ତାହା କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସ୍ୱୀୟ 'ବୈଦେହୀଶ ବିଳାସ' କାବ୍ୟରେ ଲିପିବଦ୍ଧ କରି ଯାଇଅଛନ୍ତି ।

ବେଢ଼ରେ ପାଦରେ ଲେଖିଲେ ଲାକ୍ଷା
ବାରିହେଲା ବେନି ରଙ୍ଗ କି ଦକ୍ଷା
ବିକଶିତ କୋକନଦ ମଧ୍ୟରେ
ବେଢ଼ି ଭ୍ରମେ କି ସରସ୍ୱତୀ ନୀର ସେ

Digitized by srujanika@gmail.com

ବଂଶୀ ନଳୀରେ ଥିବାର ଯେ
ବାଛି ପିନ୍ଧି ଦୁର୍ବାଦଳ ନୀଳ ରେଳ
କୋଳ ଇଚ୍ଛି ଶ୍ରୀରାମର ଯେ ।
ଧୁନଷ୍ଟ—ବଂଶ ନଳୀରେ ରଖି ଲେଖି ବସନ
ନେଲେ ସୀତା ପାଇଁ ଆଣି
ବହିଲେ ସେ ପାଟ ଲକ୍ଷଣ ଇକ୍ଷ୍ୱାକୁ—
କୁଳର ଯେ ଚୂଡ଼ାମଣି
ବାହାରିଲେ ସେ ତିନି,
ବସ୍ତ୍ର ବୋଧନ୍ତି ରାମ ଜନନୀ ।

ରାମଚନ୍ଦ୍ର, ଲକ୍ଷ୍ମଣ ଓ ସୀତା ଚଉଦ ବର୍ଷ ଲାଗି ବନକୁ ଯାଇଥିଲେ । ସେମାନଙ୍କ ପରିଧେୟ ବସ୍ତ୍ର ୧୪ବର୍ଷ ପାଇଁ ବାଉଁଶ ନଳୀରେ ସଞ୍ଚିତ ହୋଇଥିଲା । ଏଥିରୁ ଅନୁମାନ କରାଯାଇପାରେ ଯେ, ପୂର୍ବେ କପର ସୂକ୍ଷ୍ମ ବସ୍ତ୍ର ନିର୍ମିତ ହେଉଥିଲା ।

ସେ ସମୟରେ ସୂକ୍ଷ୍ମ ଦୂବ ସମାନ ସବୁଜ ବର୍ଣ୍ଣ ବସ୍ତ୍ର ବୟନ କରାଯାଉଥିଲା । ଉତ୍କଳର କେବଳ ସମ୍ଭ୍ରାନ୍ତ ବଂଶ ନୁହନ୍ତି, ମଧ୍ୟମ ଶ୍ରେଣୀ ଲୋକମାନେ ମଧ୍ୟ ପଟ୍ଟବସ୍ତ୍ର ପରିଧାନ କରୁଥିଲେ । ବନାରସୀ ପାଟ ସଦୃଶ ଓଡ଼ିଶାରେ ବ୍ରହ୍ମପୁରୀ ପାଟ ଅତ୍ୟନ୍ତ ପ୍ରସିଦ୍ଧ । ଆଜି ମଧ୍ୟ ବହୁବ୍ୟକ୍ତି ବ୍ରହ୍ମପୁରୀ ପାଟ ବ୍ୟବହାର କରୁଥିବାର ଦେଖାଯାଏ ।

କିନ୍ତୁ ସାଧାରଣ ଲୋକ ରଣପୁରୀ ଧୋତି, ପୁରୀର ଜାନକାଦେଈପୁରୀ ଗାମୁଛା, କଟକର କେନ୍ଦ୍ରାପଡ଼ା ଗୁଜୁନଗରର ଓଢ଼ଣୀ, ଦକ୍ଷିଣୀ ଧୋତି, ବ୍ରହ୍ମପୁରର ପାଟ, କମରକଞ୍ଚା, ଗେଞ୍ଜି ଫରାସ, ମିରେଦେଇ ଗେଞ୍ଜି, ଅଙ୍ଗ-ଦୁଲେଇ, ଦୁଲଇ ବନାତ ଆଦିର ବ୍ୟବହାର କରୁଥିଲେ ! ପାଦରେ ଯୋତା, ଖଡ଼ମ ତଥା ମୁରଗି ଯୋତା ମଧ୍ୟ ପିନ୍ଧୁଥିଲେ । ଏବେ ମଧ୍ୟ କୌଣସି କୌଣସି ଅଞ୍ଚଳରେ ପୁରୁଷମାନେ ଖଡ଼ୁ, ବୋଲ, କୁଣ୍ଡଳ, ଫାସିଆ, ଚରବଲ, ତାବଜ, ଅନନ୍ତ, ହରମନଆ କଣ୍ଠି, ସୁନା ସୂତା, ରୂପା ସୂତା, ମୁଦି ଓ ମହୁଡ଼ବସା ମୁଦି ଆଦି ପରିଧାନ କରୁଛନ୍ତି । ମୁଣ୍ଡରେ ଚୁଟି ରଖୁଛନ୍ତି । ଅଧିକାଂଶ ପୁରୁଷ କଚ୍ଛମାରି ଲୁଗା ପିନ୍ଧନ୍ତି । ଉଚ୍ଚ ବର୍ଣ୍ଣର

Digitized by srujanika@gmail.com

ଲୋକ ରଙ୍ଗପୁର ଯୋଡ଼, ଦକ୍ଷିଣୀ ଯୋଡ଼ ଗୁଡ଼ିକ ପିନ୍ଧିବାରେ ଅଭ୍ୟସ୍ତ । ଗରିବ ଲୋକ ପଖାଳ କରିଆ ରଙ୍ଗିନ ଗାମୁଛା ବ୍ୟବହାର କରନ୍ତି । କନ୍ଧ, କୋହ୍ଲ, ଶବର ଜାତୀୟ ଲୋକେ କେବଳ କଚ୍ଛମାରି ଯାତାୟାତ କରନ୍ତି । କେହି କମରବନ୍ଧ ଉପରେ ଲୁଗା ପରିଧାନ କରିଥାନ୍ତି । ଏହା ଦେଢ଼ ବୃଖଣ୍ଡ ଚଉଡ଼ା ଓ ଏଗାର ହାତ ଲମ୍ବ ହୋଇଥାଏ । ଏଥିରେ କଣ୍ଠି ଧୂଡ଼ି ଓ ମଜବୁତ୍ ହୁଏ । ଏବେ ମଧ୍ୟ ଗ୍ରାମରେ ଲୋକମାନେ ଏହିପରି କମର କଚ୍ଛ ତଥା ପଖାଳ କରିଆ ଗାମୁଛା ପିନ୍ଧୁଛନ୍ତି । ପୁରୁଷମାନେ ମଧ୍ୟ ନିକଞ୍ଚ ପିନ୍ଧୁଥିଲେ, ଆଜି ତାହା ବିରଳ ।

ସ୍ତ୍ରୀଲୋକମାନେ ବଳଗଣ୍ଡିଆ ଶାଢ଼ୀ, ଦକ୍ଷିଣୀ ଶାଢ଼ୀ, କଣିକାଂଛ ଶାଢ଼ୀ, କାଞ୍ଚନ, ଝୁରି ଝୁମ୍ପା, ଅଙ୍ଗ, କାଞ୍ଚଲ ପିନ୍ଧୁଛନ୍ତି । ପ୍ରତ୍ୟେକ ଗୃହସ୍ଥର ଘରେ ବ୍ରହ୍ମପୁରୀ ଶାଢ଼ୀ ନିଶ୍ଚୟ ମିଳିବ ।

ଦକ୍ଷିଣୀ ଶାଢ଼ୀ ୧୩ ହାତ ଲମ୍ବ । କଣିଆ କାଂଛ ଶାଢ଼ୀ ମଧ୍ୟ ୧୩-୧୪ ହାତ ହୋଇଥାଏ । ସ୍ତ୍ରୀଲୋକମାନେ ୧୨-୧୪ ହାତରୁ କମ ଲମ୍ବ ଶାଢ଼ୀ ପିନ୍ଧନ୍ତି ନାହିଁ । ସେମାନେ କଚ୍ଛମାରି ପିନ୍ଧନ୍ତି । ସେବକ ଘରର ସ୍ତ୍ରୀଲୋକମାନେ ତିନି ଦଶ କୋଡ଼ିଆ ପିନ୍ଧନ୍ତି—ଯେଉଁଥିରେ କି ଗୋଟିଏ ପିନ୍ଧିବାରେ, ଦ୍ୱିତୀୟଟି ଗୁଡ଼େଇ ହେବାରେ ଏବଂ ତୃତୀୟଟି ଘୋଡ଼େଇ ହେବାରେ ପ୍ରଯୁକ୍ତ ହୋଇଥାଏ । ଆଜିକାଲି ଏପରି ଶାଢ଼ୀ ବହୁତ କମ ଦେଖିବାକୁ ମିଳେ । ହରିଜନ ସ୍ତ୍ରୀଲୋକମାନେ କେବଳ ପଖାଳକରା ଶାଢ଼ୀ ପିନ୍ଧନ୍ତି ଏବଂ କୌଣସିଠାକୁ ଯିବା ଆସିବା ଲାଗି ଚନ୍ଦ୍ରକଣୀ ଶାଢ଼ୀ ବ୍ୟବହାର କରନ୍ତି । ଏହା ବ୍ୟତୀତ ଯାତ୍ରା ଅଥବା ଉତ୍ସବରେ ରଙ୍ଗିନ ପାଟଫୁଲ ଶାଢ଼ୀ ମଧ୍ୟ ବ୍ୟବହାର କରନ୍ତି । ଝୁରିଝୁମ୍ପା ଅଙ୍ଗ କାଞ୍ଚଲକୁ ପଛପଟେ ଅଙ୍ଗୀ ଭାବେ ବ୍ୟବହାର କରନ୍ତି । ସାଧାରଣତଃ ସ୍ତ୍ରୀମାନେ କଚ୍ଛମାରି ଦୋପଡ଼ ଶାଢ଼ୀ ପିନ୍ଧନ୍ତି । ଏହା ଘରର ନାରୀର ଚିହ୍ନ ; କିନ୍ତୁ ଏବେ ସେମାନେ ଆଜିକାଲିର ମିଲ୍ ଶାଢ଼ୀ ଅପେକ୍ଷା ସମ୍ବଲପୁରୀ ଶାଢ଼ୀର ବ୍ୟବହାର ବହୁଳାଂଶରେ କରୁଛନ୍ତି । ସମ୍ବଲପୁରୀ ଶାଢ଼ୀ ଆମ ଦେଶରେ ଗୃହଆଡ଼େ ବ୍ୟବହୃତ ହେଉଅଛି । ଓଡ଼ିଆଣୀ ବ୍ୟତୀତ ଅନ୍ୟ ଜାତିର ସ୍ତ୍ରୀଲୋକମାନେ ମଧ୍ୟ ସମ୍ବଲପୁରୀ ଶାଢ଼ୀ ପିନ୍ଧନ୍ତି । ଏହା ବହୁତ ସୁନ୍ଦର ତଥା ମଜବୁତ୍ । ଏଥିଲାଗି ସର୍ବତ୍ର ଏହାର ସମାଦର ଅତ୍ୟଧିକ ।

Digitized by srujanika@gmail.com

ଉତ୍କଳର ନାରୀମାନେ ସାଧାରଣତଃ ନାନାବିଧ ଅଳଙ୍କାର ପ୍ରିୟ । ସେମାନେ ବିଭିନ୍ନ ଅଙ୍ଗକୁ ବିଭିନ୍ନ ଅଳଙ୍କାରରେ ସୁଶୋଭିତ କରି ସୁଖ ପାଆନ୍ତି । ପୂର୍ବେ ଉତ୍କଳୀୟ ନାରୀ ବହୁମୂଲ୍ୟ ରତ୍ନ, ମଣିମୁକ୍ତା ଜଡ଼ିତ ଅଳଙ୍କାର ପିନ୍ଧୁଥିଲେ । କିନ୍ତୁ ଆଜିକାଲି ଏହା ଧନୀ ତଥା ସମ୍ଭ୍ରାନ୍ତ ବଂଶୀୟ ସ୍ତ୍ରୀମାନେ ପିନ୍ଧୁଛନ୍ତି । ପାଦରେ, ହାତରେ ତଥା ମସ୍ତକରେ ସୁନା ରୂପାର ନାନାବିଧ ଅଳଙ୍କାର ଦେଖିଲେ ଜଣାଯାଏ ଯେ, ପୂର୍ବେ ଏ ଜାତି ଅତ୍ୟନ୍ତ ବିଳାସ ବ୍ୟସନରେ ତଥା ସୁଖରେ ରହୁଥିଲି । ବହୁଦିନ ଯାବତ ଆନ୍ତର୍ଜାତିକ ତଥା ସାମୁଦ୍ରିକ ବାଣିଜ୍ୟ-ବ୍ୟବସାୟ ଫଳରେ ଏ ଜାତି ନିଜକୁ ଏକ ସମୃଦ୍ଧ ଓ ସାହସୀ ଜାତି ରୂପରେ ପ୍ରତିପନ୍ନ କରିଥିଲି । ଜାଭା, ସୁମାତ୍ରା, ବାଲି ଆଦି ଦ୍ୱୀପ ବ୍ୟତୀତ ଓଡ଼ିଆମାନେ ଆନ୍ତର୍ଦେଶୀୟ ବାଣିଜ୍ୟରେ ମଧ୍ୟ ଅଗ୍ରଗାମୀ ଥିଲେ ।

ରୋମ ସାମ୍ରାଜ୍ୟରେ ଏହିପରି ବାଣିଜ୍ୟର ଉନ୍ନତି ହୋଇଥିଲି । ଏଥିରେ ପ୍ରଚୁର ସ୍ୱର୍ଣ୍ଣ ରପ୍ତାନି କରାଯାଉଥିଲି । ଏଥିଯୋଗୁ ବିଖ୍ୟାତ ଐତିହାସିକ ଟୋଲେମୀ ଏହାକୁ ବନ୍ଦ କରିଦେବାକୁ କହିଥିଲେ । ତାଙ୍କ ମତରେ ଯଦି ଭାରତୀୟ ବଣିକ ଏହି ପ୍ରକାର ବ୍ୟବସାୟ କରିବାରେ ଲାଗିବେ ତେବେ ରୋମ ଅତିଶୀଘ୍ର ଅନ୍ତଃସାର ଶୂନ୍ୟ ହୋଇଯିବ । ଯାହାହେଉ ବିଭିନ୍ନ ପ୍ରକାରର ମଣି-ମୁକ୍ତା ଖଚିତ ଅଳଙ୍କାରର ପ୍ରାଚୁର୍ଯ୍ୟ କେବଳ ଉତ୍କଳରେ ଦେଖିବାକୁ ମିଳିବ ।

ଉତ୍କଳୀୟ ସ୍ତ୍ରୀମାନଙ୍କର ମସ୍ତକାଳଙ୍କାରରେ ରତ୍ନଝୁଂପି, ହୀରାକାଠି, ଝରିମୋତି, କୁସୁମଝରି, ଝିଲିମିଲି, ଚନ୍ଦ୍ରଝୁଂପି, ଝଲକା, ପାନପତରୀ, ମଥାମଣି ପ୍ରଧାନ ।

ହସ୍ତାଳଙ୍କାରମାନଙ୍କ ମଧ୍ୟରେ ଝୁଂପା, ତାଜ, ତାଡ଼, ଖଡ୍ଡୁ-କଙ୍କଣ, ଚୂଡ଼ି, ଅନନ୍ତ, ବାଜୁ, ବାଲି, ବଟଫଳ, କାଇଁଚ, ହାତପଦ୍ମତିଖା, ଅଙ୍ଗୁଳି, ଖଡ୍ଡୁ, କମଛଡ, କମନୁଆତାଡ଼ ପ୍ରଧାନ ।

ପଦାଳଙ୍କାରମାନଙ୍କ ମଧ୍ୟରେ ବଳା, ପାପଦ୍ମ, ପାହୁଜ, ପାହୁଡ଼, ନୂପୁର, ବାଜେଣୀ, ପଞ୍ଝମ, ଝମକ-ଝୁଣ୍ଟିଆ, ଘଣ୍ଟିବଳା, କମଟଙ୍କ, ବାଙ୍କିଆ ପ୍ରଧାନ ।

Digitized by srujanika@gmail.com

କଟିରେ ମଧ୍ୟ ଚନ୍ଦ୍ରହାର ଅଣ୍ଟାସୂତା, କଙ୍କିଣି ଆଦି ପରିଧାନ କରନ୍ତି । ଗଳାରେ ଭିନ୍ନଭିନ୍ନ ପ୍ରକାରର ହାର, ଗୁପସରି ଆଦି ପିନ୍ଧାଯାଏ । ଏମାନଙ୍କ ମଧ୍ୟରେ ନକ୍ଷତ୍ରହାର ପ୍ରଧାନ । 'ବିଦଗ୍ଧ ଚିନ୍ତାମଣି'ର ରଚୟିତା ଅଭିମନ୍ୟୁ ତାଙ୍କର କାବ୍ୟରେ ଉତ୍କଳୀୟ ନାରୀମାନଙ୍କର ଅଳଙ୍କାର ମଧ୍ୟରେ କେତେକ ଅଳଙ୍କାରର ପରିଚୟ ଦେଇଛନ୍ତି । 'ଅଳଙ୍କାର ବୋଲି'ର କବି ମଧ୍ୟ କେତେକ ଅଳଙ୍କାରର ପରିଚୟ ଦେଇଛନ୍ତି । ଉଦାହରଣ ସ୍ୱରୂପ ନିମ୍ନାଙ୍କିତ ପଂକ୍ତିଚୟ ଉଦ୍ଧୃତ କରାଯାଇପାରେ—

ବନମାଳୀ ଭୁଜେ ବାନ୍ଧିଲେ ପଡ଼ିବ ଉଜ୍ଜ୍ୱଳ<br>
ଅଗ୍ନି ତେଉଁରିଆ ମାଳ ଅପାର<br>
ତାଡ଼ ତଳକୁ ଦିଶିବ ସୁନ୍ଦର ।<br>
ମାଳରେ ଗୁପସରି ସୋରିସିଆ ମାଳ<br>
ମଥୁରିପୁରିଆ ବଉଳମଂଜିଆ ଜୋଡ଼ମାଳ<br>
ନକ୍ଷତ୍ର କଣ୍ଠିମାଳ, ଗରଗଡ଼ିଆ କଣ୍ଠିମାଳ<br>
ବୈଷ୍ଣବ କଣ୍ଠି ମାଳ, ଦଶ ଅବତାର ମାଳ<br>
ଝୁଂପାବନ୍ଧା ଅଇଁଲା ମଞ୍ଜିଆ ମାଳ ।

ସାରଳା ମହାଭାରତରେ ପ୍ରାଚୀନ ଉତ୍କଳର ବେଶଭୂଷାର ଏକ ସୁନ୍ଦର ନିଦର୍ଶନ ମିଳେ ।

ଶିରେ ଶୋଭେ ସିମନ୍ତମଣି ମୁକୁତାର ଜାଲି<br>
ଲଲାଟରେ ମଥାମଣି କର୍ଣ୍ଣେ କର୍ଣ୍ଣ ଝୁଲି<br>
ଦୁଇହସ୍ତେ ପିନ୍ଧିଛନ୍ତି ସୁବର୍ଣ୍ଣର ଚୂଡ଼ି<br>
ଗଳେ ଗୁପସରି ଅଙ୍ଗେ ରହିଅଛି ଜଡ଼ି<br>
ଦୁଇ ପାଦରେ ନୂପୁର ରୁଣୁଝୁଣୁ ବାଜେ<br>
ମୁକୁତା ଗୁନ୍ଥା କାଞ୍ଚନ ହୃଦରେ ବିରାଜେ ।

ଉପେନ୍ଦ୍ରଭଞ୍ଜ ମଧ୍ୟ ତାଙ୍କ 'ଲାବଣ୍ୟବତୀ'ରେ ଝିଲମିଲ, ପାନପତ୍ରୀ, ବୃଜମଲ କଡ଼ି, ପଦ୍ମରାଗମଣି, ତାଟଙ୍କ, ନୀଳ ନାକଚଣା, କଡ଼ିଆଳୀ, ଶଙ୍ଖଚୂଡ଼ି ଆଦି ଦ୍ୱାରା ଲାବଣ୍ୟବତୀକୁ ଅଳଙ୍କୃତ କରିଛନ୍ତି ।

ମନ୍ଦିର ଗାତ୍ରରେ ଉତ୍କୀର୍ଣ୍ଣ ପୁରୁଷ ଓ ନାରୀ ପ୍ରତିମାଗୁଡ଼ିକୁ ଅନେକ ପ୍ରକାର ଅଳଙ୍କାରରେ ବିଭୂଷିତ କରାଯାଇଛି । ମହାଭାରତ ରାମାୟଣ

Digitized by srujanika@gmail.com

କାବ୍ୟାଦି ବ୍ୟତୀତ ଆମର ଅଳଙ୍କାର ଏବଂ ନାଟ୍ୟନୃତ୍ୟ ଗ୍ରନ୍ଥମାନଙ୍କରେ ଉତ୍କଳୀୟ ଅଳଙ୍କାର ତଥା ବେଶଭୂଷାର ବର୍ଣ୍ଣନା ମିଳେ। ଉଦାହରଣ ସ୍ୱରୂପ ମହେଶ୍ୱର ପାତ୍ରଙ୍କ ରଚିତ "ଅଭିନୟ ଚନ୍ଦ୍ରିକା" ନାମକ ଗ୍ରନ୍ଥର ୨୬୦ ଶ୍ଳୋକଠାରୁ ୨୮୫ ପର୍ଯ୍ୟନ୍ତ ଲେଖାଅଛି—

ଶିରୋଦେଶେ ସୁବର୍ଣ୍ଣ ନ କାର୍କରୀ ରାଗଡାଦୟଃ।
ଚନ୍ଦ୍ରସମୁଖ ବେଶେ ଚ ପାର୍ଶ୍ୱଦେଶେଷ୍ଟ ଶୋଭନେ।
ମଥାମଣି ମଧ୍ୟଦେଶେ କେତକୀ ସୁମନୋହରା।
ଶିରୋ ମଣ୍ଡୟେତେ ଏବଂ ସୁବର୍ଣ୍ଣେନ ସୁଯତ୍ନତଃ।
କର୍ଣ୍ଣଦ୍ୱୟେ "କୌରକଂ" ବୈ ଅଥବା "କାପ" ଏବ ଚ।

ହିରଣ୍ମି କୁଣ୍ଡଳଂ ଦ୍ୱୟଂ ହୀରବଲ୍ଲ୍ୟା ପ୍ରନର୍ତ୍ତନେ।
କର୍ଣ୍ଣୋର୍ଦ୍ଧ୍ୱେ ନାଗପାଶଂ ଚ ବକୁଳ କେଳକୋତ୍ତମା
କଣ୍ଠାଭରଣେ ରୂପେଣ ନ୍ୟାସୟେତ ଶୃପସାରକା।

× × ×

କାଂଚଲୀ ଦ୍ରବ୍ୟରଚନେ ନାନାରତ୍ନାଦି ମଣ୍ଡିତା
ଆବୃତଂ ବକ୍ଷଦେଶଂ ଚ ଦୁଷ୍ଟେମ୍ୟେଷୁ ଯା ତେଃ
ବାହୁଦେଶେ ତାଡ଼ିତଂ ଚ କଂକଣଂ ତାଡ଼କାଦ୍ୱୟମ୍
ରସୋନବାଙ୍କି ତା ମାଳା ହମ୍ମେ କବଚ ଭୂଷୟେତ୍।

× × ×

ପାଦଦେଶେ ଦଧଦ୍ରୌପ୍ୟ ଶୃପୁଆଣି ମନୋହରେ।
ମଣ୍ଡୟେତ ପାଦଦେଶେନ ନୂପୁରଂ ପାହୁଡ଼ଂବଳାଃ

ଏହିପରି ନାନାବିଧ ଅଳଙ୍କାର ମଣ୍ଡିତ ଉତ୍କଳୀୟ ନାରୀ ସୌନ୍ଦର୍ଯ୍ୟ ଜଗତରେ ଶ୍ରେଷ୍ଠସ୍ଥାନ ଯେ ଅଧିକାର କରିଥିଲା ଏଥିରେ ସନ୍ଦେହ ନାହିଁ।

Digitized by srujanika@gmail.com

# ଚତୁର୍ମାସ୍ୟା ଓ ବିଳାସୋପଭୋଗ

ମଣିଷର ମନ ବଡ଼ ବିଚିତ୍ର । ସଂସାରର ଅସଂଖ୍ୟ ବୈଚିତ୍ର୍ୟ ଭିତରେ ଆପଣାକୁ ହଜାଇ ଦେଇ ଆପଣାକୁ ଆବିଷ୍କାର କରିବା ପାଇଁ ପୁଣି ସେ ଚାହେଁ । ଜଗତର ଅସଂଖ୍ୟ ଲୀଳାଖେଳା, କ୍ରୀଡ଼ା କୌତୁକ, ସମ୍ମାନ ସମ୍ଭ୍ରମ, ଭୋଗବିଳାସ ମଧ୍ୟରେ ନିଜକୁ ଜଡ଼ିତ ରଖି ତା'ର ଭିତରୁ ନିଜର ସଂକଳ୍ପ, ନିଜର ସାଧନା ଓ ନିଜ ସ୍ୱାଧୀନତାକୁ ଅନୁସନ୍ଧାନ କରି ସେ ହୁଏ ପରିତୃପ୍ତ । କେବଳ ସେଇଥିପାଇଁ ବାହାର ବିଶ୍ୱ ସହିତ ମଣିଷ ମନର ଏପରି ବହିରଙ୍ଗ ଓ ଅନ୍ତରଙ୍ଗ ସଂପର୍କ । ବାହାର ବିଶ୍ୱର ଯାହାକିଛି ସେ ଦେଖେ, ଅନୁଭବ କରେ, ଧ୍ୟାନ କରେ, ତାକୁହିଁ ଆପଣାର ଶିଳ୍ପ, କଳା ଓ ସାହିତ୍ୟ ମଧ୍ୟରେ ପ୍ରକାଶ କରିବା ପାଇଁ ଓ ନିଜର ବ୍ୟାବହାରିକ ଜୀବନରେ ଉପଲବ୍ଧି କରିବା ପାଇଁ ସେ ବ୍ୟଗ୍ର ଓ ବ୍ୟାକୁଳ ହୋଇଉଠେ । ତେଣୁ ବହିର୍ବିଶ୍ୱର ଋତୁ ପ୍ରକୃତି ସହିତ ମଣିଷ ମନର ଅତି ଆନ୍ତରିକ ଓ ନିବିଡ଼ ସଂଯୋଗ ରହିଛି ।

ସ୍ନିଗ୍ଧାଲୋକ ସମ୍ବଳିତ ଓ ରୌଦ୍ର ବର୍ଷା ସମନ୍ୱିତ ଋତୁ ପ୍ରକୃତିର ବିଚିତ୍ର ଓ ବର୍ଣ୍ଣାଢ୍ୟ ରୂପ ଆମ ନିକଟରେ ଏତେ ସ୍ୱାଦ୍ୟ ଓ ଉପଭୋଗ୍ୟ । ଗ୍ରୀଷ୍ମ, ବର୍ଷା, ଶରତ, ଶିଶିର, ହେମନ୍ତ ଓ ବସନ୍ତ—ପ୍ରତ୍ୟେକଟି ଋତୁକୁ ମନୁଷ୍ୟ କେବଳ ଅନୁଭବରେ ନୁହେଁ, ଉପଭୋଗରେ ମଧ୍ୟ ଆଣିବାକୁ ଚାହେଁ । ପ୍ରତ୍ୟେକଟି ଋତୁର ପ୍ରଭାବ ମନୁଷ୍ୟ ପ୍ରାଣରେ ଅତି ବିସ୍ମୟକର । ସେଇଥିପାଇଁ ଆମ୍ଭର ଭାରତୀୟ ଦର୍ଶନ ଓ କାବ୍ୟ କବିତାରେ ପ୍ରକୃତି ଓ ମନୁଷ୍ୟ ଏହି ଉଭୟ ଜୀବନକୁ ଏକ ଓ ଅଭିନ୍ନ ରୂପ ପ୍ରତିପାଦନ କରାଯାଇଛି । ଆମର ଚିନ୍ତା ଓ ସଂସ୍କୃତିରେ ପ୍ରକୃତି ସର୍ବଦା ଜୀବନ୍ତ । ବିଭିନ୍ନ ଋତୁର କଥା ଆମର ଏଠି ଆଲୋଚ୍ୟ ନୁହେ । କେବଳ ବର୍ଷାହିଁ ବିବେଚ୍ୟ । ଏହି ବର୍ଷା ପ୍ରକୃତି ମନୁଷ୍ୟ ମନରେ ଅତି ରହସ୍ୟାଚ୍ଛନ୍ନ ପରିବେଶ ଆଦିମ

Digitized by srujanika@gmail.com

କାଳରୁ ସୃଷ୍ଟି କରି ଆସିଛି । ତାର ପରିପ୍ରକାଶ ମଣିଷର କାବ୍ୟ, ଶିଳ୍ପରେ ପ୍ରକାଶର ନୂତନ ସ୍ୱର ସର୍ବଦା ଅନୁସରଣ କରି ଆସିଛି । ଅତି ପ୍ରାଚୀନ ସଂସ୍କୃତ ସାହିତ୍ୟ କେବଳ ନୁହେଁ, ବିଶ୍ୱର ଯେ କୌଣସି ରାଷ୍ଟ୍ରୀୟ ବା ଆଞ୍ଚଳିକ ସାହିତ୍ୟରେ ଏହାର ସୂକ୍ଷ୍ମ ଓ ହାର୍ଦ୍ଦିକ ପ୍ରମାଣ ବିଦ୍ୟମାନ । କାଳିଦାସଙ୍କ ମେଘଦୂତରେ କବିପ୍ରାଣର କମନୀୟ ଓ ରସାଳ ପରିପ୍ରକାଶ ଦେଖିବାକୁ ମିଳେ । ସେହିପରି ଇଂରାଜୀ ସାହିତ୍ୟରେ ମଧ୍ୟ ବର୍ଷା ଆରମ୍ଭରେ କବି ନିଜକୁ କିପରି ପ୍ରକାଶ କରିଛି ତାର ବହୁ ଦୃଷ୍ଟାନ୍ତ ମଧ୍ୟ ରହିଛି ।

ବର୍ଷା କେବଳ ବର୍ଷା ନୁହେଁ; ଏହା ଆମ ଅନ୍ତରତମ ପ୍ରଦେଶର ଅଗଣିତ ଆଶା ଆକାଂକ୍ଷା, ସ୍ୱପ୍ନ ଓ ଅଭିଳାଷର ଯେପରି ମୂର୍ତ୍ତିମନ୍ତ ପ୍ରକାଶ । ଆମ ମନର ଯେଉଁ ଅବ୍ୟକ୍ତ କାମନା ଓ ବେଦନା ଅଚରିତାର୍ଥ ହୋଇ ରହିଥାଏ, ଏହି ବର୍ଷା ଋତୁରେ ଅଜସ୍ର ବାରିଧାରା ମଧ୍ୟରେ ତାହା ଯେପରି ପ୍ରାଣମୟ ପ୍ରକାଶ ଲଭେ । ମଧ୍ୟଯୁଗୀୟ କାବ୍ୟ 'ରହସ୍ୟ ମଂଜରୀ'ରେ କବି ଦେବଦୁର୍ଲ୍ଲଭ କହୁଛନ୍ତି—

"ଘଡ଼ଘଡ଼ ଉପରେ ପଡ଼ଇ ଚଡ଼ଚଡ଼
ଚଡ଼ଚଡ଼ ଉପରେ ନିର୍ଘାତ ପଡ଼େ ମାଡ଼ ।
ବିଜୁଳି ଝଲକେ ଗୋ ଚମକି ଉଠେ ହିୟା
କେସନେ ବଞ୍ଚିବି ମୋର କୋଳେ ନାହିଁ ନାହା ।
କମଳିନୀ ବିକସିଲେ ଅବନୀ ଉଲ୍ଲସି
ମାତିଲେ ମଣ୍ଡୁକେ ଧେ ଡାହୁକେ ଡାକେ ମିଶି ।
ନଦୀ ଯୋଡ଼ ବଢ଼ିଲେ ଜଡ଼ିଲେ ସୁନାଗଣି
ସୁବେଶ ଯୁବତୀ କାନ୍ତ ପଥ ଅନୁସରି ।
ପ୍ରବାସୀ ପୁରୁଷମାନେ ସର୍ବ କାର୍ଯ୍ୟ ଛାଡ଼ି
ଘରକୁ ଆଇଲେ ପ୍ରିୟା ଗୁଣ ମନେ ପଡ଼ି ।
ଏକମାତ୍ର ମୋର କାନ୍ତ ନଇଲେ ମୋର ପାଶ
ନଚୟେ ଜାଣିଲି ମୋର ତେଜିଲେ ମୁହାଁସ ।"

ରସକଲ୍ଲୋଳକାର ଦୀନକୃଷ୍ଣ ମଧ୍ୟ ବର୍ଷା ପ୍ରକୃତି ସହିତ ମାନବ ପ୍ରକୃତିର ଏକ ଅନବଦ୍ୟ ଚିତ୍ର ପ୍ରଦାନ କରିଅଛନ୍ତି ।

Digitized by srujanika@gmail.com

"କେଉଁ ପ୍ରବାସୀ ପ୍ରବାସୁଁ ଆସି,
କୋଳେ ବସାଇ ପ୍ରାଣ ପ୍ରେୟସୀ
କୋମଳ କରି କହଇ ହସି
ନବ ବୟସୀରେ
କୁଟିଳ କେଶୀ, ଚଟୁଳ ବେଶୀ
କନ୍ଦର୍ପ କେଳି-କଳା ଲାଳସୀ
କୁରଙ୍ଗ ଦୃଙ୍ଗୀ ପଦ୍ମ ସୁବାସୀ
ପୀୟୂଷ ହାସୀରେ
କୁଳପାଳିକା ମୋର କଣ୍ଠ ମାଳିକାରେ ।
କଲି କାଳିକା କାଳେ ତୋତେ ମୁଁ ଏକାରେ
କରି ପାଞ୍ଚିଲି ମନରେ ଦକା
ତାହା ଶୁଣିଲେ ମଦନରଙ୍ଗେକା
କାମ ଜୀବନ ନ ନେଲି ଯାହା କରି କଣ୍ଠକାରେ ।"

ଏହି ସଜଳ ଓ ଅଶ୍ରୁଳ ବର୍ଷାଋତୁର ଅନ୍ତରାତ୍ମା ସହିତ ମନୁଷ୍ୟ ମନ ପ୍ରେମ ଓ ମୈତ୍ରୀର ରାକ୍ଷୀ ବନ୍ଧନରେ ଗ୍ରଥିତ ହୁଏ । ଅନ୍ୟାନ୍ୟ ଋତୁରେ ସାଧବ ପୁଏ ବିଦେଶ ଯାତ୍ରା କରିଥାନ୍ତି; ମାତ୍ର ବର୍ଷା କାଳକୁ ସେମାନେ ବିଦେଶରୁ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରି ନିଜର ବନ୍ଧୁବାନ୍ଧବ, କୁଟୁମ୍ବ ସହିତ ଏକପ୍ରାଣ ହୋଇ ନାନାପ୍ରକାର ଭୋଗବିଳାସରେ ନିଜକୁ ଜଡ଼ିତ କରିଥା'ନ୍ତି । ଏହି ବର୍ଷା କାଳରେ ମାନବ ପ୍ରକୃତି ବର୍ଷା ସହିତ ଆତ୍ମୀୟତା ଅର୍ଜନ କରିବା ପାଇଁ ବିଭିନ୍ନ ଓଷା, ବାର, ବ୍ରତ ପ୍ରତିଷ୍ଠା ସଙ୍ଗେ ନିଜର ମୌଳିକ ଭାବନା ଚରିତାର୍ଥ କରିବାକୁ ପ୍ରୟାସୀ ହୋଇଛି । କେବଳ ଭାରତୀୟ ନୁହେଁ, ଓଡ଼ିଶୀ ସଂସ୍କୃତି ପ୍ରତି ଦୃଷ୍ଟିପାତ କଲେ ଏହା ଅତି ପ୍ରାଞ୍ଜଳ ହେବ ।

ରଜ ସଂକ୍ରାନ୍ତିରୁ ଆରମ୍ଭ କରି ଶ୍ରୀଗୁଣ୍ଡିଚା ଓ ବାହୁଡ଼ା ଗହ୍ମାପୂର୍ଣ୍ଣିମା, ଶ୍ରାବଣପୂର୍ଣ୍ଣିମା, ଚିତାଲାଗି ଅମାବାସ୍ୟା, ଅନନ୍ତବ୍ରତ, ଯମ ଦ୍ୱିତୀୟା, ଜନ୍ମାଷ୍ଟମୀ, ରାଧାଷ୍ଟମୀ, ସୋମନାଥ ବ୍ରତ ପ୍ରଭୃତି ବହୁ ବ୍ରତ ଏ ସମୟରେ ଆଚରିତ ଓ ପାଳିତ ହୁଏ । ନାନାପ୍ରକାର ସୁମିଷ୍ଟ ପିଷ୍ଟକାଦି ପ୍ରସ୍ତୁତ କରି ଏ ସମୟରେ ନର ନାରୀମାନେ ବିଭିନ୍ନ ଦେବତାଙ୍କୁ ଅର୍ଚ୍ଚନା କରିବା

Digitized by srujanika@gmail.com

ସଙ୍ଗେ ସଙ୍ଗେ ପ୍ରସାଦ ରୂପେ ବହୁ ପ୍ରକାର ପିଷ୍ଟକ ଭକ୍ଷଣ କରନ୍ତି ଓ ନବବସ୍ତ୍ର ପରିଧାନ ପୂର୍ବକ ଅତି ଆନନ୍ଦରେ କାଳ ହରଣ କରନ୍ତି ।

ଚତୁର୍ମାସ୍ୟା ଚାରିଗୋଟି ମାସର ସମାହାର । ଆଷାଢ଼, ଶ୍ରାବଣ, ଭାଦ୍ରବ, ଆଶ୍ୱିନ—ଏହି ଚାରିମାସକୁ ନେଇ ଏହି ଚତୁର୍ମାସ୍ୟା ପରିକଳ୍ପିତ । ଏହି ସମୟରେ ବିବାହାଦି ମାଙ୍ଗଳିକ ଅନୁଷ୍ଠାନ କିଛି ହୁଏ ନାହିଁ । ଏପରିକି ଅଗ୍ନିସାକ୍ଷିକ କୌଣସି କର୍ମ ଏହି ଚାରିମାସରେ ଅନୁଷ୍ଠିତ ହୁଏ ନାହିଁ । ତା'ର କାରଣ ଜଗତର ନାଥ ଜଗନ୍ନାଥ ଏହି ସମୟରେ ନିଦ୍ରିତ ଥାନ୍ତି ।

"ଶେତେ ବିଷ୍ଣୁ ସଦାଷାଢ଼େ
ପ୍ରବୁଦ୍ଧେ ଚତୁ କାର୍ତ୍ତିକେ ।"

ଓଡ଼ିଶାର ସ୍ମୃତିକାରମାନେ ବିଷ୍ଣୁଙ୍କର ଏହି ଶୟନ କାଳରେ କୌଣସି ମାଙ୍ଗଳିକ ଅନୁଷ୍ଠାନ ବିଧି ବ୍ୟବସ୍ଥାର ପ୍ରବର୍ତ୍ତନ କରିନାହାନ୍ତି । ଏହି ଚତୁର୍ମାସ୍ୟାରେ ଯୋଗୀମାନେ ଚତୁର୍ମାସ୍ୟା ବ୍ରତ ଯାପନ କରନ୍ତି । ଏହି ସମୟରେ ସଂଯୋଗୀ ପ୍ରାଣରେ ମିଳନ ପିପାସା ଯେପରି ଜାଗ୍ରତ ହୁଏ, ସେହିପରି ବିଯୋଗୀ ପ୍ରାଣରେ ବିଚ୍ଛେଦର ଦହନ ଶତଗୁଣିତ ହୋଇଥାଏ । ସେହି ହେତୁ ଯେଉଁମାନେ ସାଧୁ, ଋଷି ଓ ସଂଯମୀ, ସେମାନେ ଚତୁର୍ମାସ୍ୟାରେ ଗୋଟିଏ ସ୍ଥାନରେ ରହି ନୀରବ ଓ ନିଶ୍ଚଳ ଭାବରେ ଯୌଗିକ ସାଧନରେ ନିମଗ୍ନ ରହନ୍ତି । ସଂସାରୀ ବ୍ୟକ୍ତି କୃଷି କର୍ମ ଆଦି ସମସ୍ତ ପ୍ରକାର ବୈଷୟିକ କର୍ମରେ ଲିପ୍ତ ହୋଇ ସାମୟିକ ଭାବେ ବର୍ଷାକାଳୀନ ପର୍ବପର୍ବାଣିରେ ବର୍ଷାର ମର୍ମବାଣୀ ଅନୁଭବପୂର୍ବକ ନାନା ଭୋଗବିଳାସରେ ଲିପ୍ତ ରହନ୍ତି ।

ଆମ ଓଡ଼ିଆ କାବ୍ୟ ସାହିତ୍ୟରେ ଚତୁର୍ମାସ୍ୟାର ଏହି ଭୋଗ ବିଳାସର ଓ ସଂଯମ ସାଧନାର ଭୂରି ଭୂରି ଦୃଷ୍ଟାନ୍ତ ରହିଛି । ଏଠାରେ ଲକ୍ଷ୍ୟ କରିବାର କଥା ଯେ, ଓଡ଼ିଆ ପ୍ରାଣରେ ବର୍ଷାଋତୁର ଏହି ସମସ୍ତ ବିଳାସ ଭୋଗର ପରମ୍ପରା କେବଳ ସାହିତ୍ୟରେ ନୁହେଁ, ଓଡ଼ିଆର ଧର୍ମ ଓ ସଂସ୍କୃତିରେ ମଧ୍ୟ ନିହିତ । ପୁନଶ୍ଚ ଜଗନ୍ନାଥ ଧର୍ମଧାରା ଯୁଗ ଯୁଗ ଧରି ଓଡ଼ିଆ ସଂସ୍କୃତିକୁ ଯେପରି ପରିପୁଷ୍ଟ କରିଛି, ସେହିପରି ଓଡ଼ିଆ ଜୀବନର ପାର୍ଥିବ ଓ ଭୌତିକ ଦିଗକୁ ତା'ର ଅପାର୍ଥିବ ଅଶରୀରୀ ଓ ପାରମାର୍ଥିକ ଜଗନ୍ନାଥ ଧର୍ମ ଦ୍ୱାରା ପରିପୂର୍ଣ୍ଣ କରି ଆସିଛି । ଚତୁର୍ମାସ୍ୟାର ଓଡ଼ିଆ ଜୀବନର

Digitized by srujanika@gmail.com

ଏହି ଚଳଣୀ ଜଗନ୍ନାଥ ଧର୍ମରେ ଯେପରି ଲକ୍ଷଣୀୟ, ସେହିପରି ଜଗନ୍ନାଥ ମନ୍ଦିର ପରମ୍ପରା ଦ୍ୱାରା ଯୁଗେ ଯୁଗେ ଓଡ଼ିଆର ସାମାଜିକ ଜୀବନ ମଧ୍ୟ ନିଳକତ ପାଳିତ ।

ଜଗନ୍ନାଥ ମନ୍ଦିରରେ ଯେପରି ଭୋଗାଦିର ବ୍ୟବସ୍ଥା ରହିଛି ଭିନ୍ନ ଭିନ୍ନ ମାସରେ ଓ ସମୟରେ ଭିନ୍ନ ଭିନ୍ନ ଭୋଗ ଜଗନ୍ନାଥଙ୍କଠାରେ ଅର୍ପିତ ହେବାର ଯେଉଁ ସୁବ୍ୟବସ୍ଥା କରାଯାଇଛି, ତାହା ପ୍ରତିଘରେ ମଧ୍ୟ ଅନୁସୃତ ହୁଏ । ବିରି ଚାଉଳ ସୁଜି ଗହମ ଚୂନାରେ ଯେଉଁ ପିଷ୍ଟକାଦି ପ୍ରସ୍ତୁତ ହୁଏ ସେଥିମଧ୍ୟରୁ କାକରା ପିଠା, ଆରିସା, ସୁ, ଭଜାମଣ୍ଡା, ବିରିବରା, ଠୋଲକା, ଚଟୋଉ ମଣ୍ଡା, ପାଣିମଣ୍ଡା, ପାଣି ଗଇଁଠା, ଛେନାତାଡ଼ିଆ, ତାଡ଼ିଆ, ବେସନ ବଡ଼ି, ଚଟୋଉ, ମଣ୍ଡା ପ୍ରଭୃତି ବହୁ ପ୍ରକାର ପିଠା ପ୍ରତି ଘରେ ପ୍ରସ୍ତୁତ ହୁଏ । ଚତୁର୍ମାସ୍ୟାରେ ହିଁ ଏଥିରୁ ଅଧିକାଂଶ ପିଷ୍ଟକ ଓଡ଼ିଶାର ପ୍ରତି ଗୃହରେ ନାରୀମାନେ ପ୍ରସ୍ତୁତ କରନ୍ତି ଓ ପରିବାରର ସମସ୍ତ ସଭ୍ୟ ଏଗୁଡ଼ିକୁ ଭକ୍ଷଣ କରି ପରମ ପରିତୃପ୍ତି ଲାଭ କରନ୍ତି ।

Digitized by srujanika@gmail.com

# ଯୁଗେ ଯୁଗେ ଉତ୍କଳୀୟ ସଂସ୍କୃତି

ସତ୍ୟ-ଶିବ-ସୁନ୍ଦରର ପୂଜାରୀ, ସୃଷ୍ଟିର ପ୍ରେରଣାଦାତା ସାହିତ୍ୟିକମାନଙ୍କର ଅପୂର୍ବ ମିଳନରେ ଉତ୍କଳର ପୁଣ୍ୟପୀଠ ଏକାମ୍ରକାନନ ମୁଖରିତ ହୋଇଥିଲା । ବାସ୍ତବରେ ଦେବ ଦେବ ମହାଦେବ ଲିଙ୍ଗରାଜଙ୍କର ଅବସ୍ଥାନ ଯୋଗୁଁ ବିଭିନ୍ନ ଦିଗରୁ ଓ ବିଭିନ୍ନ ସ୍ଥାନରୁ ଦେବତାମାନେ ଏଠାରେ ସମବେତ ହେଉଥିବା ପୁରାଣମାନଙ୍କରୁ ଶୁଣାଯାଏ । ତେଣୁ ସେହି ସାରସ୍ୱତ ସାଧକମାନଙ୍କୁ ସ୍ୱାଗତ ଜଣାଇ ଆମ୍ଭେମାନେ ଗୌରବବୋଧ କରୁଅଛୁ ।

ଏ ଦେଶର ସାହିତ୍ୟ ଓ ସମାଜର ଉତ୍କର୍ଷ ଏହାର ସଂସ୍କୃତିର ବିକାଶ ଓ ଉନ୍ନତିରୁ ଅନୁମେୟ । ସ୍ମରଣାତୀତ କାଳରୁ ଏହି ପୁଣ୍ୟଭୂମି କେତେ ଘାତ ପ୍ରତିଘାତ ମଧ୍ୟରେ ଗତି କରିଥିଲେହେଁ ତାହାର ସ୍ୱକୀୟ ବୈଶିଷ୍ଟ୍ୟ ସୁରକ୍ଷିତ କରିବାରେ କୃତକାର୍ଯ୍ୟ ହୋଇଅଛି । ତେଣୁ ଆଜିର ଏ ମଧୁର ମିଳନମେଳା ଉତ୍କଳ ଇତିହାସରେ ଆଉ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିବ ।

ଯୁଗ ଯୁଗ ଧରି ସାହିତ୍ୟ ଓ ସମାଜ ପକ୍ଷରେ ସଂସ୍କୃତିର ରୂପାନ୍ତର ଘଟିଛି । ଯେ କୌଣସି ଦେଶର ସାହିତ୍ୟ ଅଧ୍ୟୟନ କଲେ ଏହା ସ୍ପଷ୍ଟ ପ୍ରତୀୟମାନ । ଉତ୍କଳ ହେଉଛି ଅଖଣ୍ଡ ଭାରତର ଅଂଶବିଶେଷ । ମହାଭାରତୀୟ ଜାତିର ଉତ୍‌ଥାନ ଓ ଅଗ୍ରଗତି ପାଇଁ ପ୍ରତି ପ୍ରାନ୍ତୀୟ ସାହିତ୍ୟିକମାନଙ୍କର ସମବେତ ପ୍ରଚେଷ୍ଟାର ଆବଶ୍ୟକତା ରହିଛି । ସାଂସ୍କୃତିକ ଭାବ ବିନିମୟ ଫଳରେ ଏ ଦେଶ ମହାଭାରତୀୟ ଦରବାରରେ ନିଜର ଆସନ ସୁପ୍ରତିଷ୍ଠିତ କରିଥିଲା ଏବଂ ଏବେ ମଧ୍ୟ କରିବାର ସୁଯୋଗ ଆସିଛି ।

ଓଡ଼ିଶାର ସଂସ୍କୃତିର ପ୍ରାଣକେନ୍ଦ୍ର ହିଁ ଜଗନ୍ନାଥ । ଜଗନ୍ନାଥ ଏହି କ୍ଷେତ୍ରରେ ବିଭିନ୍ନ ଧର୍ମ, ଦଳ ଓ ମତର ସମନ୍ୱୟ ସଂଘଟିତ ହୋଇଅଛି ।

Digitized by srujanika@gmail.com

ରାମାୟଣରେ ଏହି ପ୍ରସିଦ୍ଧ ଜଗନ୍ନାଥ କ୍ଷେତ୍ର ଓ ଜଗନ୍ନାଥଦେବଙ୍କ ସମ୍ବନ୍ଧରେ ଉକ୍ତ ହୋଇଅଛି । ରାବଣର ମୃତ୍ୟୁ ପରେ ବିଭୀଷଣ ରାମଚନ୍ଦ୍ରଙ୍କୁ କେଉଁ ଦେବାରାଧନା ଶ୍ରେଷ୍ଠ ବୋଲି ପ୍ରଶ୍ନ କରିବାରୁ ରାମଚନ୍ଦ୍ର ଉପଦେଶ ଦେଇଛନ୍ତି, "ଆରାଧୟ ଜଗନ୍ନାଥ ଇକ୍ଷ୍ୱାକୁ କୁଳ ଦୈବତମ୍" ଇକ୍ଷ୍ୱାକୁ କୁଳଦେବତା ଜଗନ୍ନାଥଙ୍କୁ ଆରାଧନା କର ।

ସେହି ଜଗନ୍ନାଥ 'ଜଗତ୍‌ନାଥ' ଏ ରାଜ୍ୟର କୁଳଦେବତା । ତେଣୁ ଜଗତର ମୂଳାଧାର ଭାବରେ ଏଠାରେ ହିଁ ସର୍ବଧର୍ମର ସମନ୍ୱୟ ଘଟିଅଛି । ବୈଦିକ ଯୁଗରୁ ବିଷ୍ଣୁ, ଶିବ ଏବଂ ସୂର୍ଯ୍ୟ ପୂଜା ଭାରତରେ ଅନ୍ୟ ଧର୍ମର ପ୍ରସାରଣ ସତ୍ତ୍ୱେ ପ୍ରଚଳିତ ହୋଇ ଆସୁଅଛି । ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଖ୍ରୀ: ପୂ: ୪ର୍ଥ ଶତକରୁ ଉତ୍କଳରେ ବୈଷ୍ଣବ ଧର୍ମର ସୂଚନା ମିଳେ । ଉତ୍କଳର ମାଠର ବଂଶୀୟ ରାଜାମାନେ ବୈଷ୍ଣବ ଥିଲେ । ମହାନଦୀଠାରୁ କୃଷ୍ଣାନଦୀ ପର୍ଯ୍ୟନ୍ତ ସେମାନଙ୍କର ରାଜତ୍ୱ ଥିଲା । ଏହି ମାଠର ବଂଶୀୟ ରାଜାମାନଙ୍କର ରାଜତ୍ୱ ସମ୍ବନ୍ଧୀୟ ବହୁ ତାମ୍ରଲିପି ଆବିଷ୍କୃତ ହୋଇଅଛି । ପ୍ରାୟ ଖ୍ରୀ: ପୂ: ୨ୟ ଶତାବ୍ଦୀରେ ବୈଷ୍ଣବଧର୍ମାବଲମ୍ବୀ ବିଗ୍ରହବଂଶ ରାଜତ୍ୱ କରୁଥିଲେ । ପୌରାଣିକ ବିବରଣୀ, କିମ୍ବଦନ୍ତୀ ଓ ପ୍ରତ୍ନତାତ୍ତ୍ୱିକ ପ୍ରମାଣ ମାନଙ୍କରୁ ଉତ୍କଳରେ ଧର୍ମର ପ୍ରଚାର ଓ ପ୍ରସାର ସମ୍ବନ୍ଧରେ ସମ୍ୟକ୍ ଧାରଣା ଜନ୍ମିଥାଏ ।

ଉତ୍କଳରେ ବୈଷ୍ଣବ ଧର୍ମରେ ମଧ୍ୟ ନାରାୟଣ, ରାମ, ଦୁର୍ଗାମାଧବ, ମାଧବ, ଲକ୍ଷ୍ମୀନାରାୟଣ, କୃଷ୍ଣ, ଜଗନ୍ନାଥ ଓ ହରିହର ଆଦି ବିଭିନ୍ନ ଉପାସନାର ନିଦର୍ଶନ ରହିଛି । ଏହାଛଡ଼ା ଜୈନ, ବୌଦ୍ଧ, ଶୈବ, ଶାକ୍ତ, ସୌର, ଗାଣପତ୍ୟ, ମହିମା ପ୍ରଭୃତି ବିଭିନ୍ନ ଧର୍ମମତର ପ୍ରଚଳନର ପ୍ରମାଣ ପର୍ଯ୍ୟାପ୍ତ ଭାବରେ ପରିଦୃଷ୍ଟ । ଏପରି କି ବିଭିନ୍ନ ଧର୍ମବାଦୀମାନେ ଜଗତର ନାଥ ଜଗନ୍ନାଥଙ୍କୁ ନିଜ ଧର୍ମର ଗୌରବ ବୃଦ୍ଧି ନିମନ୍ତେ ଆପଣାର କରି ନେବାକୁ ଆପ୍ରାଣ ଚେଷ୍ଟା ଚଳାଇ ଆସିଛନ୍ତି । ହେଲେହେଁ ସେ ଜଗନ୍ନାଥ ସବୁଦିନେ ସ୍ୱକୀୟ ବୈଶିଷ୍ଟ୍ୟରେ ସଦା ପ୍ରତିଭାତ ହୋଇ ଉତ୍କଳର ଶ୍ରେଷ୍ଠତ୍ୱ ପ୍ରତିପାଦନ କରୁଅଛନ୍ତି ।

ଏହି କ୍ଷେତ୍ରରାଜ ଶ୍ରୀକ୍ଷେତ୍ରକୁ ବିଭିନ୍ନ ସମୟରେ ବିଭିନ୍ନ ଧର୍ମର ଆଚାର୍ଯ୍ୟମାନେ ନିଜର ମତ ପ୍ରଚାର ନିମନ୍ତେ ଯତ୍ନବାନ ହୋଇଅଛନ୍ତି । ପ୍ରାୟ

Digitized by srujanika@gmail.com

ନବମ ଶତାବ୍ଦୀ ବେଳକୁ ଅଦ୍ୱୈତବାଦୀ ସ୍ୱୟଂଶଙ୍କରରୂପୀ 'ଶଙ୍କରାଚାର୍ଯ୍ୟ', ଏକାଦଶ ଶତାବ୍ଦୀରେ ବିଶିଷ୍ଟ ଦ୍ୱୈତବାଦୀ ରାମାନୁଜ, ଦ୍ୱାଦଶ ଶତାବ୍ଦୀରେ ଦ୍ୱୈତାଦ୍ୱୈତ ବା ଭେଦାଭେଦବାଦୀ ନିମ୍ବାର୍କ ବା ଦ୍ୱୈତବାଦୀ ମଧ୍ୱ, ପ୍ରାୟ ତାହାଙ୍କ ପଚିଶ ବର୍ଷ ପରେ ବିଶୁଦ୍ଧା ଦ୍ୱୈତବାଦୀ ବଲ୍ଲଭ ଆସିଛନ୍ତି, ସେମାନଙ୍କ ଆଗମନର ପ୍ରମାଣ ସ୍ୱରୂପ ଏବେ ମଧ୍ୟ ନୀଳାଚଳ ଧାମରେ ଶଙ୍କରାଚାର୍ଯ୍ୟ ବା ଶଙ୍କରାନନ୍ଦ ମଠ, ଏମାର ମଠ, ଗୋବର୍ଦ୍ଧନ ମଠ ପ୍ରଭୃତି ବିଦ୍ୟମାନ । ଷୋଡ଼ଶ ଶତାବ୍ଦୀ ବେଳକୁ ଉତ୍କଳ ଉତ୍ତର ଓ ଦକ୍ଷିଣ ଭାରତର ମିଳନତୀର୍ଥ ହୋଇ ସାରିଥିଲା । ପ୍ରତାପରୁଦ୍ରଙ୍କ ରାଜପ୍ରତିନିଧି ରାୟରାମାନନ୍ଦ ଗୋଦାବରୀ ତୀରରେ ରହି ରାଜ୍ୟ ଶାସନରେ ସାହାଯ୍ୟ କରୁଥିଲେ । ସେ ଶୁଦ୍ଧା ଭକ୍ତିମାର୍ଗର ଅବଲମ୍ବୀ ଥିଲେ । ଚୈତନ୍ୟଚରିତାମୃତ ପାଠରୁ ଜଣାଯାଏ ସେ ଚୈତନ୍ୟଦେବଙ୍କୁ ବୈଷ୍ଣବ ଧର୍ମର ସାରତତ୍ତ୍ୱ ଗୋପୀଭାବ ହୃଦୟଙ୍ଗମ କରାଇ ଅଚିନ୍ତ୍ୟ ଭେଦାଭେଦବାଦୀ କରାଇଥିଲେ ।

ଷୋଡ଼ଶ ଶତାବ୍ଦୀରେ ଶ୍ରୀ ଚୈତନ୍ୟଙ୍କ ଉତ୍କଳ ଆଗମନ ଫଳରେ ଉତ୍କଳର ଧର୍ମ, ସାହିତ୍ୟ ଓ ସଂସ୍କୃତିରେ ଏକ ବିରାଟ ପରିବର୍ତ୍ତନ ସଂଘଟିତ ହେଲା । ସଂସ୍କୃତି ଓ ସାହିତ୍ୟରେ ଭାବର ଆଦାନ ପ୍ରଦାନ ଫଳରେ ଉତ୍କଳ ଉତ୍ତର ଓ ଦକ୍ଷିଣ ଭାରତ ମଧ୍ୟରେ ଏକ ଯୋଗସୂତ୍ର ସ୍ଥାପନ କରିବାରେ ସମର୍ଥ ହେଲା । ଉତ୍କଳର ସୂର୍ଯ୍ୟବଂଶୀୟ ଗଜପତି ପ୍ରତାପରୁଦ୍ରଙ୍କ ରାଜସଭାକୁ ଉତ୍କଳୀୟ ପଣ୍ଡିତମଣ୍ଡଳୀ ସମେତ କାଶୀବାସୀ ରାମକୃଷ୍ଣ ଭଟ୍ଟ ଓ ଆନ୍ଧ୍ର ପଣ୍ଡିତ ଲୋକ ଲକ୍ଷ୍ମୀଧର ଆଦି ମଣ୍ଡିତ କରିଥିଲେ । ଏହା ପୂର୍ବରୁ ଉତ୍କଳ ଭାରତୀଙ୍କ ବରପୁତ୍ର କାନ୍ତକବି ଜୟଦେବଙ୍କ ଅମୃତନିଃସ୍ୟନ୍ଦୀ ଗୀତଗୋବିନ୍ଦ ଭାରତର ବିଭିନ୍ନ ଅଞ୍ଚଳରେ ସମାଦର ଲାଭ କରି ସାରିଥିଲା । ଭାରତର ଅନ୍ୟ ଅଞ୍ଚଳରେ ଏହାର ସମ୍ୟକ୍ ଆଲୋଚନା ହେବା ପୂର୍ବରୁ ଖ୍ରୀଷ୍ଟ ୧୨୧୦ରେ ଓଡ଼ିଶାର ଭକ୍ତକବି ଉଦୟନାଚାର୍ଯ୍ୟ ଶ୍ରୀ ଗୀତଗୋବିନ୍ଦର ଭାଷ୍ୟ ପ୍ରଣୟନ କରିଥିବାର ପ୍ରମାଣ ମିଳେ । ପୁନଶ୍ଚ ଶ୍ରୀ ଗୀତଗୋବିନ୍ଦର ଦ୍ୱିତୀୟ ଟୀକା 'ସର୍ବାଙ୍ଗସୁନ୍ଦରୀ' ପ୍ରଣେତା ପୁରୀଜିଲ୍ଲାର କପିଞ୍ଜଳଗୋତ୍ରୀୟ କବିରାଜ ନାରାୟଣ ଦାସ ୧୩୦୦ ଖ୍ରୀଷ୍ଟାବ୍ଦରେ ଜୀବିତ ଥିବା ଜଣାଯାଏ । ପ୍ରଥିତ ଯଶା ଆଳଙ୍କାରିକ, ସାନ୍ଧିବିଗ୍ରହିକ ବିଶ୍ୱନାଥ ମହାପାତ୍ର······ଏହି ନାରାୟଣ ଦାସଙ୍କର ପୌତ୍ର ଥିଲେ । ତାହାଙ୍କ ସାହିତ୍ୟଦର୍ପଣ ଅଦ୍ୟାବଧି ଭାରତରେସର୍ବତ୍ର ସମାଦୃତ । ମୂଳ ଗୀତଗୋବିନ୍ଦର ଅନୁକରଣରେ କବିଚନ୍ଦ୍ର ରାୟ ଦିବାକର

Digitized by srujanika@gmail.com

ମିଶ୍ର ୧୪୮୦ ବା ୧୪୯୦ ଖ୍ରୀଷ୍ଟାବ୍ଦରେ ଅଭିନବ ଗୀତଗୋବିନ୍ଦ ପ୍ରଣୟନ କରିଥିଲେ । ଉତ୍କଳର ଗଜପତି କଳିଙ୍ଗାଧିପତ୍ୟ ସ୍ୱୟଂ କପିଳେନ୍ଦ୍ର ଦେବ 'ବ୍ୟାମୋହ ପର୍ଶୁରାମ ବିଜୟ' ନାଟକ ରଚନା କରିଥିଲେ । ତାହାଙ୍କ ପୁତ୍ର ଗଜପତି ପୁରୁଷୋତ୍ତମ 'ସରସ୍ୱତୀ ବିଳାସ'ର ପ୍ରଣେତା । ଗଜପତି ପ୍ରତାପ-ରୁଦ୍ରଙ୍କ ଅନ୍ୟତମ ସଭାପଣ୍ଡିତ କବିଡ଼ିଣ୍ଡିମ ବା ଜୀବଦେବାଚାର୍ଯ୍ୟ 'ଭକ୍ତି-ବୈଭବ' ନାଟକ ଓ 'ରସକଳ୍ପଦ୍ରୁମ'ର ରଚୟିତା । ସଂସ୍କୃତ ସାହିତ୍ୟରେ ଏଗୁଡ଼ିକର ମୂଲ୍ୟ ଅକଳନୀୟ; ତେଣୁ ଭାରତର ସଂସ୍କୃତି ଓ ସଭ୍ୟତାର ପରିପୁଷ୍ଟି ପାଇଁ ଏହି ପ୍ରତିଭାବାନ୍ କବି, ନାଟ୍ୟକାର ଓ ପଣ୍ଡିତମଣ୍ଡଳୀଙ୍କର ଅଦମ୍ୟ ଉଦ୍ୟମ ସବୁକାଳରେ ଅବଶ୍ୟ ସ୍ମରଣୀୟ । ମହାଭାରତୀୟ ସଂସ୍କୃତି କ୍ଷେତ୍ରକୁ ଉତ୍କଳର ଏଭଳି ଦାନ ଚିରନ୍ତନ ।

ସାହିତ୍ୟ କ୍ଷେତ୍ରରେ ମଧ୍ୟ ଭାରତୀୟ ବାଣୀ ଭଣ୍ଡାରକୁ ଉତ୍କଳର ଦାନ ଉପେକ୍ଷଣୀୟ ନୁହେଁ । ମହାମହୋପାଧ୍ୟାୟ ହର ପ୍ରସାଦ ଶାସ୍ତ୍ରୀଙ୍କ ଦ୍ୱାରା ନେପାଳରୁ ଆବିଷ୍କୃତ ବୌଦ୍ଧଗାନ ଓ ଦୋହାମାନଙ୍କରେ ଉତ୍କଳର କାହ୍ନୁପାଦ, ଶବରପାଦ, ଲୁଇପାଦ ପ୍ରଭୃତି ସିଦ୍ଧାଚାର୍ଯ୍ୟମାନଙ୍କର ରଚନା ଦେଖାଯାଏ । କାହ୍ନୁ ବା କୃଷ୍ଣାଚାର୍ଯ୍ୟଙ୍କ ଲେଖାରେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ, ନିର୍ବାଣ ବା ଅଦ୍ୱୈତ ସାଧନା, ଶୂନ୍ୟବାଦ ଆଦିର ପରିଚୟ ମିଳେ । ଏହି ସିଦ୍ଧାଚାର୍ଯ୍ୟମାନେ ପୁରୀଜିଲ୍ଲାର ପ୍ରାଚୀ ନଦୀ ତୀରରେ ବସବାସ କରୁଥିବା ମହାପୁରୁଷ ଅଚ୍ୟୁତାନନ୍ଦ ଦାସଙ୍କ 'ଶୂନ୍ୟ ସଂହିତା'ରୁ ପ୍ରମାଣିତ ହୁଏ । ଏହି ଚର୍ଯ୍ୟାପଦ ଓ ଦୋହାଗୁଡ଼ିକ ଅଷ୍ଟମ ଶତାବ୍ଦୀଠାରୁ ୧୦ମ ଶତାବ୍ଦୀ ମଧ୍ୟରେ ରଚିତ ବୋଲି ନିର୍ଣ୍ଣିତ ହୋଇଅଛି । ଏଥିରେ ଉତ୍କଳର ତଦାନୀନ୍ତନ ସାମାଜିକ ତଥା ଆଧ୍ୟାତ୍ମିକ ଜୀବନର ପ୍ରଭାବ ପରିଦୃଷ୍ଟ । ଏହି ଚର୍ଯ୍ୟାପଦ ସାନ୍ଧ୍ୟ ଭାଷାରେ ଲିଖିତ ହୋଇଥିବାରୁ ଏହାକୁ ଆସାମବାସୀ ଆସାମୀ, ବଙ୍ଗବାସୀ ବଙ୍ଗଳା, ବିହାରବାସୀ ହିନ୍ଦି ଓ ଉତ୍କଳବାସୀମାନେ ଓଡ଼ିଆ ବୋଲି ଦାବୀ କରି ଆସୁଅଛନ୍ତି । ହେଲେହେଁ ଏହା ଉତ୍କଳର ଏକାନ୍ତ ନିଜସ୍ୱ ବୋଲି ଅଧ୍ୟାପକ ଡକ୍ଟର କରୁଣାକର କର ଭାଷାଗତ, ଐତିହାସିକ ଭିତ୍ତି ଓ ଧାର୍ମିକ ପରମ୍ପରା ଦୃଷ୍ଟିରୁ ବିଚାର କରିଛନ୍ତି । ଏହି 'ଆଶ୍ଚର୍ଯ୍ୟ-ଚର୍ଯ୍ୟାଚୟ' ଉତ୍କଳୀୟ ବଜ୍ରଯାନୀ ସିଦ୍ଧ ସାଧକଙ୍କର ସାଧନାର ଫଳ । ଏପରିକି ତଦାନୀନ୍ତନ ଭାରତର ବିଭିନ୍ନ ପ୍ରସିଦ୍ଧ ତାନ୍ତ୍ରିକ ତଥା ଯୋଗିନୀ ପୀଠ ମଧ୍ୟରୁ ଉଡ୍ଡୀୟାନ ଏକ ବିଶିଷ୍ଟ ତାନ୍ତ୍ରିକପୀଠ ଭାବରେ ପ୍ରସିଦ୍ଧି ଲାଭ

Digitized by srujanika@gmail.com

କରିଥିଲେ । ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ, ଏହାହିଁ ଉତ୍କଳ ସାହିତ୍ୟର ଜୀବନ ପ୍ରଭାତର ଆଦ୍ୟ ଅରୁଣୋଦୟ ।

ବୌଦ୍ଧ ଯୁଗର ଅବସାନ ପରେ ବ୍ରାହ୍ମଣ୍ୟ ଧର୍ମର ପ୍ରାଧାନ୍ୟ ଓ ତା'ଫଳରେ ଶୈବଧର୍ମର ପ୍ଲାବନରେ ଉତ୍କଳଖଣ୍ଡ ପ୍ଲାବିତ ହେଲା । ଅବଧୂତ ନାରାୟଣ ସ୍ୱାମୀଙ୍କ 'ରୁଦ୍ର ସୁଧାନିଧି', ବତ୍ସା ଦାସଙ୍କ 'କଳସା-ଚଉତିଶା' ଓ ବିଭିନ୍ନ ବ୍ରତକଥାଦିରେ ଏ ଧର୍ମର ସ୍ପଷ୍ଟ ସଙ୍କେତ ମିଳେ । ଏହାପରେ ଶାକ୍ତ ଧର୍ମର ଅଭ୍ୟୁଦୟ ଏବଂ ଏହି ଶାକ୍ତ ଧର୍ମର ଅଭ୍ୟୁଦୟ ସହିତ ଉତ୍କଳର ସାହିତ୍ୟ ଓ ସଂସ୍କୃତି ଘନିଷ୍ଠ ଭାବରେ ଜଡ଼ିତ । ବଙ୍ଗଳାରେ ମନସା, ମଙ୍ଗଳା, ଚଣ୍ଡୀ, ଶୀତଳା ପ୍ରଭୃତିଙ୍କ ପରି ଉତ୍କଳରେ ଶକ୍ତି, ସାରଳା, ଲକ୍ଷ୍ମୀ, ଗୋସାଣୀ, ଗୃମୁଖା, ବୃନ୍ଦାବତୀ, ମଙ୍ଗଳା, ବାସେଳୀ ପ୍ରଭୃତି ବହୁ ରୂପରେ ପୂଜିତା । ଏପରିକି ପୁରପଲ୍ଲୀରେ 'ମାଣବସା' ରୂପରେ ଲକ୍ଷ୍ମୀ ଓ ଗୃହଦ୍ୱାରରେ ତୁଳସୀ ଚଉରା ରୂପରେ ବୃନ୍ଦାବତୀ ଏବଂ ଗ୍ରାମମୁଣ୍ଡରେ ଗ୍ରାମଦେବତୀ ଭାବରେ ତାଙ୍କର ଆସ୍ଥାନ । ବଙ୍ଗଳାର ଧର୍ମାୟତନରେ କେବଳ ଦେବୀଙ୍କର ପ୍ରାଧାନ୍ୟ ମାତ୍ର ଉତ୍କଳରେ, ଦେବ ଓ ଦେବୀ ଉଭୟଙ୍କର ପ୍ରାଧାନ୍ୟ ପରିଦୃଷ୍ଟ । ଉତ୍କଳରେ ବୌଦ୍ଧ ଦେବତା 'ପ୍ରଜ୍ଞା-ପାରମିତା' ମଧ୍ୟ ଦେବୀ ରୂପରେ ପୂଜିତା । ଯାଜପୁରରେ ଯୋଗିନୀମାନଙ୍କୁ 'ଯମ ମା ସାତ ଭଉଣୀ' ରୂପରେ ପୂଜା କରାଯାଏ । ଏହା ଛଡ଼ା ଯାଜପୁରର ବିରଜା, ପୁରୀର ଭୈରବୀ, ବିମଳା, ରାମଚଣ୍ଡୀ, ହରଚଣ୍ଡୀ, କାକଟପୁରର ମଙ୍ଗଳା, ଝଙ୍କଡ଼ର ସାରଳା, ସମ୍ବଲପୁରର ସମଲେଶ୍ୱରୀ, ସୋନପୁରର ଲଙ୍କେଶ୍ୱରୀ ଓ ସୁରେଶ୍ୱରୀ, ବଡ଼ମ୍ବାର ଭଟ୍ଟାରିକା, ଆଳର ବାରାହୀ, ତାଳଚେରର ହିଙ୍ଗୁଳାଇ, ବାଙ୍କିର ଚର୍ଚ୍ଚିକା, ଗଞ୍ଜାମର ତାରାତାରିଣୀ, ଭୁବନେଶ୍ୱରର ଭୁବନେଶ୍ୱରୀ, ବାଣପୁରର ଭଗବତୀ ବା ଉଗ୍ରତାରା, ମୟୂରଭଞ୍ଜର କାଚକେଶ୍ୱରୀ, କଟକର ବାରବାଟୀ ଦୁର୍ଗର ଅଧିଷ୍ଠାତ୍ରୀ ଗଡ଼େଶ୍ୱରୀ ଚଣ୍ଡୀଙ୍କର ଜଗଦ୍ଧାତ୍ରୀ ମୂର୍ତ୍ତି ପ୍ରଧାନ । ପୂର୍ବୋକ୍ତ ବଲାଙ୍ଗୀର ଜିଲ୍ଲାର ରାଣୀପୁର ଝରିଆଲରେ ଥିବା ଚଉଷଠି ଯୋଗିନୀ ପୀଠ ଓ ଭୁବନେଶ୍ୱରଠାରୁ ୫ମାଇଲ ଦୂରରେ ଅବସ୍ଥିତ ହୀରାପୁରର 'ଚଉଷଠି ଯୋଗିନୀ ପୀଠ'ରେ ୬୪ ଯୋଗିନୀଙ୍କର ପ୍ରତିମୂର୍ତ୍ତି ଦେଖିବାକୁ ମିଳେ । ଭୁବନେଶ୍ୱରର 'ବୋଇତାଳ' ମନ୍ଦିରରେ 'ଛିନ୍ନମସ୍ତା' ମୂର୍ତ୍ତି ପୂଜିତ ଏବଂ ତାହାଙ୍କର ପାର୍ଶ୍ୱଦେବତା ରୂପେ ଅର୍ଦ୍ଧନାରୀଶ୍ୱର ବା ଶିବଶକ୍ତିଙ୍କର ସମ୍ମିଳିତ

Digitized by srujanika@gmail.com

ମୂର୍ତ୍ତି ଓ ମହିଷାମର୍ଦ୍ଦିନୀ ଦୁର୍ଗା ମୂର୍ତ୍ତି ଖୋଦିତ । ଜୈନ ମନ୍ଦିର ପରିପୂରିତ ଖଣ୍ଡଗିରିର କନ୍ଦରରେ ବାରଭୁଜା ଦୁର୍ଗାମୂର୍ତ୍ତି ଉତ୍କଳର ବୈଶିଷ୍ଟ୍ୟ ।

ଶକ୍ତିପୂଜାର ଉତ୍କର୍ଷ ଉତ୍କଳ ସାହିତ୍ୟ ମୁକୁରରେ ପ୍ରତିଫଳିତ ହେଲା ଚତୁର୍ଦ୍ଦଶ ଶତାବ୍ଦୀରେ । ଏହି ଶକ୍ତି ଉପାସନାର ପରମ ଉପାସକ ରୂପେ ଆବିର୍ଭୂତ ହେଲେ ଶୂଦ୍ରମୁନି ସାରଳା ଦାସ । ଉତ୍କଳୀୟ ସଂସ୍କୃତିର ଭୂୟୋବିକାଶ ଏ ଯୁଗର ପରମ ବୈଶିଷ୍ଟ୍ୟ । ତଦ୍ ପ୍ରଣିତ 'ମହାଭାରତ'ରେ ଶକ୍ତି ପୂଜାର ନିଦର୍ଶନ ମିଳେ । ଅନ୍ତରରେ ଶାକ୍ତ ଥିଲେହେଁ ସାରଳା ସର୍ବଧର୍ମର ଦେବତାଙ୍କୁ ସମାନ ସମ୍ମାନ ପ୍ରଦାନ କରିଅଛନ୍ତି । ମହାଭାରତରେ ବିଭିନ୍ନ ପର୍ବରେ ଶକ୍ତିରୂପିଣୀ ଦେବୀ ଉପାସନା ସହ ପଞ୍ଚଦେବତାଙ୍କ ଉପାସନା ମଧ୍ୟ ପ୍ରକୃଶିତ । ଏପରି କି ଶକ୍ତିଙ୍କର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ ପାଇଁ ସେ ଏକ ସ୍ୱତନ୍ତ୍ର 'ଚଣ୍ଡୀ ପୁରାଣ' ସୃଷ୍ଟି କରିଛନ୍ତି । 'ବିଲଙ୍କା ରାମାୟଣ'ରେ ମଧ୍ୟ ଶକ୍ତିରୂପିଣୀ ସୀତା ଦେବୀଙ୍କର ମହିମା କୀର୍ତ୍ତିତ । ତାହାଙ୍କ 'ମହାଭାରତ' ଓଡ଼ିଆ ଜାତିର ବେଦ । ଏପରି ଏକ ବିଶାଳ ଓ ବିରାଟ ମହାକାବ୍ୟ ସମସାମୟିକ ପ୍ରାଦେଶିକ ଭାଷାରେ ବିରଳ । ଏହି ମହାଭାରତ ବଙ୍ଗଳା କାଶୀରାମ ମହାଭାରତର ଜନନୀ । ଏହାର ସ୍ୱର୍ଗାରୋହଣ ପର୍ବର ବଙ୍ଗାନୁବାଦ ସେ ଦେଶରେ ଅଦ୍ୟାବଧି ପ୍ରଚଳିତ ।

ସାରଳା ଦାସଙ୍କ ପରେ ଉତ୍କଳ ସାହିତ୍ୟ କ୍ଷେତ୍ରରେ ଯୋଗ, ତନ୍ତ୍ର ଓ ଭକ୍ତି ସମନ୍ୱିତ ଏକ ସାହିତ୍ୟ ବିକାଶ ଲାଭ କଲା । ଏକ ପକ୍ଷରେ ରାୟ ରାମାନନ୍ଦ ଓ ମାଧବୀ ଦାସୀ ପ୍ରଭୃତି 'ବ୍ରଜବୋଲି'ରେ ସଙ୍ଗୀତ ରଚନା କରି ଭକ୍ତି ସାହିତ୍ୟ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ବୈଷ୍ଣବ ପଦାବଳୀ ସାହିତ୍ୟକୁ ପରିପୁଷ୍ଟ କଲେ । ଅନ୍ୟ ପକ୍ଷରେ ବଳରାମ, ଜଗନ୍ନାଥ, ଯଶୋବନ୍ତ, ଅଚ୍ୟୁତ ଓ ଅନନ୍ତ ପ୍ରଭୃତି ଚୈତନ୍ୟଙ୍କ ପଞ୍ଚସଖା ବା ଜଗନ୍ନାଥ ମହାପ୍ରଭୁଙ୍କ ପଞ୍ଚଶାଖାମାନେ ଯୌଗିକ ଓ ତାନ୍ତ୍ରିକ ସାହିତ୍ୟର ବିକାଶରେ ଅଭିନିବିଷ୍ଟ ଥିଲେ । ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ, କାୟା ସାଧନା, ଜୀବର ମୁକ୍ତି, ଅଷ୍ଟାଙ୍ଗ ଯୋଗ, ଷଡ଼ଚକ୍ର ନିରୂପଣ, ମହାମନ୍ତ୍ରର ବ୍ୟାଖ୍ୟାନ ଓ ତହିଁରେ ଗାୟତ୍ରୀ ଏବଂ ସାବିତ୍ରୀ ବଖାଣ ପ୍ରଭୃତିରେ ଏ ସାହିତ୍ୟ ଋଦ୍ଧିମନ୍ତ । ଏମାନେ ସମନ୍ୱୟବାଦୀ । ଏହି ସାଧକମାନଙ୍କର ବିଭିନ୍ନ ମାଳା, ଜପ, ମନ୍ତ୍ର ଓ ବାଦ ପ୍ରଭୃତି ଥିଲେ ମଧ୍ୟ ଉତ୍କଳୀୟ ବୈଷ୍ଣବ ଧର୍ମର ସ୍ୱାତନ୍ତ୍ର୍ୟ

Digitized by srujanika@gmail.com

ସୁରକ୍ଷାରେ ବ୍ରତୀ ଥିଲେ । ଜଗତର ନାଥ ଜଗନ୍ନାଥ ସମସ୍ତଙ୍କର ଉପାସ୍ୟ । ଏ ଯୁଗରେ ସଂସ୍କୃତି ଓ ତାହାର ଅବଲମ୍ବନରେ ଓଡ଼ିଶାରେ ସାହିତ୍ୟ ସୃଷ୍ଟି ହେଲା । ହେଲେହେଁ ସାରଳାଙ୍କ 'ମହାଭାରତ', ଜଗନ୍ନାଥଙ୍କ 'ଭାଗବତ', ବଳରାମଙ୍କ 'ଦାଣ୍ଡୀ ରାମାୟଣ' ଓ ଅଚ୍ୟୁତାନନ୍ଦଙ୍କ 'ହରିବଂଶ' ସଂସ୍କୃତ ମୂଳ ରଚନାର କେବଳ ଅନୁକୃତି ନୁହେଁ । ସେଗୁଡ଼ିକ ପ୍ରତ୍ୟେକ ସ୍ୱକୀୟ ମହିମାରେ ମହିମାନ୍ୱିତ । ଏହିଠାରୁ ଭକ୍ତି ଯୁଗର ସୂତ୍ରପାତ କହିବା ଅସମୀଚୀନ ନୁହେଁ । ଏ ଦେଶର ସାହିତ୍ୟ, ସଂସ୍କୃତି ଓ ଧର୍ମ ପ୍ରତି ଆକୃଷ୍ଟ ହୋଇ ନାନକ, କବୀର ପ୍ରଭୃତି ଭକ୍ତ କବିମାନେ ଏଠାକୁ ଧର୍ମ ପ୍ରଚାରର ଉଦ୍ଦେଶ୍ୟରେ ଆସିଥିଲେ । ଏପରିକି ଯବନ କବି ସାଲବେଗ ମଧ୍ୟ 'ନୀଳ ଶୈଳର ପ୍ରବଳ ମତ୍ତବାରଣ' ଜଗନ୍ନାଥଙ୍କୁ ତାଙ୍କର 'ଆରତ ନଳିନ ବନକୁ ଦଳନ' କରିବା ନିମନ୍ତେ ପ୍ରାର୍ଥନା କରିଛନ୍ତି ।

ଅଷ୍ଟାଦଶ ଶତାବ୍ଦୀରେ ପଶ୍ଚିମ ଦେଶାଗତ ସାରସ୍ୱତ ବ୍ରାହ୍ମଣ ଭୂପତି ପଣ୍ଡିତ ଏ ଦେଶରେ ବସବାସ କରି ଏ ଦେଶର ସାହିତ୍ୟ ପ୍ରତି ଅନୁରକ୍ତ ହୋଇ ଦେଶବାସୀଙ୍କୁ 'ପ୍ରେମ ପଞ୍ଚାମୃତ' ପାନ କରାଇଥିଲେ । ରାମଦାସଙ୍କ କୃତ ଭକ୍ତ ଜୀବନୀ ସମ୍ବଳିତ 'ଦାର୍ଢ୍ୟତା ଭକ୍ତି' ବଙ୍ଗଳାରେ 'ଭକ୍ତେର ଜୟ' ନାମରେ ଅନୂଦିତ ହୋଇ ପ୍ରକାଶିତ ହୋଇଥିଲା । ମେଦିନୀପୁର ଅଞ୍ଚଳରୁ ପ୍ରାପ୍ତ "ଦେଉଳ ତୋଳା ଓ ଦାରୁବ୍ରହ୍ମ ଗୀତା" ପୁସ୍ତକରେ ବଙ୍ଗାକ୍ଷରରେ ଓଡ଼ିଆ ଭାଷାର ପ୍ରମାଣ ମିଳିଥାଏ ।

ସପ୍ତଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରୁ ସାହିତ୍ୟ ଧାରାରେ ପରିବର୍ତ୍ତନ ଦେଖାଯାଏ । ଯେଉଁ ସାହିତ୍ୟ ଏ ପର୍ଯ୍ୟନ୍ତ ଧର୍ମମୁଖୀ ଥିଲା ; ରାମ, କୃଷ୍ଣ ଓ ଜଗନ୍ନାଥଙ୍କୁ କେନ୍ଦ୍ର କରି ଯେଉଁ ସାହିତ୍ୟ ପରିପୁଷ୍ଟି ଲାଭ କରିଥିଲା ସେ ସାହିତ୍ୟର ସ୍ୱରୂପ ପ୍ରେମମୁଖର ହୋଇ ଉଠିଲା ଏବଂ କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜଙ୍କ କୃତିରେ, ଉପେନ୍ଦ୍ରଙ୍କ ଯାଦୁକରୀ ପ୍ରତିଭାରେ ଉତ୍କଳଭାରତୀ ଅଭିନବ ବେଶ ଧାରଣ କରି ଦେଦୀପ୍ୟମାନ ହୋଇ ଉଠିଲେ । ଚିତ୍ରକାବ୍ୟ, ଶବ୍ଦ ଓ ଅର୍ଥାଳଙ୍କାର, ଦତ୍ତଚ୍ୟୁତାକ୍ଷର ଆଦିର ପ୍ରୟୋଗରେ ଉତ୍କଳ ସାହିତ୍ୟରେ ନୈଷଧୀୟ ଛଟାର ପ୍ରଚଳନ ଦେଖାଦେଲା । ପାଣ୍ଡିତ୍ୟ ଓ ଲାଳିତ୍ୟ ଏ ଉଭୟର ସମନ୍ୱୟରେ ଭଞ୍ଜୀୟ ଲେଖନୀ ମୁଖରିତ ହୋଇ ଉଠିଲା । ଉପେନ୍ଦ୍ରଙ୍କ ପୂର୍ବବର୍ତ୍ତୀ କାନ୍ତକବି ଦୀନକୃଷ୍ଣଙ୍କ କବିତ୍ୱରେ ରସକଲ୍ଲୋଳ

Digitized by srujanika@gmail.com

ସୃଷ୍ଟି ହୋଇଅଛି । ତାଙ୍କ ପରେ ବିଦଗ୍ଧ କବି ଅଭିମନ୍ୟୁ, କବିସୂର୍ଯ୍ୟ ବଳଦେବ, କବି କଳହଂସ ଗୋପାଳକୃଷ୍ଣ ଓ ଉତ୍କଳଘଣ୍ଟ ଯଦୁମଣି ପ୍ରଭୃତିଙ୍କ ସଙ୍ଗୀତାବଳୀରେ ଉତ୍କଳ ସାହିତ୍ୟ କୁଞ୍ଜ ଝଂକୃତ ହେଲା । କେବଳ ସାହିତ୍ୟ ନୁହେଁ, ଓଡ଼ିଶୀ ସଙ୍ଗୀତ ଓ ନୃତ୍ୟ ମଧ୍ୟ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରି ଓଡ଼ିଶାର ପୁରପଲ୍ଲୀରେ ପରିବ୍ୟାପ୍ତ । ଓଡ଼ିଶାର ସଙ୍ଗୀତ ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀର ମିଶ୍ରଣରୁ ଉଦ୍ଭୂତ ହୋଇନାହିଁ । ବରଂ ତାହା ଏକ ସ୍ୱତନ୍ତ୍ର ରୂପେ ପ୍ରକାଶିତ । ଗୋପାଳକୃଷ୍ଣ, ବନମାଳୀ, ଗୌରଚରଣ ପ୍ରଭୃତିଙ୍କ କବିତାରେ ଏହାର ଭୂରି ଭୂରି ପ୍ରମାଣ ବିଦ୍ୟମାନ ଏବଂ କୋଣାର୍କ, ରାଜରାଣୀ ଓ ମୁକ୍ତେଶ୍ୱର ଆଦି ଭୁବନବିଖ୍ୟାତ ଗୃହକଳା ପୂର୍ଣ୍ଣ ମନ୍ଦିର ଗାତ୍ରରେ ଅଳସ କନ୍ୟାର ଲାସ୍ୟଭଙ୍ଗୀରେ ଓଡ଼ିଶୀ ନୃତ୍ୟର ବୈଶିଷ୍ଟ୍ୟ ପରିସ୍ଫୁଟ । ତାଙ୍କର ସୃଷ୍ଟି ଶକ୍ତିମୟୀ କଳ୍ପନା ଯେପରି ସାହିତ୍ୟରେ ପ୍ରକଟିତ, ସେହିପରି ଶିଳ୍ପ, ଭାସ୍କର୍ଯ୍ୟ ଓ ସ୍ଥାପତ୍ୟରେ ମଧ୍ୟ ରୂପାୟିତ । ପୁରୀ, କୋଣାର୍କ, ଭୁବନେଶ୍ୱରସ୍ଥ ବିଭିନ୍ନ ମନ୍ଦିର ଉତ୍କଳୀୟ କଳା ସ୍ଥାପତ୍ୟର ଜୀବନ୍ତ ପ୍ରତିମୂର୍ତ୍ତି । କେତେକ ଐତିହାସିକ ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର ସମୀପସ୍ଥ ତୋରଣକୁ ତଦାନୀନ୍ତନ ସ୍ଥାପତ୍ୟରେ ଏକ ବ୍ୟତିକ୍ରମ ଏବଂ ବିସ୍ମୟକର ସୃଷ୍ଟି ବୋଲି ମତ ଦେଇ ଅଛନ୍ତି ।

ଉତ୍କଳୀୟମାନେ କେବଳ ସାହିତ୍ୟ, ସଙ୍ଗୀତ ଓ ଭାସ୍କର୍ଯ୍ୟରେ ପାରଦର୍ଶିତା ଲାଭ କରି ସ୍ୱକୀୟ ମୌଳିକତା ଯେ ବଜାୟ ରଖିଥିଲେ ତା ନୁହେଁ ; ଆନ୍ତର୍ଦେଶୀୟ ବାଣିଜ୍ୟ ଓ ଉପନିବେଶ ସ୍ଥାପନ ଉଦ୍ଦେଶ୍ୟରେ ଜାଭା, ସୁମାତ୍ରା, ବାଲି, ସିଂହଳ, ବୋର୍ଣ୍ଣିଓ ପ୍ରଭୃତିକୁ ଯାଉଥିବାର ପ୍ରମାଣ ଆଜିକାଲି ଅନୁଷ୍ଠିତ 'ବାଲିଯାତ୍ରା' ଓ କାର୍ତ୍ତିକ ପୂର୍ଣ୍ଣିମାର ଦୀପଦାନ ଉତ୍ସବରୁ ମିଳିଥାଏ । ଏହିପରି ଏକ ସମୟରେ କଳିଙ୍ଗରୁ ଦନ୍ତକୁମାର ଓ ହେମମାଳା ବୁଦ୍ଧଦନ୍ତ ନେଇ ସିଂହଳକୁ ଯାଇଥିଲେ । ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରେ କେତେକ ଉତ୍କଳୀୟ କଳାର ମୂକସାକ୍ଷୀ ସ୍ୱରୂପ ମନ୍ଦିର ଓ ମୂର୍ତ୍ତିରାଜି ବିଦ୍ୟମାନ ।

ସମରକୁଶଳୀ ଓଡ଼ିଆ ଯୁଦ୍ଧ ବିଦ୍ୟାରେ ମଧ୍ୟ ନିପୁଣତା ହାସଲ କରିଥିଲା । "କଳିଙ୍ଗ ସାହସିକ" ବୋଲି ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ ମଧ୍ୟ ଉଲ୍ଲେଖ ଅଛି । ଉତ୍କଳୀୟ ବୀର ଖାରବେଳ, କପିଳେନ୍ଦ୍ର, ପୁରୁଷୋତ୍ତମ

Digitized by srujanika@gmail.com

ପ୍ରଭୃତି ନାନା ଦେଶ ଜୟ କରି ସାମ୍ରାଜ୍ୟ ବିସ୍ତାର କରିଥିଲେ । ଗଙ୍ଗାଠାରୁ ଗୋଦାବରୀ ଏପରିକି ଉତ୍ତରାଞ୍ଚଳର ବହୁ ରାଜ୍ୟ ଉତ୍କଳୀୟ ବୀରମାନେ ଅଧିକାର କରିଥିଲେ । ତେଣୁ ଉତ୍କଳୀୟମାନେ ସବୁ କାଳରେ ଓ ସବୁ ସ୍ଥାନରେ କର୍ମବୀର ତଥା ଧର୍ମବୀର ଭାବରେ ଉତ୍କଳୀୟ ସାହିତ୍ୟ, ସଂସ୍କୃତି ଓ ସଭ୍ୟତାର ବାହକ ହୋଇ ଜଗତର ନାଥ ଜଗନ୍ନାଥଙ୍କର ଧର୍ମଧ୍ୱଜା ଉଡ୍‌ଡୀନ କରାଇଛନ୍ତି । କେବଳ ଅତୀତର ଗୌରବାବହ କାହାଣୀ ଶୁଣାଇ କେହି ଉନ୍ନତର ସମୁଚ୍ଚ ସୋପାନରେ ଅଧିରୂଢ଼ ହୋଇନାହିଁ । ତେଣୁ ସାଧନା ବଳରେ ସିଦ୍ଧି ଲାଭ ନିମନ୍ତେ ଆଗେଇ ଚାଲିଛି କଳାଭୂମି ଏହି ଉତ୍କଳ । ଏ ଦେଶର ଜାତୀୟ ଜୀବନରେ ନବଜାଗରଣ ଆସିଛି ଏବଂ କେବଳ କଳା, ସାହିତ୍ୟ, ସଙ୍ଗୀତ କ୍ଷେତ୍ରରେ ନୁହେ, ଶିଳ୍ପ ତଥା ବାଣିଜ୍ୟାଦିରେ ମଧ୍ୟ ଉତ୍କଳୀୟମାନେ ବିଶିଷ୍ଟ ଆସନ ଲାଭ କରିଛନ୍ତି ।

Digitized by srujanika@gmail.com

# ଆଦିବାସୀ ଶବର

ବିଶ୍ୱପିତାଙ୍କର ବୈଚିତ୍ର୍ୟମୟ ସୃଷ୍ଟିରେ ଜୀବ ସୃଷ୍ଟି ତଥା ମାନବ ସୃଷ୍ଟି ଆହୁରି ବେଶୀ ବୈଚିତ୍ର୍ୟପୂର୍ଣ୍ଣ । ମାନବ ଚିନ୍ତା ଓ ବିବେକ ବଳରେ ଜାଗତିକ ବିଷୟରେ ତଥ୍ୟାନୁସନ୍ଧାନ ଓ ଜ୍ଞାନାର୍ଜନ କରିବାକୁ ସଦା ଆଗ୍ରହଶୀଳ । ଇତିହାସ, ଭୂଗୋଳ, ସାହିତ୍ୟ, ବିଜ୍ଞାନ, ଦର୍ଶନ, ଧର୍ମ, ଅର୍ଥନୀତି, ରାଜନୀତି ଓ ସମାଜନୀତି ପରି ନୃତତ୍ତ୍ୱ ମଧ୍ୟ ଆଧୁନିକ ଯୁଗରେ ମାନବର ଚିନ୍ତା ରାଜ୍ୟକୁ ବିଶେଷ ଭାବରେ ଅଧିକାର କରିଛି । ସାରା ଭୂଖଣ୍ଡ ପ୍ରତି ଦୃଷ୍ଟିପାତ କଲେ ମାନବ ମାନବ ମଧ୍ୟରେ ଆକୃତି, ଆଚାରବ୍ୟବହାର, ପୋଷାକ ପରିଚ୍ଛଦ, ରୁଚି, ଚିନ୍ତାଧାରା, ଦୃଷ୍ଟିଭଙ୍ଗୀ ଓ ଜୀବନ ଦର୍ଶନ ନେଇ ଗୋଟିଏ ବୈଷମ୍ୟ ଯେ ପରିଦୃଶ୍ୟ ନ ହୁଏ, ଏପରି ନୁହେଁ । ଏହି ବୈଷମ୍ୟର କାରଣ ଉଦ୍‌ଘାଟନ କରିବା ଏବଂ ମାନବ ସୃଷ୍ଟିର କାଳ ନିରୂପଣ କରି ମାନବ ଜାତିର ଶ୍ରେଣୀ ବିଭାଗକୁ ବୈଜ୍ଞାନିକ ପ୍ରଣାଳୀରେ ଦର୍ଶାଇ ବହୁ ଜାତି ଉପଜାତି ମଧ୍ୟରେ ସମ୍ବନ୍ଧ ଓ ଏକତ୍ୱ ନିରୂପଣ କରିବା ନୃତତ୍ତ୍ୱବିତ୍‌ମାନଙ୍କର ଲକ୍ଷ୍ୟ । ପୂର୍ବେ ଭାରତୀୟମାନଙ୍କୁ ଭାଷାନୁଯାୟୀ ପ୍ରଧାନତଃ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇଥିଲା । (୧) କୋଲେରିଆନ୍ ବା କୋଲରି ଭାଷାଭାଷୀ (୨) ଦ୍ରାବିଡ଼ୀୟାନ୍ ବା ଦ୍ରାବିଡ଼ ଭାଷାଭାଷୀ । କିନ୍ତୁ ନୃତତ୍ତ୍ୱବିତ୍ ଭନ୍ ଏକ୍‌ଷ୍ଟେଡ଼ିଟ୍ ଭାରତୀୟମାନଙ୍କୁ ତିନିଶ୍ରେଣୀରେ ବିଭକ୍ତ କରିଛନ୍ତି ।

1. Wedid group—ୱିଶେଷ ଓୟେଡିଡ଼ ଶ୍ରେଣୀରେ
   (କ) Gondid Race—ଗଣ୍ଡିତ ଜାତି
   (ଖ) Malid – Sub-Race—ମାଲିଡ଼ ଉପଜାତି
2. Melanid Group—ମେଲାନିଡ୍ ଶ୍ରେଣୀରେ
   (କ) Melanid Race—ମେଲାନିଡ୍ ଜାତି

Digitized by srujanika@gmail.com

(ଖ) Kolid Sub-Race—କୋଲିଡ୍ ଉପଜାତି

3. Indid Group—ଇଣ୍ଡିଡ୍ ଶ୍ରେଣୀରେ

(କ) Indid Race—ଇଣ୍ଡିଡ୍ ଜାତି

(ଖ) North Indid Sub-Race—ଉତ୍ତର ଇଣ୍ଡିଡ୍ ଉପଜାତି

ଏମାନଙ୍କ ମଧ୍ୟରୁ **Wedid group** ବା ୱେଡ଼ିଡ୍ ଶ୍ରେଣୀ ଆମ୍ଭମାନଙ୍କର ଆଲୋଚ୍ୟ ଆଦିବାସୀ । ଏହିମାନେହିଁ ଭାରତର ପ୍ରକୃତ ଖାଣ୍ଟି ଆଦିମ ଅଧିବାସୀ । ସାରାଭାରତରେ ଏମାନଙ୍କର ବଂଶଧରମାନେ ପାର୍ବତ୍ୟ ଅଞ୍ଚଳ ଓ ଘନ ନିବିଡ଼ ଅରଣ୍ୟ ପ୍ରଦେଶରେ ବାସ କରନ୍ତି । ସଭ୍ୟତାର ବହୁଦୂରରେ ବାସ କରୁଥିବାରୁ ଏମାନେ ଅଶିକ୍ଷିତ, ଅମାର୍ଜିତ ଓ କୁସଂସ୍କାରଚ୍ଛନ୍ନ । ଏମାନେ ଖର୍ବାକୃତି । ଏମାନଙ୍କର ଗୋଲ୍‌କାର ଚିକ୍‌କଣ ବାଳକୋଚଡ଼ ମୁଣ୍ଡ, ଉନ୍ନତ କପାଳ, କ୍ଷୁଦ୍ର ଚିବୁକ, ଅତି କୋମଳ କ୍ଷୁଦ୍ର ଅଙ୍ଗପ୍ରତ୍ୟଙ୍ଗ । ଦେଖିଲେ ମନେହୁଏ, ଏମାନେ ବଡ଼ ନିରୀହ ଓ ସରଳବିଶ୍ୱାସୀ । ଏମାନଙ୍କ ମଧ୍ୟରୁ କନ୍ଧ, ଗଣ୍ଡ, ଓରାନ୍‌ମାନେ ଦୀର୍ଘକାୟ । ଅନ୍ୟାନ୍ୟ ଆଦିବାସୀମାନଙ୍କ ଅପେକ୍ଷା ଏମାନେ ବଳିଷ୍ଠ । ଆକୃତିରେ ମୁଖ ଦୀର୍ଘ, କପାଳ ପ୍ରଶସ୍ତ । ପୃଥିବୀର ଅନ୍ୟାନ୍ୟ ଦେଶକୁ ଛାଡ଼ିଦେଲେ କେବଳ ଭାରତରେ ଆଦିବାସୀଙ୍କ ସଂଖ୍ୟା ପଚିଶ ନିୟୁତ । ସେଥିରୁ ଓଡ଼ିଶାରେ ପ୍ରାୟ ୨୫ ଲକ୍ଷ ୭୨ ହଜାର ୮୬୫ ଜଣ ଆଦିବାସୀ ଓ ଅନୁନ୍ନତ ଜାତି ବାସ କରନ୍ତି; ଅର୍ଥାତ୍ ଓଡ଼ିଶାରେ ପ୍ରତି ୫ ଜଣରେ ଜଣେ ଆଦିବାସୀ—ସେଥିରୁ ଗଞ୍ଜାମ ଓ ଗଞ୍ଜାମର ମାଳ ଅଂଚଳରେ ବାସକରୁଥିବା ଆଦିବାସୀଙ୍କ ସଂଖ୍ୟା ୭୨୫, ୧୮୧ । ଏମାନେ ଓଡ଼ିଶାର ପ୍ରାୟ ସମସ୍ତ ଜିଲ୍ଲା ଓ ଗଡ଼ଜାତରେ ବାସ କରନ୍ତି । ଗଣ୍ଡ, କନ୍ଧ, ଶବର, ମୁଣ୍ଡା, ଓରାଡ଼, ଖରିଆ, ସାନ୍ତାଳ, କିସାନ୍, ଜଟାପୁ, କନ୍ଧଦୋରା, କୋହ୍ଲ, କୋରା, ଜୁଆଙ୍ଗ, ଭୂୟାଁ, ଭୂମିଜ, ସୁରିଆ, ବାଧୁଆ, ପରଜା, ଗଦବା, ବାଗଡ଼ା, ଦିଦାୟୀ[1], କୋୟା ପ୍ରଭୃତିରୁ କୋରାପୁଟରେ ଗଣ୍ଡ, କନ୍ଧ, ଶବର, ପରଜା, ଗଦବା ଓ ଗଞ୍ଜାମରେ ଗଣ୍ଡ, କନ୍ଧ ଓ ଶବର ବେଶି ସଂଖ୍ୟାରେ ବାସ-କରନ୍ତି । ପୁଣି ଗଞ୍ଜାମ ଅପେକ୍ଷା ଗଞ୍ଜାମର ମାଳ ଅଞ୍ଚଳରେ ଆଦିବାସୀ ବିଶେଷ କରି ଶବରମାନେ ବେଶି ସଂଖ୍ୟାରେ ରହିଅଛନ୍ତି । ଏହି ଶବର ଜାତିର ନୃତ୍ୟ, ଜୀବିକାନିର୍ବାହ ପ୍ରଣାଳୀ, ପୋଷାକ ପରିଚ୍ଛଦ, ବୈବାହିକ ଓ ସାମାଜିକ ଜୀବନ ଏବଂ ବିଚାର ପର୍ଯ୍ୟାଲୋଚନା କଲେ ମନରେ ବିସ୍ମୟ

Digitized by srujanika@gmail.com

ସୃଷ୍ଟି ହୁଏ । ଏହି ଶବର ଜାତି ଅନ୍ୟାନ୍ୟ ଆଦିବାସୀଙ୍କ ପରି ବହୁ ପୁରାତନ ଏକ ଉତ୍କୃଷ୍ଟ ଶବର ସଭ୍ୟତାର ଦାୟାଦ ବୋଲି ମନେହୁଏ । ଏମାନଙ୍କର ଆଦିସ୍ଥାନ ଥିଲା, ମହେନ୍ଦ୍ର ପର୍ବତ । ଶବର ବା ସୌରିମାନଙ୍କର ଗୋଟିଏ ଗାଉଁଲି କବିତାରୁ ଜଣାଯାଏ ଯେ, ରାମା ଖାମା ବୋଲି ଦୁଇଟି ଭାଇ ପ୍ରଥମରେ ମହେନ୍ଦ୍ର ପର୍ବତ ଅଂଚଳରେ କୃଷିକାର୍ଯ୍ୟ କରୁଥିଲେ ଏବଂ କ୍ରମେ କ୍ରମେ ମହେନ୍ଦ୍ରରେ ବସତି ସ୍ଥାପନ କଲେ । ଗଙ୍ଗବଂଶର ରାଜା କାମାର୍ଣ୍ଣବ ଦେବ ମହେନ୍ଦ୍ରକୁ ଆସି ସୌରାଦିତ୍ୟ ନାମକ ଏକ ଶବର ରାଜାକୁ ହତ୍ୟାକରି ସେଠାରେ ରାଜତ୍ୱ ସ୍ଥାପନ କଲେ । ପୁଣି ଶୈଳୋଦ୍ଭବ ବଂଶର ଆଦି ପୁରୁଷ ପୁଳିନ୍ଦ ସେନଙ୍କୁ କେହି କେହି ଶବର ରାଜାବୋଲି ନାମିତ କରନ୍ତି । ସୌରି ବା ଶବରମାନଙ୍କର ଆଦିଦେବତା 'ଜଗନ୍ନାଥ' । 'ସ୍କନ୍ଦ ପୁରାଣ'ର ମୁଖଲିଙ୍ଗ ଖଣ୍ଡରୁ ଜଣାଯାଏ ଯେ, ପାରଳାଖେମୁଣ୍ଡି ଅତି ପ୍ରାଚୀନ ପ୍ରସିଦ୍ଧ ଶିବ ମୁଖଲିଙ୍ଗେଶ୍ୱରର ଆଦି ଉପାସକ ଥିଲେ ଏହି ଶବର । ଏଥିରୁ ଅନୁମିତ ହୁଏ ଯେ, ଶବର-ମାନେ ଏକ ଉତ୍କୃଷ୍ଟ ଶବର ସଭ୍ୟତାର ଉତ୍ତରାଧିକାରୀ ଥିଲେ । ଏମାନେ ଓଡ଼ିଶାର ରାଜାଙ୍କୁ ଯୁଦ୍ଧରେ ବହୁତ ସାହାଯ୍ୟ କରୁଥିଲେ । ଶବରମାନଙ୍କର ପୋଷାକ ପରିଚ୍ଛଦ ଓ ନୃତ୍ୟାଦି ସହିତ ପୂର୍ବକାଳର ଯୁଦ୍ଧ ପୋଷାକ ଓ ନୃତ୍ୟର ଯଥେଷ୍ଟ ସାମଞ୍ଜସ୍ୟ ରହିଛି । ବିଖ୍ୟାତ ଐତିହାସିକ ହଣ୍ଟର, ଗାଙ୍ଗୁଲି, ଷ୍ଟାଲିନ୍, ପି. ରାଇସ୍ ଏବଂ ଡାକ୍ତର ଆଲିଭିନ ଏହି ଶବର ଜାତିର ଅତୀତ ଜୀବନ ଖୁବ୍ ଗୌରବମୟ ଥିଲା ବୋଲି ମତ ପୋଷଣ କରିଛନ୍ତି । ଯେତେଦୂର ମନେହୁଏ ଖ୍ରୀଷ୍ଟପୂର୍ବ ଷୋଡ଼ଶ ଶତକର ଶେଷଭାଗ ପର୍ଯ୍ୟନ୍ତ ଏମାନଙ୍କର ଆଚାର ବ୍ୟବହାର, ପୋଷାକ ପରିଚ୍ଛଦ ହିନ୍ଦୁମାନଙ୍କ ଭଳି ଥିଲା । କେତେକ ଐତିହାସିକ ଓ ରାଜନୈତିକ କାରଣ ଯୋଗୁ ସେମାନେ ଅନୁକୂଳ ବାୟୁମଣ୍ଡଳରେ ନିଜକୁ ସଂସ୍ଥାପିତ କରି ପାରିଲେ ନାହିଁ । ରାସ୍ତାଘାଟର ସୁବିଧା ନ ଥିବାରୁ ଏମାନଙ୍କ ସହିତ ତଥାକଥିତ ସଭ୍ୟମାନଙ୍କର ସଂପର୍କ ଛିନ୍ନ ହୋଇଗଲା । କ୍ରମଶଃ ସେମାନେ ନ୍ୟୂନତର ଜୀବନଯାପନ କରିବାକୁ ଲାଗିଲେ । ଫଳରେ ସେମାନେ ହେଲେ ଅବହେଳିତ । ଆସିଲା ଅର୍ଥନୈତିକ ସଂକଟ । ପୂର୍ବରୁ କୁହାଯାଇଛି ଯେ ଗଞ୍ଜାମର ମାଳଅଞ୍ଚଳରେ ବହୁଳାଂଶରେ ଶବରମାନେ ବାସ କରନ୍ତି । ଏହି ଅଞ୍ଚଳକୁ ଆମ ସରକାର ଶାସନ ସୁବିଧା ସକାଶେ ୧୦ଟି ଗଡ଼ରେ ବିଭକ୍ତ କରି ଦୁଇଟି ରେଞ୍ଜରେ ଅନ୍ତର୍ଭୁକ୍ତ କରିଛନ୍ତି । ପ୍ରଥମଟି ମହେନ୍ଦ୍ର ଗିରି ରେଞ୍ଜ୍ ଓ ଦ୍ୱିତୀୟଟି ଦେବଗିରି ରେଞ୍ଜ୍ । ୧୦ଟି ଗଡ଼ର ନାମ ନିମ୍ନ ପ୍ରକାରରେ ରଖାଯାଇଛି । ୧—ଗୁମା,

Digitized by srujanika@gmail.com

୨—ସେରଙ୍ଗ, ୩—ଅଜାଗଗଡ଼, ୪—ନମନଗଡ଼, ୫—ରାୟଗଡ଼, ୬—ଜୀରଙ୍ଗ, ୭—ନାରଣପୁର, ୮—ଗଣ୍ଡାହାତି, ୯—ଲୁବଣ୍ୟଗଡ଼, ୧୦—କଇପୁର । ଉକ୍ତ ୧୦ଟି ଗଡ଼ ଆଗେ ପାରଳାଖେମୁଣ୍ଡି ଜମିଦାରୀ ଅନ୍ତର୍ଭୁକ୍ତ ଥିଲା । ବର୍ତ୍ତମାନ ତାହା ସରକାରଙ୍କ ଅଧୀନରେ ଅଛି । ଉପରୋକ୍ତ ୧୦ଟି ଗଡ଼ରେ ୧୦ଟି ବିଶୋଇ ଥାଆନ୍ତି । ବିଶୋଇମାନେ ଶବରମାନଙ୍କର ଗ୍ରାମାଧିପତି । ଏମାନଙ୍କ ଅଧୀନରେ କେତେଗୁଡ଼ିଏ ଗ୍ରାମ ଥାଏ । ଏମାନେ ସରକାରଙ୍କଠାରୁ ସନନ୍ଦ ପାଆନ୍ତି ଓ ସରକାରଙ୍କୁ ପେସ୍‌କସ୍ ବି ଦିଅନ୍ତି । ଏହି ବିଶୋଇମାନଙ୍କୁ କୁହାଯାଏ—ମୁଠାହେଡ଼ ବା ମୁଠାଧିକାରୀ ; ମୁଠା ଅର୍ଥ କେତେଗୁଡ଼ିଏ ଗ୍ରାମର ସମଷ୍ଟି । ଏହି ବିଶୋଇମାନେ ଜାତିରେ ଓଡ଼ିଆ । ପୁରୁଷାନୁକ୍ରମେ ଏମାନେ ଶବର ପ୍ରଦେଶରେ ରାଜତ୍ୱ କରି ଆସୁଅଛନ୍ତି । ଏମାନଙ୍କୁ ଛାଡ଼ି ଦେଲେ ଗୋମାଙ୍ଗ ବୋଲି ଆଉ ଏକ ଦଳ ଗ୍ରାମାଧିପତି ଅଛନ୍ତି । ଏମାନଙ୍କ ଅଧୀନରେ ଗୋଟିଏ ଗୋଟିଏ ଗ୍ରାମ ଥାଏ । ବିଶୋଇ, ଗୋମାଙ୍ଗ ବ୍ୟତୀତ ଆଉ ଏକ ଦଳ ଧର୍ମାଧିକାରୀ ଅଛନ୍ତି । ସେମାନଙ୍କୁ କୁହାଯାଏ ରାଉଆ । ଏମାନେ ପୂଜକ ଶ୍ରେଣୀୟ । ଉପରୋକ୍ତ ତିନିପ୍ରକାର ଅଧିକାରୀମାନଙ୍କର ସାହାଯ୍ୟ ସହାନୁଭୂତି ଉପରେ ଶବରମାନଙ୍କର ଉନ୍ନତି ନିର୍ଭର କରେ । ଶବରମାନେ ଏମାନଙ୍କୁ ଖୁବ୍ ବିଶ୍ୱାସ କରନ୍ତି; ଏପରିକି ଦେବତା ଭଳି ଜ୍ଞାନ କରନ୍ତି । ଏହିମାନେ ଶବରମାନଙ୍କର ସୁଖ ଦୁଃଖ ବୁଝନ୍ତି, ସେମାନଙ୍କର ବିବାଦ ନିଷ୍ପତ୍ତି କରି ଦିଅନ୍ତି । ଅନ୍ୟ ଆଦିବାସୀଙ୍କ ପରି ଶବରମାନଙ୍କ ମଧ୍ୟରେ ବିଭିନ୍ନ ପ୍ରକାର ଶବର ଦେଖା ଯାଆନ୍ତି । ସେମାନଙ୍କ ମଧ୍ୟରୁ ଲମ୍ବଦିଆ, ଝିଙ୍କଲ, ଆରସି, ଲୁଡ଼ା, ଶୁଦ୍ଧ କମ୍ବା ସାନପାଣିଆ, ଜାତିଶବର ଓ କାମ୍ପଶବର ପ୍ରଧାନ । ଏମାନେ ଜୋନ୍ଧା, କାଙ୍ଗୁ, ଘଣ୍ଟିଆ, ଗୋଙ୍ଗା, ମାଣ୍ଡିଆ ଏବଂ ଗୃଜଳ ଖାଇ ଜୀବନ ଧାରଣ କରନ୍ତି । ଜୋନ୍ଧା (ବାଜରା) ଏବଂ କାଙ୍ଗୁ ସେମାନଙ୍କର ପ୍ରଧାନ ଖାଦ୍ୟ । ଏମାନେ ସାଧାରଣତଃ କୃଷି ଉପରେ ନିର୍ଭର କରନ୍ତି । ପର୍ବତର ଉପରିଭାଗ ବାଜରା ଚାଷପାଇଁ ଉପଯୁକ୍ତ କ୍ଷେତ୍ର ଜାଣି ସେମାନେ ପର୍ବତ ଉପରେ ବାଜରା ଚାଷ କରନ୍ତି । ତାଙ୍କ ଭାଗ୍ୟରେ ଭାତ ଖାଇବାର ସୁଯୋଗ ଖୁବ୍ କମ୍ ସମୟରେ ମିଳେ । ବିଭିନ୍ନ ଗଡ଼ରେ ସେମାନେ ବିଭିନ୍ନ ପ୍ରକାରରେ ଶସ୍ୟ ଉତ୍ପାଦନ କରନ୍ତି । ସେରଙ୍ଗୋ, ମୁଣ୍ଡାବ, ଗୁମା, ଜେରାଙ୍ଗ ଏବଂ ଅଜୟୁ ଗଡ଼ରେ ସେମାନେ ଅଦା ଚାଷ କରନ୍ତି । ପ୍ରାୟ ସମସ୍ତ ତାଲୁକରେ ହଳଦି ଚାଷ ହୁଏ । ସେରଙ୍ଗୋ, ମୁଣ୍ଡାବୁର ଉତ୍ତର ଭାଗରେ ଆଳୁରୁଟ ଚାଷ ହୁଏ । ଜେରାଙ୍ଗ, କଇପୁରରେ ତିଳ ଚାଷ ହୁଏ ।

Digitized by srujanika@gmail.com

ଶବରମାନଙ୍କର ତେଲ ଘଣା ଅଛି । ସେମାନେ ରାଶି, ଜଡ଼ା କମ୍ବା ସୋରଗରୁ ତେଲ ବାହାର ନକରି ମଞ୍ଜିହା ମଞ୍ଜିରୁ ତେଲ ବାହାର କରି ଖାଦ୍ୟରେ ବ୍ୟବହାର କରନ୍ତି । ଅନ୍ୟାନ୍ୟ ତୈଳବୀଜକୁ ବିକ୍ରୟ କରି ଦିଅନ୍ତି । ଜେରାଙ୍ଗ, ସେରଙ୍ଗା ଓ ଗମ୍ଭୁଗଡ଼ାରେ କମଳାଲେମ୍ବୁ ଗଛ ହୁଏ । ପାଳୁଅ, ଆରାରୁଟ, ଗହମ, ସୋୟାବିନ୍, କଫି, ଚିହା, ରବର, ଗୁଆ, ଆଳୁ ଓ ଅନ୍ୟାନ୍ୟ ବଗିଚାପାଇଁ ଏଠାକାର ଜମି ଉପଯୁକ୍ତ । କିନ୍ତୁ ତେନ୍ତୁଳି ଗଛ ସର୍ବତ୍ର ପ୍ରଚଳିତ ।

ଶବରମାନେ ପାଣ, ରେଲି, ଘଣ୍ଟି, ହାଡ଼ି, ଧୋବି, ଜାଗିମାନଙ୍କ-ଠାରୁ ଜଳ ସ୍ପର୍ଶ କରନ୍ତି ନାହିଁ । ଜାତି ଭେଦରେ ଏମାନଙ୍କର ବିଶ୍ୱାସ ଅଛି । ଯେଉଁ ଶବରମାନେ ଅନ୍ୟମାନଙ୍କର ଉଚ୍ଛିଷ୍ଟ ଖାଆନ୍ତି ସେମାନେ ସମାଜରେ ଘୃଣ୍ୟ ବୋଲି ବିବେଚିତ ହୁଅନ୍ତି । ଏଥିରୁ ଜଣାପାଉଛି ଯେ, ଏମାନେ ଏକ ଭିକ୍ଷୁକ ଜାତି ନୁହନ୍ତି । ଭିକ୍ଷା କରିବା ସେମାନଙ୍କ ପକ୍ଷରେ ଲଜ୍ଜାର ବିଷୟ । ଅବଶ୍ୟ ଅଭାବରେ ପଡ଼ି ବର୍ତ୍ତମାନ ଅତି ଦରିଦ୍ର ଶବର ଭିକ୍ଷାବୃତ୍ତି ଅବଲମ୍ବନ ଯେ ନ କରୁଛି ଏପରି ନୁହେଁ । ଜାରା ଓ ଶୁଦ୍ଧ ଶବର ଅନ୍ୟ ଶବରଙ୍କଠାରୁ ଖାଦ୍ୟ ଖାଆନ୍ତି ନାହିଁ । ସେମାନେ ଠିକ୍ ହିନ୍ଦୁମାନଙ୍କ ସଦୃଶ ସମସ୍ତ ନିୟମ ମାନି ଚଳନ୍ତି । ଗୋଟିଏ ଜାତି ହିସାବରେ ସବୁ ଜାତିର ଶବର ବ୍ୟଭିଚାରୀକୁ ଅତ୍ୟନ୍ତ ଘୃଣା କରନ୍ତି । ଅସତ୍ ଚରିତ୍ର ଲୋକମାନଙ୍କୁ ସମୟ ସମୟରେ ଫାଶି ଦିଆଯାଏ । ଶୁଦ୍ଧ ଓ ଜାରା ଶବର ମହେନ୍ଦ୍ରଗିରି ରେଞ୍ଜରେ ବାସ କରନ୍ତି । ଏମାନେ ଓଡ଼ିଆ ଜାଣନ୍ତି । ମାତ୍ର ଦେବଗିରି ରେଞ୍ଜରେ ବାସ କରୁ-ଥିବା ଶବର ମୋଟେ ଓଡ଼ିଆ ଜାଣନ୍ତି ନାହିଁ । ଏହି ଦେବଗିରି ନିକଟରେ ଏକପ୍ରକାର ଲବାଞ୍ଜିଆ ଶବର ଅଛନ୍ତି, ଯେଉଁମାନେ କି ସାପ, ମୂଷା, ଘୁଷୁରି, କୁକୁଡ଼ା, ପୋଡ଼, ସଳପ ଗଛର ଚୂନା ଖାଆନ୍ତି । ଗୁମା ନିକଟରେ କାଳକୂଟ ଶବର ବୋଲି ଏକପ୍ରକାର ଶବର ଅଛନ୍ତି । ସେମାନେ ଅତି ଭୟଙ୍କର । ସେମାନେ ଖୁବ୍ ଦୀର୍ଘକାୟ ଓ ବଳିଷ୍ଠ । ସର୍ବଦା ଶର ଧନୁ ନେଇ ବିଚରଣ କରନ୍ତି । ଏମାନେ ଯଦିଓ ବଡ଼ ହିଂସା ପରାୟଣ, ତଥାପି ଏମାନଙ୍କର ବ୍ୟବହାର କମନୀୟ । ଶବର ଜାତିର ଗୋଟିଏ ଲକ୍ଷଣ ଏହି ଯେ ସେମାନେ କୌଣସି ଦୋଷ କଲେ ଅନ୍ୟ ନିକଟରେ ମୁଣ୍ଡ ନୁଆଁଇ କ୍ଷମାଭିକ୍ଷା କରନ୍ତି ; ମାତ୍ର ସତ୍ୟପାଇଁ, ନ୍ୟାୟପାଇଁ ସେମାନେ ଜୀବନ ବଳିଦେବାକୁ ଟିକିମାତ୍ର କୁଣ୍ଠାବୋଧ କରନ୍ତି ନାହିଁ ।

Digitized by srujanika@gmail.com

ଲଞ୍ଜିଆମାନଙ୍କର ପୁରୁଷମାନେ ଖଣ୍ଡେ ଖେଡ଼ା ପିନ୍ଧନ୍ତି ଓ ସ୍ତ୍ରୀଲୋକମାନେ କେବଳ ଆଣ୍ଠୁ ପର୍ଯ୍ୟନ୍ତ ଗୋଟିଏ ଛୋଟ ଶାଢ଼ୀ ପିନ୍ଧିଥାନ୍ତି । ପ୍ରାୟ ଅର୍ଦ୍ଧ ଉଲଗ୍ନ ଅବସ୍ଥାରେ ସେମାନେ ବିଚରଣ କରନ୍ତି । ଅନେକ ଶବରଙ୍କ ସ୍ତ୍ରୀ ଲୋକ କେବଳ ଲଜ୍ଜା ନିବାରଣ ପାଇଁ ଯେତିକି ମାତ୍ର ବସ୍ତ୍ର ଦରକାର ସେତିକି ମାତ୍ର ବ୍ୟବହାର କରନ୍ତି । ସେମାନେ ଗୋଡ଼ରେ ଓ ହାତରେ ଖଡ଼ୁ ପିନ୍ଧନ୍ତି । ପୁରୁଷମାନେ ଗ୍ରାମ ବାହାରକୁ ଗଲାବେଳେ ଧୋତି, କାମିଜ, ଗେଞ୍ଜି ପ୍ରଭୃତି ପିନ୍ଧିଥାନ୍ତି । ନାନାପ୍ରକାର ସ୍ଥାନୀୟ ବାଦ୍ୟ ବଜାଇ ପୁରୁଷ ଓ ସ୍ତ୍ରୀ ଏକତ୍ର ନୃତ୍ୟ କରନ୍ତି । ଡ୍ରମ ବା ବଡ଼ବାଜା ବାଦ୍ୟମାନଙ୍କ ମଧ୍ୟରେ ପ୍ରଧାନ । ନାଚିବା ପୂର୍ବରୁ ସେମାନେ ପେଟେ ପେଟେ ମଦ ପିଅନ୍ତି । ନାଚିଲାବେଳେ କ୍ଲାନ୍ତିବୋଧ କଲେ ତାଙ୍କୁ ମଦ ଦିଆଯାଏ । ଇଉରୋପୀୟମାନଙ୍କ ବଲ ଡାନ୍‌ସ ସହିତ ଏ ନାଚର ସାମଞ୍ଜସ୍ୟ ଅଛି ବୋଲି ମନେହୁଏ ।

ଶବରମାନଙ୍କ ସାମାଜିକ ଅନୁଷ୍ଠାନ ଦେଖିଲେ ଏମାନେ କିପରି ଶୃଙ୍ଖଳାପ୍ରିୟ, ତାହା ବେଶ୍ ଜଣାଯାଏ । ପ୍ରତ୍ୟେକ ଗ୍ରାମରେ ଯେଉଁ ହେଡ଼୍‌ମ୍ୟାନ୍ ବା ଗ୍ରାମାଧିକାରୀ ଭୂୟାଁ ଅଛନ୍ତି, ସେ ଭୂୟାଁ ଗ୍ରାମର ସମସ୍ତ ଗୋଳମାଳ ବା ବିବାଦ ସମାଧାନ କରି ଦିଅନ୍ତି । ଗ୍ରାମର କୌଣସି ଉନ୍ନତିକର ଚୁକ୍ତି ଭଙ୍ଗ ହେଲେ ଚୁକ୍ତି ଭଙ୍ଗକାରୀ କଠିନ ଦଣ୍ଡ ପାଏ । ଜମିଜମା ସମ୍ବନ୍ଧ, ଗୃହ ସମ୍ପର୍କୀୟ କିମ୍ବା ଟଙ୍କା ପଇସା ସମ୍ବନ୍ଧରେ କୌଣସି ବିବାଦ ଉପସ୍ଥିତ ହେଲେ ଗ୍ରାମର ଭୂୟାଁ ସଙ୍ଗେ ସଙ୍ଗେ ସେଇ ଇଲାକାର ମୁଟ୍‌ହାଙ୍କୁ ଜଣାନ୍ତି । ମୁଟ୍‌ହା ହେଉଛନ୍ତି କେତେଖଣ୍ଡ ଗ୍ରାମର ଭୂୟାଁଙ୍କ ଉପରେ ପ୍ରଧାନ ଭୂୟାଁ । ମୁଟ୍‌ହାଙ୍କ ବିଚାର ଓ ଆଦେଶ ସେମାନେ ନତ-ମସ୍ତକରେ ଗ୍ରହଣ କରନ୍ତି । ଅବଶ୍ୟ ଗୁରୁତର ବିଷୟରେ ନ୍ୟାୟ ପାଇଁ ଉଚ୍ଚ ବିଚାରାଳୟର ସାହାଯ୍ୟ ଲୋଡ଼ନ୍ତି । ଏମାନଙ୍କ ମଧ୍ୟରେ କୁଟୀର ଶିଳ୍ପର ଆଦର ଅଛି । ଟଙ୍କଲ ଶବର ବାଉଁଶରେ ମଶିଣା ଓ ଅନେକ ପ୍ରକାର ଟୋକେଇ ବୁଣନ୍ତି । ରାୟଗଡ଼ା, ଡରାଙ୍ଗ ଓ ନମନଗଡ଼ର ଶବରମାନେ ଲୁଗା ବୁଣନ୍ତି । ଏଥି ମଧ୍ୟରୁ କେତେକ କୁମ୍ଭାର କାର୍ଯ୍ୟ କରନ୍ତି । କେହି କେହି ସୂତା ବି ତିଆରି କରନ୍ତି । ଶୁଦ୍ଧ ଓ ଜରାଶବରମାନେ ବଢ଼େଇକାମ କରନ୍ତି । ସାଧାରଣ ହିନ୍ଦୁମାନଙ୍କ ଭଳି ଏମାନଙ୍କର ଚାଲିଚଳଣି । ଏମାନେ ଅଧିକାଂଶ ମୂର୍ଖ କିମ୍ବା ଅଳ୍ପ ଶିକ୍ଷିତ । ନାନାପ୍ରକାର ଅନ୍ଧବିଶ୍ୱାସରେ ଏମାନେ

Digitized by srujanika@gmail.com

ମଗ୍ନ । ସମସ୍ତ ଶବର ଜାତି ଗାଢ଼ ନାଲ ଏବଂ ହଳଦିଆ ରଙ୍ଗ, ମୋଟିହାଗ୍ର ପିନ୍ଧ, ଚ୍ଛୁରୀ, ଟାଙ୍ଗିଆ, ଧନୁଶର, ବନ୍ଧୁକ, ମଦ ପ୍ରଭୃତି ଜିନିଷକୁ ଖୁବ୍ ଭଲ ପାଆନ୍ତି । ଖୁବ୍ ଅଳ୍ପକଥା କହିବା ସେମାନଙ୍କର ଅଭ୍ୟାସ । ସେମାନେ ଖୁବ୍ ପରିଶ୍ରମୀ । ଏକତ୍ରିତ ହୋଇ କାର୍ଯ୍ୟ କରିବାକୁ ଭଲ ପାଆନ୍ତି ।

ପୁତ୍ରକନ୍ୟା ମଧ୍ୟରେ ଟିକିଏ ମତଦ୍ୱୈଧ ଉପସ୍ଥିତ ହେଲେ ସେମାନେ ପୃଥକ ହୋଇ ଯାଆନ୍ତି । ପୁତ୍ରକନ୍ୟାର ମତ ନେଇ ଏମାନେ ବିଭା ବିବାହ ପଦ୍ଧତିକୁ ପ୍ରଶ୍ରୟ ଦିଅନ୍ତି । ମାତ୍ର ଅବୈଧ ପ୍ରଣୟ ବା ଗୁପ୍ତ ପ୍ରଣୟକୁ ସେମାନେ ଅତ୍ୟନ୍ତ ଘୃଣା କରନ୍ତି, ଆଦୌ ପ୍ରଶ୍ରୟ ଦିଅନ୍ତି ନାହିଁ । ଏପରିକି ସମୟ ସମୟରେ ହତ୍ୟାର ଆଶ୍ରୟ ନିଆ ଯାଇଥାଏ । ସାମାଜିକ ନିୟମର ବ୍ୟତିକ୍ରମ ହେଲେ ଅଭିଭାବକମାନେ ପୁତ୍ରକନ୍ୟାର ଜୀବନ ପ୍ରତି ତିଳେ ମାତ୍ର ଭ୍ରୂକ୍ଷେପ କରନ୍ତି ନାହିଁ । ସେମାନଙ୍କ ଉପରେ ଜୁଲମ ଓ ଅପରର ଆଧିପତ୍ୟକୁ ସେମାନେ ଘୃଣା କରନ୍ତି । ମଦ ନଥିବା ସ୍ଥଳକୁ ସେମାନେ ଭଲ ପାଆନ୍ତି ନାହିଁ । ସତ୍ୟକଥନ ସେମାନଙ୍କର ଧର୍ମ କହିଲେ ଅତ୍ୟୁକ୍ତି ହେବନାହିଁ । ସେମାନେ ମହୁଲ ମଦ ବେଶି ଖାଆନ୍ତି । ଖଜୁରୀ ମଦ ପାଇଲେ ପିଅନ୍ତି । ସେମାନଙ୍କର ଶବଦାହ ବଡ଼ ଚମତ୍କାର । ଶବଦାହ ସମୟରେ ମହୁଲ ମଦ ସମସ୍ତେ ପିଅନ୍ତି । ମୃତ ବ୍ୟକ୍ତିର ବନ୍ଧୁବାନ୍ଧବ, ସ୍ୱାମୀ ଅଥବା ସ୍ତ୍ରୀ କିମ୍ବା ଯେ କୌଣସି ସମ୍ପର୍କୀୟ ଲୋକ ଦାହ ସମୟରେ ଉପସ୍ଥିତ ରୁହନ୍ତି । "ଶିରମାର" ନାମକ ଜଣେକ ଲୋକ ଦ୍ୱାରା ଶବ ଶ୍ମଶାନକୁ ଆସେ । ସେଠାରେ ସଦ୍ୟ କରଞ୍ଜି ଗଛ କଟା ହୋଇ ଦାହକ୍ରିୟା ସମ୍ପନ୍ନ ହୁଏ । ଶବରମାନଙ୍କର ଉପାସନା ପଦ୍ଧତି ବଡ଼ କୌତୂହଳୋଦ୍ଦୀପକ । ଯଦିଓ ଏମାନଙ୍କ ମଧ୍ୟରୁ ଅଧିକାଂଶ ଶକ୍ତିର ଉପାସକ ତଥାପି ସେମାନଙ୍କ ମଧ୍ୟରୁ ଅନେକ ଶବର ଗ୍ରାମ ଓ ପାଣ୍ଡବାଦିଙ୍କୁ ପୂଜା କରନ୍ତି । ଶବରମାନେ ବ୍ୟାଘ୍ର, ସିଂହ, ଭୂତ, ପ୍ରେତଙ୍କୁ ମଧ୍ୟ ପୂଜା କରିଥାନ୍ତି । ପ୍ରତ୍ୟେକ ଗ୍ରାମର ଶେଷଭାଗରେ ଗୋଟିଏ ସ୍ତମ୍ଭ ରଖାଯାଏ । ସେ ସ୍ତମ୍ଭର ଶୃଙ୍ଗପଟେ ଅଳ୍ପ ଉଚ୍ଚର କାଠ ଦିଆ ହୋଇ ଉପରେ ଛପର ଦିଆ ଯାଇଥାଏ । ସେ ସ୍ତମ୍ଭକୁ ସେମାନେ ସ୍ତମ୍ଭେଶ୍ୱରୀ ବୋଲି ପୂଜା କରନ୍ତି । ଏହି ସ୍ତମ୍ଭେଶ୍ୱରୀ ଦକ୍ଷିଣ ଭାରତ ଓ ଓଡ଼ିଶାର କନ୍ଧ ଗଣ୍ଡ ଓ ଅନ୍ୟାନ୍ୟ ଆଦିବାସୀମାନଙ୍କର ଉପାସ୍ୟ । ଏହି ସ୍ତମ୍ଭରେ ପଶୁବଳି ଦିଆଯାଏ ।

ଶବରମାନଙ୍କ ମଧ୍ୟରୁ କେହି ଅସୁସ୍ଥ ହେଲେ ସେ ଗୃଢ଼ଳ ଧରି ପୂଜକ ଭେଇଆ ପାଖକୁ ଆସେ । ଏହି ଭେଇ ବା ଭେଇଆ ସେମାନଙ୍କ

Digitized by srujanika@gmail.com

ନିକଟରେ ଖାଲି ପୂଜକ ନୁହେଁ ଅଧିକନ୍ତୁ ଜଣେ ବୈଦ୍ୟରୂପେ ସମ୍ମାନିତ ହୋଇଥାଏ । ସେ ଗୋଟାଏ ଲାଉ ତୁମ୍ବାରେ ନିର୍ମିତ ବାଦ୍ୟଯନ୍ତ୍ର ବଜାଇ ଗୋଟାଏ ଗୋଟା ଗୁଉଳ ତଳେ ପକାଇ ସୂର୍ଯ୍ୟ, ଚନ୍ଦ୍ର, ବରୁଣ, ଭୂମି ପ୍ରଭୃତି ଏବଂ ଅସୁସ୍ଥ ବ୍ୟକ୍ତିର ପୂର୍ବପୁରୁଷର ନାମ ଉଚ୍ଚାରଣ କରି କେତେକ ମନ୍ତ୍ର ପାଠ କରିଥାଏ । ରୋଗ ପ୍ରତିକାରର ଉପାୟ ସ୍ୱରୂପ ପ୍ରଥମରେ କୁକୁଡ଼ା ବଳିର ବ୍ୟବସ୍ଥା କରିଦିଏ । ସେଥିରେ ରୋଗର ଉପଶମ ନହେଲେ କ୍ରମାନ୍ୱୟେ ଛେଳି, ଘୁଷୁରି, ପୋଡ଼ ବଳିର ବ୍ୟବସ୍ଥା କରିଥାଏ । ପୁଣି ଗୋଟିଏ ପୋଡ଼ ବଳିରେ ଅସୁସ୍ଥ ବ୍ୟକ୍ତିର ଶରୀର ଆରୋଗ୍ୟ ନହେଲେ ସେହି ଯୋଇଆ ୨।୩।୪ ଏପରିକି ୧୫ଟା ପୋଡ଼ ବଳିର ବ୍ୟବସ୍ଥା କରିବାର ଶୁଣାଯାଇଛି । ଏହାଦ୍ୱାରା ଶବରମାନଙ୍କର ଯେ କି ଅନିଷ୍ଟ ସାଧିତ ହେଉଛି ତାହା ସେମାନେ ଜାଣିପାରୁ ନାହାଁନ୍ତି । ଏହିପରି ଅନ୍ଧ ବିଶ୍ୱାସର ବଶବର୍ତ୍ତୀ ହୋଇ ଏମାନଙ୍କର ବଂଶ ଲୋପ ହେବା ସଙ୍ଗେ ସଙ୍ଗେ ସେମାନେ ହୃତସର୍ବସ୍ୱ ହୋଇ ଘୃଣିତ ଭାବରେ କାଳ ଯାପନ କରନ୍ତି ।

ଶବର ଜାତି ସହ ପାଣ ଜାତିର ସୌହାର୍ଦ୍ଦ୍ୟ ନାହିଁ । ଏହି ପାଣମାନେ ପୋଡ଼ ଓ ଅନ୍ୟାନ୍ୟ ପଶୁପାଳନ କରନ୍ତି । ଏମାନଙ୍କର ପଶୁ କିପରି ବେଶି ସଂଖ୍ୟାରେ ବିକ୍ରି ହେବ, ଏହି ଆଶାରେ ସେମାନେ ଯୋଇଆ ସହିତ ବନ୍ଧୁତା ସ୍ଥାପନ କରନ୍ତି । ଶୁଣାଯାଏ ଯୋଇଆକୁ ଉତ୍କୋଚ ଦିଅନ୍ତି । ସେ ଯୋଇଆ ଅସୁସ୍ଥ ବ୍ୟକ୍ତିକୁ ପଶୁବଳିର ବିହିତ ବ୍ୟବସ୍ଥା କରିଦିଏ । ଫଳରେ ପାଣମାନେ ପୋଡ଼ ଓ ଅନ୍ୟାନ୍ୟ ପଶୁ ବିକ୍ରି କରି ଲାଭବାନ୍ ହେବା ବେଳେ ଦରିଦ୍ର ଅନ୍ଧବିଶ୍ୱାସୀ ଶବର ସର୍ବସ୍ୱାନ୍ତ ହେଉଛନ୍ତି ।

ଶବରମାନଙ୍କର ବିବାହ ପଦ୍ଧତି ଦେଖିଲେ ଜଣାଯାଏ ଯେ, ଏମାନେ ଗାନ୍ଧର୍ବ-ବିବାହର ପକ୍ଷପାତୀ । କେଉଁ କେଉଁ ସ୍ଥାନରେ ଖୁବ୍ କମ୍ ସଂଖ୍ୟାରେ ଅସୁର ବିବାହ ଦେଖାଯାଏ । ଯୁବତୀର ବିନାନୁମତିରେ ବିବାହ କଦାପି ସିଦ୍ଧ ହୁଏ ନାହିଁ । ଏମାନଙ୍କର ବିବାହ ମଦ୍ୟର ଆଦାନ ପ୍ରଦାନ ଉପରେ ସର୍ବଦା ନିର୍ଭର କରେ । ଲାଞ୍ଜିଆ ଓ ଅନ୍ୟାନ୍ୟ ଶବରମାନଙ୍କର ବର ପକ୍ଷର ଲୋକ ବା ବରର ପିତାମାତା ଗୋଟିଏ ବା ଦୁଇଟି ମଦମାଠିଆ ଓ ଗୋଟିଏ ଶର ନେଇ ପୂର୍ବକଳ୍ପିତ କନ୍ୟା ଘରକୁ ଯାଆନ୍ତି ଏବଂ କନ୍ୟା ଘରର ଦାଣ୍ଡଦୁଆର ଚାଳରେ ଶରଟି ଖୋଚି ଦେଇ ମଦମାଠିଆ ରଖି ଆଗମନର କାରଣ ଜଣାନ୍ତି । ଯଦି କନ୍ୟାର ପିତାମାତା ଏ ବିବାହରେ ରାଜି ହୁଅନ୍ତି, ତେବେ ସେମାନେ ସେ ତାଡ଼ି ଗ୍ରହଣ କରନ୍ତି ଏବଂ ଗ୍ରାମର ମୁଖିଆ ବ୍ୟକ୍ତିଙ୍କୁ ମଦ୍ୟପାନ କରିବାକୁ

Digitized by srujanika@gmail.com

ନିମନ୍ତ୍ରଣ କରନ୍ତି । ପ୍ରଥମ ଥର କନ୍ୟାର ପିତାମାତା ରାଜି ନ ହେଲେ ଆଉ ଥରେ ଏମଣିକି ଦୁଇ ତିନିଥର ମଦ ଆଣି ବରପକ୍ଷୀୟ ଲୋକେ କନ୍ୟାର ଘରେ ପହଞ୍ଚନ୍ତି । ମଦ ଗୃହୀତ ନ ହେଲେ ବିବାହ ଅନୁଷ୍ଠିତ ହୋଇପାରେ ନାହିଁ । କନ୍ୟାର ବାଲ୍ୟ ଅବସ୍ଥା କିମ୍ବା ଯୌବନ ଲାଭ ପରେ ନିର୍ବନ୍ଧ ହୋଇଥାଏ । ଶବରମାନଙ୍କ ମଧ୍ୟରେ କନ୍ୟା ନିର୍ବାଚନ କାର୍ଯ୍ୟ ସାଧାରଣତଃ ପିତାମାତା କିମ୍ବା ବନ୍ଧୁବାନ୍ଧବ ସଂପର୍କୀୟ ମୁଖିଆ ବ୍ୟକ୍ତିଙ୍କ ଉପରେ ନ୍ୟସ୍ତ । ଦକ୍ଷିଣ-ଭାରତୀୟ ଶବରମାନଙ୍କ ସଦୃଶ ବାଳିକାମାନଙ୍କର ବର ବାଛିବାର ଅଧିକାର ନାହିଁ । ଏମାନଙ୍କର ଯୌତୁକ ପ୍ରଥା ଅଛି । କନ୍ୟାର ମାତାକୁ କିଛି ଅର୍ଥ ଦେବା ବାଧ୍ୟତାମୂଳକ । ପିତା ଅବସ୍ଥାପନ୍ନ ହୋଇଥିଲେ କନ୍ୟାକୁ ଗୋରୁ, ଗାଈ, ଘୁଷୁରି ଇତ୍ୟାଦି ଯୌତୁକ ସ୍ୱରୂପ ଦିଅନ୍ତି । ଭୂୟାଁମାନଙ୍କ ତତ୍ତ୍ୱାବଧାନରେ ସାଧାରଣତଃ ବିବାହ କାର୍ଯ୍ୟ ଅନୁଷ୍ଠିତ ହୁଏ । ଆଉ ଏକ-ପ୍ରକାର ଶବର ନିମ୍ନ ପ୍ରକାରରେ କନ୍ୟା ସ୍ଥିର କରନ୍ତି । ଯେଉଁ ଗ୍ରାମରେ କନ୍ୟା ଥାଏ, ବରର ପିତାମାତା ଗୁପ୍ତରେ ସେ ଗ୍ରାମରେ ଯାଇ ପହଞ୍ଚନ୍ତି । ଗ୍ରାମର ଶେଷ ପ୍ରାନ୍ତରେ ଗୋଟିଏ ଭୋଜର ଆୟୋଜନ କରି କନ୍ୟାର ପିତାମାତାଙ୍କୁ ନିମନ୍ତ୍ରଣ କରନ୍ତି । ସେମାନେ ନିମନ୍ତ୍ରଣ ରକ୍ଷା କଲେ ବିବାହ ହୁଏ, ନଚେତ୍ ବିବାହ ଭାଙ୍ଗିଯାଏ । ମାତ୍ର କନ୍ଧମାନଙ୍କର କନ୍ୟାପାତ୍ର ସ୍ଥିର କରିବା ପଦ୍ଧତି ବିଚିତ୍ର ପ୍ରକାର । ପ୍ରତ୍ୟେକ କନ୍ଧ ଗ୍ରାମର ଶେଷ ପ୍ରାନ୍ତରେ ମୁହାଁମୁହିଁ ହୋଇ ଦୁଇଟି ଘର ତିଆରି ହୋଇଥାଏ । ସନ୍ଧ୍ୟା ଆଗମରେ ଗ୍ରାମର ସମସ୍ତ ଯୁବକ ଯୁବତୀ ସେହି ଘରେ ଉପସ୍ଥିତ ହୁଅନ୍ତି । ଏମାନଙ୍କୁ ଧେଙ୍ଗଡ଼ା ଧେଙ୍ଗଡ଼ୀ ବୋଲି କୁହାଯାଏ । ଦୁଇଦଳଙ୍କ ମଧ୍ୟରେ ସଂଗୀତ ପ୍ରତିଯୋଗିତା ଚାଲେ । ନୃତ୍ୟ ସହ ପ୍ରଶ୍ନୋତ୍ତର ଛଳରେ ପରସ୍ପର ନାମ, ଗୋତ୍ର, ପିତାମାତା ଜୀବିତ କି ନା ଜାଣିବାକୁ ସେମାନେ ଚେଷ୍ଟା କରନ୍ତି । ଦୁଇ ଦଳ ମଧ୍ୟରେ ଗୋଟାଏ ଗାର କଟା ହୋଇଥାଏ । ଗୋଟିଏ ପଟରେ ଧେଙ୍ଗଡ଼ା ଓ ଆର ପଟରେ ଧେଙ୍ଗଡ଼ୀ ଠିଆ ହୋଇ ହାସ ପରିହାସ ଗୀତ ନାଚ କରନ୍ତି । ତାପରେ ହୁଏ ପ୍ରେମର ବିନିମୟ । ଧେଙ୍ଗଡ଼ାମାନେ ଧେଙ୍ଗଡ଼ୀର ବୟସ, ଯୌବନ, ସ୍ତନ ନେଇ ସଂଗୀତ ରଚନା କରନ୍ତି । ପ୍ରେମର ବିନିମୟ ସରିଲା ପରେ ଧେଙ୍ଗଡ଼ା ସେ ପଟକୁ ଯାଇ ଧେଙ୍ଗଡ଼ୀକୁ ଜୋର କରି ଟାଣି ନେଇ ଆସିବାକୁ ଚେଷ୍ଟା କରେ । ଧେଙ୍ଗଡ଼ୀମାନେ ଖୁବ୍ ଜୋରରେ ଧେଙ୍ଗଡ଼ାକୁ ପ୍ରହାର କରନ୍ତି । ଧେଙ୍ଗଡ଼ା ଲାଇନ୍‌କୁ ଅତିକ୍ରମ କଲେ ଧେଙ୍ଗଡ଼ୀ ତାର ସ୍ତ୍ରୀତ୍ୱ ବରଣ କରେ ।

Digitized by srujanika@gmail.com

ଶବରମାନଙ୍କ ଭାଷା ସହିତ ଓଡ଼ିଆର ଖୁବ୍ କମ୍ ସାମଞ୍ଜସ୍ୟ ଅଛି । ବରଂ କନ୍ଧମାନଙ୍କ ଭାଷା ସହିତ ଓଡ଼ିଆ ଭାଷାର ସାମଞ୍ଜସ୍ୟ ଅଛି । ସୌରାମାନଙ୍କର ବର୍ଣ୍ଣମାଳା ନାହିଁ । ନିମ୍ନରେ କେତେକ ଉଦାହରଣରୁ ଶବର, କନ୍ଧ ଓ ଓଡ଼ିଆ ଭାଷାର ସମ୍ବନ୍ଧ ଜାଣିହେବ ।

| ଓଡ଼ିଆ ଭାଷା | ଶବର ଭାଷା | କନ୍ଧ ଭାଷା |
|---|---|---|
| ଆକାଶ | ଇଅଂକନ୍ | ଆକାଶ |
| କଇଁଚ | କାଂଇଚ୍ | ସିଂଟକଇ |
| ଠାକୁର | ସୋଯୁମ୍ | ଟାକୁର |
| ଖରା | ଉଗା | କରା |
| ଜଙ୍ଗଲ | ମିଲ୍ଇ | ବଜ |
| ନଦୀ | ନାଇ | ଜଡ଼ |
| ପିତା | ଉଆଙ୍କ୍ | ଆବା |
| ମାମୁ | ମାମାଙ୍ଗ୍ | ମାମୁଁ |
| ରାଜା | ରାଜ୍ | ରାଜା |

ଶବର ଭାଷାର ପ୍ରାୟ ପ୍ରତି ବର୍ଣ୍ଣରେ ହଳନ୍ତ ଲାଗେ । ସେମାନଙ୍କର ଗାଉଁଲି ଗୀତ ରହସ୍ୟପୂର୍ଣ୍ଣ । ପ୍ରାୟ ସମସ୍ତ ଗାଉଁଲିଗୀତ କେବଳ ଯୁବକ-ଯୁବତୀର ପ୍ରେମ ଓ ସୌନ୍ଦର୍ଯ୍ୟ ନେଇ ରଚିତ । ନିମ୍ନରେ ଗୋଟିଏ ଉଦାହରଣ ଦିଆଗଲା—

ଶ—ଡରେଲେ ଏରତାଙ୍ଗ ମାନଖଂଜ ମାନଖଂଜ,
ଓ—ଆସ ଧାଇଁନାରେ ସୁନ୍ଦରୀ ସୁନ୍ଦରୀ,
ଶ—ଆନ୍ନୋଲେ ଏବାଂ ମାନଖଂଜ ମାନଖଂଜ,
ଓ—ଏକାକୀ ଆମେ ଦୁଇଜଣ ଯିବାରେ ସୁନ୍ଦରୀ ସୁନ୍ଦରୀ,
ଶ—ଆନ୍ନୁଡ଼ଙ୍ଗ ବାଇଲେ ଏବାଂ ମାନଖଂଜ ମାନଖଂଜ
ଓ—ମିଶିକରି ଶୀଘ୍ର ଯିବାରେ ସୁନ୍ଦରୀ ସୁନ୍ଦରୀ
ଶ—ଆନାବାକାଲେ ଏବାଂ ମାନଖଂଜ ମାନଖଂଜ
ଓ—ନୃତ୍ୟ କରନାରେ ସୁନ୍ଦରୀ ସୁନ୍ଦରୀ ।

ଶବର ଜାତିର ସ୍ତ୍ରୀ ଲୋକେ ଓ ଯୁବକ ଯୁବତୀ ଅପରିଚିତ ବ୍ୟକ୍ତି ଦେଖିଲେ ସେମାନଙ୍କ ନାମରେ କବିତା ରଚନା କରନ୍ତି । ବର୍ଷର ପ୍ରାୟ ସବୁ

Digitized by srujanika@gmail.com

ସମୟରେ ସାଧାରଣ ମଉଜ ମଜଲସ୍ ଲଗିଥାଏ । କୌଣସି ନୂତନ ଫସଲ ଆମଦାନୀ ହେଲେ ସେମାନେ ଉତ୍ସବାଦି ଅନୁଷ୍ଠିତ କରାଇ ମଦ୍ୟପାନ କରନ୍ତି । ଗୌର ବା ଶ୍ରାଦ୍ଧ ସେମାନଙ୍କର ପ୍ରଧାନ ଉତ୍ସବ । ଏହି ଉତ୍ସବ ମୃତ ବ୍ୟକ୍ତିଙ୍କୁ ସମ୍ମାନ ଦେଖାଇବା ସକାଶେ ଅନୁଷ୍ଠିତ ହୋଇଥାଏ । ସାଧାରଣତଃ ଏହି ଉତ୍ସବ ଜାନୁଆରୀ ମାସରେ, ଅପ୍ରେଲ ମାସରେ ଅନୁଷ୍ଠିତ ହୁଏ । ଏ ଉତ୍ସବରେ ଷଣ୍ଢ ମରାଯାଏ । ପ୍ରତ୍ୟେକ ମୃତବ୍ୟକ୍ତି ସକାଶେ ଗୋଟିଏ ଗୋଟିଏ ଷଣ୍ଢ ଆବଶ୍ୟକ ହୁଏ । ତେଣୁ ସେମାନେ ବିଶେଷ ଭାବରେ ଋଣଗ୍ରସ୍ତ ହୁଅନ୍ତି । କାନ୍ଦୁଲ ଅମଳ ସମୟରେ କାନ୍ଦୁଲ ଉତ୍ସବ ହୁଏ, ଡିସେମ୍ବର ମାସ ବେଳକୁ ଏହି ଉତ୍ସବ ସର୍ବତ୍ର ବ୍ୟାପିଯାଏ । ଏହାକୁ କେହି କେହି ତେଲେଗୁମାନଙ୍କର 'ପଙ୍ଗଲ' ଉତ୍ସବ ବୋଲି କହିଥାନ୍ତି । ମାତ୍ର ଏହା ପଙ୍ଗଲ ଉତ୍ସବଠାରୁ ଭିନ୍ନ । ଶବରମାନେ ବସନ୍ତ ରୋଗରେ ଦେବତାଙ୍କୁ ପୂଜା କରନ୍ତି । କେହି କେହି ସୋନାମ୍ ଦେବତାର ପୂଜା କରନ୍ତି । ଏମାନଙ୍କର ଉପାସନା ରୀତି ପୃଥକ ହେଲେ ମଧ୍ୟ ଏମାନେ ହିନ୍ଦୁମାନଙ୍କ ଭଳି ଶକ୍ତି ଉପାସକ । କେହି କେହି ଏହି ଶକ୍ତିକୁ ସର୍ବଶକ୍ତିମାନ୍ ଭଗବାନ ବୋଲି କହିଥାନ୍ତି । ଯାହାହେଉ ଶବରମାନେ ଏ ପର୍ଯ୍ୟନ୍ତ ହିନ୍ଦୁମାନଙ୍କ ଭଳି କାଳ ଯାପନ କରୁଛନ୍ତି । ମାତ୍ର ସେମାନଙ୍କ ଉନ୍ନତି ଲାଗି କରାଯାଉଛି କି'ଣ ? ପ୍ରକୃତ ଦେଶର ଉନ୍ନତି କରିବାକୁ ହେଲେ, ଜାତିର ଉନ୍ନତି କରିବାକୁ ହେଲେ ଏହି ଆଦିବାସୀ ଓ ଅନୁନ୍ନତ ଜାତିର ଉନ୍ନତି କରିବାକୁ ହେବ ।

Digitized by srujanika@gmail.com

# ପ୍ରତିମା ଓ ବାହନ

ଭାରତବର୍ଷର ବିଭିନ୍ନ ମନ୍ଦିରରେ ବିଭିନ୍ନ ଯାଦୁଘରେ ବହୁ ଦେବା-ଦେବୀ ମୂର୍ତ୍ତି ଦେଖିବାକୁ ମିଳେ । ପ୍ରତି ହିନ୍ଦୁ ଗୃହସ୍ଥ କୌଣସି ନା କୌଣସି ଦେବତାର ଉପାସନା କରିଥାଏ । ଉପାସ୍ୟ ଦେବତାମାନଙ୍କରୁ କେତୋଟି ପ୍ରଧାନ ଦେବତା ଆମର ଅତି ପରିଚିତ ଏବଂ ସୁପ୍ରସିଦ୍ଧ । ସେହିମାନଙ୍କର ବାହନାଦିର ବିଚାର ଏ ପ୍ରବନ୍ଧର ଉଦ୍ଦେଶ୍ୟ ।

ଦେବଦେବୀ ଓ ଏମାନଙ୍କର ବାହନ ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ପ୍ରତିମା ପୂଜା ବା ମୂର୍ତ୍ତି ପୂଜାର ଇତିହାସ ଆଲୋଚନା କରିବା ଉଚିତ ।

ବୈଦିକ ଯୁଗରୁ ପ୍ରତିମା ପୂଜାର ପ୍ରଚଳନ ଉପନିଷଦ୍ ଭାଗମାନଙ୍କରେ ପରିଲକ୍ଷିତ, କାରଣ ଉପନିଷଦ୍‌ରେ ଉଦ୍‌ଗୀଥ ବା ଓଁକାର ଉପାସନାର ପରିଚୟ ମିଳେ । ଶବ୍ଦବ୍ରହ୍ମରୁ ଜଗତର ଆତ୍ମପ୍ରକାଶ । ଏହି ଶବ୍ଦବ୍ରହ୍ମ ସର୍ବବର୍ଣ୍ଣି ପ୍ରଜାପତି ଓଁକାର ରୂପରେ ବୈଦିକ ଯୁଗରେ ତତ୍କାଳୀନ ମହର୍ଷିମାନଙ୍କର ଉପାସ୍ୟ ହୋଇ କ୍ରମଶଃ ସେମାନଙ୍କର ବହୁକାଳ ତପସ୍ୟାଭ୍ୟାସଜନିତ ନିର୍ମଳ ସତ୍ତ୍ୱପୂର୍ଣ୍ଣ ଚିତ୍ତରେ ପ୍ରକାଶିତ ହୋଇଅଛି । ତନ୍ତ୍ର ମନ୍ତ୍ର ସମ୍ପ୍ରଦାୟାଗମ ପରମ୍ପରାରେ ସେହି ଶବ୍ଦ ବ୍ରହ୍ମୋପାସନାକୁ ମୂଳରେ ରଖି ଏହି ସମସ୍ତ ପ୍ରକାର ଅର୍ଚ୍ଚାବାଦ ବା ପ୍ରତିମାବାଦର ସୃଷ୍ଟି ହୋଇଅଛି । ଅଦ୍ୱୈତବାଦୀ ଶଙ୍କର ମଧ୍ୟ ଛାନ୍ଦୋଗ୍ୟ ଉପନିଷଦ୍‌ର ଭାଷ୍ୟ କରିବାକୁ ଯାଇ ଓଁକାର ଉପାସନା ଯେ ଉପନିଷଦ୍‌ରେ ପ୍ରଚଳିତ ଥିଲା, ତାର ପ୍ରମାଣ ଦର୍ଶାଇ ଅଛନ୍ତି ।
ଛାନ୍ଦୋଗ୍ୟ—୧।୧।୧

ଓଁ ମିତ୍ୟେତଦକ୍ଷର ମୁଦ୍‌ଗୀଥ ମୁପାସୀତ ଓଁ ମିତ୍ୟେତଦକ୍ଷରଂ ପରମାତ୍ମନୋଽଭିଧାନମ୍ ନେଦିଷ୍ଠମ୍ । ତସ୍ମିନ୍ ହି ପ୍ରଯୁଜ୍ୟମାନେ ସ ପ୍ରସୀଦତି ପ୍ରିୟନାମଗ୍ରହଣ ଇବ ଲୋକଃ । ତଥା ଚ ଅର୍ଚ୍ଚାଦିବତ୍ ପରମାତ୍ମନଃ ପ୍ରତୀକମ୍

Digitized by srujanika@gmail.com

ସମ୍ପଦ୍ୟତେ । ଏବଂ ନାମତ୍ୱେନ ପ୍ରତୀକତ୍ୱେନ ଚ ପରମାତ୍ମୋପାସନଂ ଶ୍ରେଷ୍ଠ-ମିତି ସର୍ବଂ ବେଦାନ୍ତେ ସ୍ୱବଗତମ୍ ।

(ଶଙ୍କରାଚାର୍ଯ୍ୟ ଛାନ୍ଦୋଗ୍ୟ ଉପନିଷଦ୍ ଭାଷ୍ୟ ଦର୍ଶନୋଦୟ, ପୃଷ୍ଠା-୫୧୮)

ଅର୍ଥାତ୍ ଏହି ଓଁକାର ଉପାସନାରୁ ସମସ୍ତ ପ୍ରତୀକ ଉପାସନାର ସୃଷ୍ଟି ହୋଇଅଛି । ଏହା ଅନାଦିର୍ବୈଦିକ କାଳ ସିଦ୍ଧ । ଯଦିଓ ମୀମାଂସା-ଶାସ୍ତ୍ରକାର ଜୈମିନି ଦେବତାମାନଙ୍କର ବିଗ୍ରହ ସ୍ୱୀକାର କରିନାହାନ୍ତି, ନିରୁକ୍ତକାର ଯାସ୍କ ମୁନି ମଧ୍ୟ ସ୍ୱୀୟ ନିରୁକ୍ତରେ ଦେବତାମାନଙ୍କର ବିଗ୍ରହ ନଥିବା ବିଷୟ ଉଲ୍ଲେଖ କରିଅଛନ୍ତି ଏବଂ ଏକାନ୍ତତଃ ମୃଦ୍ଦାରୁଶିଳାଧାତ୍ୱାଦି ପ୍ରତିମା ନ ମାନିଥିଲେହେଁ ନିଖିଳ ବୈଦିକ କର୍ମଫଳ ପ୍ରଦାନାର୍ଥ ତତ୍ ତତ୍ ମନ୍ତ୍ରମୟ ବିଗ୍ରହ ସ୍ୱୀକାର କରିଅଛନ୍ତି ।

ଏହି ପ୍ରତୀକବାଦ କ୍ରମେ ଭକ୍ତିମାର୍ଗର ଷଡ୍‌ଦର୍ଶନ ସୃଷ୍ଟିରେ ଯଥେଷ୍ଟ ସହାୟତା କରିଛି ।

ଶୈବଞ୍ଚ ବୈଷ୍ଣବଂ ଶାକ୍ତଂ ସୌରଂ ବୈନାୟକଂ ତଥା
ସ୍କାନ୍ଦଞ୍ଚ ଭକ୍ତି ମାର୍ଗସ୍ୟ ଦର୍ଶନାନି ଷଡ୍ଡେବ ହି
(ପରାଶର ମାଧବଭାଷ୍ୟେ ଦର୍ଶନୋଦୟ, ପୃ: ୪୯୫)

ଉପର୍ଯ୍ୟୁକ୍ତ ଛଅଟିଯାକ ଦର୍ଶନ ବେଦମୂଳକ ବୋଲି ବହୁ ମନୀଷୀ ସ୍ୱୀକାର କରିଅଛନ୍ତି ।

ଷର୍ଣ୍ଣମେଷାଂ ତୁ ସର୍ବେଷାଂ କର୍ମଣାଂ ପ୍ରେତ୍ୟ ଚେ ହ ଚ
ଶ୍ରେୟସ୍କରତରଂ ଜ୍ଞେୟଂ ସର୍ବଦା କର୍ମ ବୈଦିକମ୍ ।
(ଅତ୍ର କୁଲ୍ଲୁକଃ)

[ ମନୁ ଦ୍ୱାଦଶ ଅଧ୍ୟାୟ ]

ପୁନଶ୍ଚ ନାମ ଉପାସନାର ସଙ୍କେତ ମଧ୍ୟ ଉପନିଷଦ୍‌ରେ ମିଳେ ।
"ତଥା ହି ପ୍ରତୀକୋପାସନାନାଂ ଫଳଶ୍ରୁତ୍ୟୋଦୟଂ
ନାମ ବ୍ରହ୍ମେତ୍ୟୁପାସ୍ତେ ଯାବନ୍ନାମ୍ନୋଗତଂ
ତତ୍ରାସ୍ୟ କାମଚାରୋ ଭବତି ।"

Digitized by srujanika@gmail.com

ଅର୍ଥାତ୍ ନାମ ଉପାସନାର ଯେଉଁ ଯେଉଁ ଫଳ ପରିଦୃଷ୍ଟ ହୁଏ, ସେହି ସେହି ଫଳଭୋଗ ରୂପ ସେହି ସେହି ସ୍ଥାନମାନଙ୍କରେ ତାହାର କାମଗତି ହୁଏ ।

ଏହି ବେଦମୂଳକତାରୁ ସମସ୍ତ ଆଗମମାନଙ୍କର କ୍ରମାବତରଣ ଘଟିଥିବା ସ୍ୱାଭାବିକ :—

ତତ୍ପରେ ପୁରାଣାଦିମାନଙ୍କରେ ମଧ୍ୟ ବହୁଧା ଉପାସନାର ବିଧିମାନ ଉଲ୍ଲିଖିତ ହୋଇଅଛି । ଭଗବାନ୍ ଶ୍ରୀକୃଷ୍ଣ ଗୀତାରେ ମଧ୍ୟ କହିଛନ୍ତି—

ଯୋ ଯୋ ଯାଂ ଯାଂ ତନୁଂ ଭକ୍ତଃ ଶ୍ରଦ୍ଧୟାର୍ଚ୍ଚିତୁମିଚ୍ଛତି
ତସ୍ୟ ତସ୍ୟାଚଳାଂ ଶ୍ରଦ୍ଧାଂ ତାମେବ ବିଦଧାମ୍ୟହମ୍
ସ ତୟା ଶ୍ରଦ୍ଧୟାଯୁକ୍ତୋ ତସ୍ୟାରାଧନମୀହତେ
ଲଭତେ ଚ ତତଃ କାମାନ୍ ମୟୈବ ବିହିତାନ୍ ହିତାନ୍ ।

ଅର୍ଥାତ୍ "ଯେ ଭକ୍ତ ଶ୍ରଦ୍ଧାସମ୍ପନ୍ନ ହୋଇ ଯେଉଁ ଯେଉଁ ପ୍ରତିମାର ଅର୍ଚ୍ଚନା କରେ ତାହାକୁ ସେହି ସେହି ପ୍ରତିମା ଉପାସନାର ଅଭୀଷ୍ଟ ଫଳ ମୁଁ ପ୍ରଦାନ କରେ ।" ଏଥିରୁ ସହଜରେ ଅନୁମେୟ ଯେ ପ୍ରତିମା ପୂଜା ବହୁ ଦିନରୁ ଏ ଯାବତ୍ ହିନ୍ଦୁ ଜଗତରେ ପ୍ରଚଳିତ ହୋଇ ଆସୁଅଛି । ଏହି ପ୍ରତିମା ପୂଜାବାଦ କ୍ରମରେ ପ୍ରାକୃତ ଗୁଣାନୁରୂପ (ପ୍ରକୃତିସିଦ୍ଧ ଗୁଣାନୁରୂପ) ହୋଇ ସାତ୍ତ୍ୱିକ, ରାଜସ ଓ ତାମସ ରୂପରେ ଅସଂଖ୍ୟ ବିଗ୍ରହ ଧାରଣ କରିଅଛି । କିନ୍ତୁ ସମସ୍ତଙ୍କର ଉପାସନା କଳ୍ପନା ବା କାମନାନୁସାରେ ଫଳବତୀ ହୁଏ । ତେଣୁ ମୂର୍ତ୍ତିକୁ ସାଧାରଣତଃ ତିନି ଭାଗରେ ବିଭକ୍ତ କରାଯାଇଛି । ଏହି ତ୍ରିବିଧ (ସାତ୍ତ୍ୱିକ, ରାଜସ, ତାମସ) ମୂର୍ତ୍ତି ଅନୁସାରେ ପୂଜାବିଧି ମଧ୍ୟ ତ୍ରିବିଧ । ଜଗତର ଆଦେଷ୍ଟା ପରାତ୍ପର ପରମେଶ୍ୱର ସର୍ବବିଧ ପ୍ରତିମାରେ ବ୍ୟାପ୍ତ ଥାଇ ସ୍ୱୟଂ ସେହି ପ୍ରତିମା ଉପାସନାରେ ସଂକଳ୍ପିତ ଫଳ ପ୍ରଦାନ କରନ୍ତି ।

ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା,
କର୍ମାଧ୍ୟକ୍ଷଃ ସର୍ବଭୂତାଧିବାସଃ ସାକ୍ଷୀ, ଚେତାଃ କେବଳୋ ନିର୍ଗୁଣଶ୍ଚ ।

[ଶ୍ୱେତାଶ୍ୱେତ ଉପନିଷଦ୍]

Digitized by srujanika@gmail.com

ପୂର୍ବରୁ କୁହାଯାଇଛି ଯେ, ଉପାସନା ତ୍ରିବିଧ ଏବଂ ଏହି ତ୍ରିବିଧ ଉପାସନା ଗୀତାରେ ମଧ୍ୟ ସନ୍ନିବେଶିତ ।

ଯଜନ୍ତେ ସାତ୍ତ୍ୱିକା ଦେବାନ୍ ଯକ୍ଷରକ୍ଷାଂସି ରାଜସାଃ
ପ୍ରେତାନ୍ ଭୂତଗଣାଂଶ୍ଚାନ୍ୟେ ଯଜନ୍ତେ ତାମସା ଜନାଃ । [ ଗୀତା ]

ଏହି ସାତ୍ତ୍ୱିକାଦି ତ୍ରିବିଧ ଭାବାନୁସାରେ ଉପାସ୍ୟ ମୂର୍ତ୍ତିମାନଙ୍କର ବାହନାଦି ମଧ୍ୟ ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ରୂପରେ କଳ୍ପିତ ହୋଇଅଛନ୍ତି । ପୁରାଣାଦିରେ ଏହି ବାହନମାନଙ୍କର ଉପାଦେୟତା ଓ ଦେବତାମାନଙ୍କ ସହିତ ଏମାନଙ୍କର ସଂପର୍କ ସମ୍ବନ୍ଧରେ ବହୁ ଉପାଖ୍ୟାନ ରହିଛି । ସେଗୁଡ଼ିକର ଉଦ୍ଧୃତି କାଳେ ପ୍ରବନ୍ଧର ବୃଦ୍ଧି କରିବ, ଏହି ଆଶଙ୍କାରେ ସେଥିରୁ କ୍ଷାନ୍ତ ରହି, କେବଳ ସାଧାରଣ ଦୃଷ୍ଟିରୁ ସେମାନଙ୍କର ପରିକଳ୍ପନାର ଆବଶ୍ୟକତା ସମ୍ବନ୍ଧରେ ବିଚାର କଲେ ଅନ୍ୟାୟ ହେବ ନାହିଁ । ଉପାସନା ଜଗତରେ ନାରାୟଣ, ରୁଦ୍ର, ଅମ୍ବିକା, ଭାସ୍କର ଓ ଗଣପତି ଏହି ପଞ୍ଚ ଦେବତାଙ୍କର ସ୍ଥାନ ଅତି ଉଚ୍ଚରେ । ଏ ପ୍ରବନ୍ଧରେ କେବଳ ଏହିମାନଙ୍କ ବାହନ ସମ୍ବନ୍ଧରେ ସମ୍ୟକ୍ ଆଲୋଚନା କରାଯାଉଛି ।

ନାରାୟଣ ବା ବିଷ୍ଣୁ ଦେବଗଣମାନଙ୍କ ମଧ୍ୟରେ ବହୂପାସ୍ୟ-ଦେବତା । (୧) ଗରୁଡ଼ ଏହାଙ୍କର ବାହନ; ଏହି ଗରୁଡ଼ ଚତୁର୍ବେଦମୟ । ଗରୁଡ଼ଙ୍କର ପକ୍ଷ ପବନରେ ଅନୁକ୍ଷଣ ସାମ-ସ୍ୱରମାନେ ଧ୍ୱନିତ ହୋଇଥାନ୍ତି । ତାଙ୍କର ଧ୍ୟାନରେ କୁହାଯାଇଛି ଯେ "ସାମବେଦପତତ୍‌ଧ୍ୱନି" । ଏଥିରୁ ସ୍ପଷ୍ଟ ପ୍ରକାଶିତ ଯେ ବେଦମାନଙ୍କର ଶିରୋଭାଗରେ ନାରାୟଣ ବିରାଜମାନ । ସେ ବେଦଗମ୍ୟ । ଆଧିଭୌତିକତାରେ ଗରୁଡ଼ ବିରାଟ ଆକାର ରୂପଧାରୀ । ପ୍ରଜାପତି କଶ୍ୟପ ଭୂଭାଗରେ ତାଙ୍କର ଶରୀର-ଧାରଣ ଯୋଗ୍ୟ ସ୍ଥାନ ନିରୂପଣ କରିବାକୁ ଯାଇ ଯେଉଁ ନ୍ୟଗ୍ରୋଧକୁ ଉପଯୁକ୍ତ ମନେ କରିଥିଲେ ତାହାର (ବଟକୁ) ଶାଖା ବହୁ ବାଳଖିଲ୍ୟା ଋଷିଙ୍କର ଆଶ୍ରୟ ଜାଣିପାରି ଅନ୍ୟ ଶାନ୍ତିମୟ ସ୍ଥାନ ଅନ୍ୱେଷଣ କରିବା ସମୟରେ ଭଗବାନଙ୍କ ସମକ୍ଷରେ ବାହୁଦଣ୍ଡ ଦେଖି ପରମେଶ୍ୱରଙ୍କ ଅନୁମତି ଅନୁସାରେ ସେହି ବିଶାଳ ବାହୁଦଣ୍ଡରେ ଉପବେଶନ କରିବାକୁ ଉପଦେଶ ଦେଇଥିଲେ । ଭଗବାନଙ୍କର ଏହି ବିଶ୍ୱମଣ୍ଡଳଧାରିଣୀ ଅସାଧାରଣ ଶକ୍ତି ଉପଲବ୍ଧି କରି ଗରୁଡ଼ ତାହାଙ୍କର ଚିରନ୍ତନ ବହନ ଭାବ ସ୍ୱୀକାର କଲେ । ତେଣୁ ଗରୁଡ଼ ହେଲେ ନାରାୟଣଙ୍କର

Digitized by srujanika@gmail.com

ଉପଯୁକ୍ତ ବାହନ । (୨) ବୃଷଭ ମହାଦେବଙ୍କର ବାହନ । ମହାଦେବଙ୍କର ଅଷ୍ଟ ତନୁ, ପଞ୍ଚମହାଭୂତ ସୂର୍ଯ୍ୟ ଚନ୍ଦ୍ର ଓ ଦୀକ୍ଷିତ ଏହିରୂପେ ଅଷ୍ଟ ବିଗ୍ରହଧାରୀ । ମହାଦେବଙ୍କର ଅଧିଷ୍ଠାନ ବା ବାହନ ବୃଷଭ ଅଟନ୍ତି । ଏହି ବୃଷଭଙ୍କର ତପସ୍ୟା, ଯଜ୍ଞ, ଜ୍ଞାନ ଓ ଦାନ ଏହିରୂପେ ଅଥବା ସତ୍ୟ, ତ୍ରେତା, ଦ୍ୱାପର, କଳି ରୂପେ ଚାରିପାଦ । ଏହି ଚାରିପାଦରେ ଅଧିଷ୍ଠିତ ବୃଷ ରୂପ ଧର୍ମ ଅଟନ୍ତି ।

ଚତୁଷ୍ପାଦ୍ ବୃଷେଭ୍ୟୋ ଧର୍ମଃ (ଭାଗବତ)

ପରମାର୍ଥ ଭାବରେ ଅନୁଧ୍ୟାନ କଲେ ଜଣାଯାଏ ଯେ, ଶିବ ବା ମହାଦେବ ସେହି ଧର୍ମମୂର୍ତ୍ତି ବୃଷଭଙ୍କ ଶିଖରୋପରି ବ୍ୟକ୍ତ । ଏହା ଆଧ୍ୟାତ୍ମିକ । ବାହ୍ୟ ବା ଆଧିଭୌତିକ ଭାବରେ ଏରୂପେ ପ୍ରକାଶ କରାଯାଇ ପାରେ ଯେ, ବୃଷଭ ହିଁ କାମ୍ୟ ରେତକୁ ଆଜ୍ୟ ଓ ସାନ୍ନାଜ୍ୟ ରୂପେ ପରିଣତ କରି ନିଖିଳ ନିତ୍ୟ ନୈମିତ୍ତିକ କାମ୍ୟ ଯାଗଯଜ୍ଞାଦି ସମ୍ପାଦନ କର୍ତ୍ତା ରୂପେ ସୁପରିଚିତ ଓ ଊର୍ଦ୍ଧ୍ୱ ଗତିର ସମ୍ପାଦକ । ସ୍ଥୂଳ ଭାବରେ ଚିନ୍ତା କଲେ ମନେହୁଏ, ଶିବଶକ୍ତି ସୃଷ୍ଟିର ପ୍ରତୀକରୂପେ ପ୍ରପଞ୍ଚର ପିତା ମାତା ଅଟନ୍ତି । ଏହି ଶିବଶକ୍ତି ଉଭୟ ନିଯୁତ ମିଥୁନ ଭାବ ବ୍ୟକ୍ତ କରି ସୃଷ୍ଟି ପ୍ରବାହର ପ୍ରବର୍ତ୍ତକରୂପେ ବିଦ୍ୟମାନ । ସୃଷ୍ଟିର ପ୍ରଚଳନ ପାଇଁ ଧର୍ମର ଆବଶ୍ୟକତା । ତେଣୁ ଶିବାଳୟରେ ଧର୍ମରୂପୀ ବୃଷଭ ରହି ଅଛନ୍ତି । (୩) ମୂଷିକ ଗଣେଶଙ୍କ ବାହନ—ଏହି ମୂଷିକ ଯମ ପ୍ରତୀକ । ପୌରାଣିକ ଇତିବୃତ୍ତିରେ ସ୍ୱୟଂ ଯମରାଜ ମୂଷିକ ରୂପ ଧାରଣ କରି ବିଘ୍ନରାଜ ଗଣପତିଙ୍କର ବାହନତ୍ୱ ସ୍ୱୀକାର କରି ଅଛନ୍ତି ।

ଗଣପତି ବିଶ୍ୱସୃଷ୍ଟି ମଣ୍ଡଳରେ ସର୍ବବିଧ ଦିବ୍ୟ, ଭୌମ, ଅନ୍ତରୀକ୍ଷ ବିଘ୍ନମାନଙ୍କର ନିୟନ୍ତା ହେତୁ ବିଘ୍ନରାଜ ନାମଧାରୀ । ସୃଷ୍ଟିର ସମସ୍ତ ବିଘ୍ନକୂଟସ୍ଥ ଦେବତା ହେଉଛନ୍ତି ଯମ । ବିଘ୍ନକୂଟ ରୂପ ମୂଷିକବେଶୀ ଯମ ଏହାଙ୍କର ବଶମ୍ବଦ ବା ନିୟମ୍ୟ । ଲୋକରେ ମଧ୍ୟ ମୂଷିକ ପଶୁପତି (ଶିବ)ଙ୍କ ପଶୁ ଥିବାରୁ ଏହାର ସଂହାରିଣୀ ଶକ୍ତି ସମ୍ବନ୍ଧରେ ସମସ୍ତ ଅବଗତ । ମୂଷିକକୁ ଦେଶର "ଦେଶବିଦ୍ରାବକ" ଭୟରୂପେ ପରିକଳ୍ପନା କରାଯାଇଛି । ତେଣୁ ବିଘ୍ନଗଣଙ୍କ ମଧ୍ୟରେ ପ୍ରଧାନ ବିଘ୍ନରୂପ ମୂଷିକ । ତାଙ୍କର ଉପରେ ବିରାଜମାନ ଅର୍ଥାତ୍ ତାଙ୍କର ନିୟନ୍ତା ଗଣପତି ବିଘ୍ନରାଜ ଗଣେଶ ଜଗତର ଅଗ୍ରପୂଜ୍ୟ । ଏହା ସତ୍ୟ ଯେ ବିଘ୍ନ ଧ୍ୱଂସ ନ ହେଲେ କୌଣସି ମାଙ୍ଗଳିକ କାର୍ଯ୍ୟ ସମ୍ପନ୍ନ ହୋଇପାରେ

Digitized by srujanika@gmail.com

ନାହିଁ । (୪) ସପ୍ତାଶ୍ୱ ହିଁ ସୂର୍ଯ୍ୟଙ୍କର ବାହନ—"ସପ୍ତାଶ୍ୱ ରଥ ସଂସ୍ଥାନଃ" । ଏହି ପ୍ରମାଣାନୁସାରେ ପ୍ରଧାନ ସପ୍ତଲୋକ ପ୍ରକାଶକ ସୂର୍ଯ୍ୟ ସମସ୍ତ ତେଜର ମୂଳାଧର ଏବଂ ଶକ୍ତିର ଉତ୍ସ—ଅଶ୍ୱ ବେଗଶାଳୀ ହେତୁ ସେହି ତେଜର ବାହକ ଓ ଧାରକ । ସପ୍ତରଶ୍ମିମାନେ ବେଗଶାଳୀ ସପ୍ତ ଅଶ୍ୱମାନ ଅଟନ୍ତି । ସେହିମାନେ ସୂର୍ଯ୍ୟଦେବଙ୍କୁ ବହନ କରିଥାନ୍ତି ।

"ଦେବଂ ବହନ୍ତି କେତବଃ ଦୃଶେୟ ବିଶ୍ୱାୟ ସୂର୍ଯ୍ୟମ୍ ।"

ଅର୍ଥାତ୍, ସମସ୍ତ ବିଶ୍ୱର ପ୍ରକାଶ ନିକାଶେ କିରଣମାନେ ଦେବଙ୍କୁ ବହନ କରନ୍ତି । (୫) ଦୁର୍ଗା—ସିଂହ ଦୁର୍ଗାଙ୍କର ବାହନ । ଦୁର୍ଗା ଓ ତାଙ୍କର ଅନ୍ୟ କେତେକ ଶକ୍ତିମାନଙ୍କର ସିଂହ ହିଁ ବାହନ । ସିଂହ ସର୍ବଶକ୍ତି ବିଶିଷ୍ଟ ଜ୍ଞାନମୟ । ଏହି ବିଶ୍ୱବିଜ୍ଞାନମୟୀ ଦୁର୍ଗା ଓ ଆଦ୍ୟାକାଳୀ ପ୍ରଭୃତି ବିଶିଷ୍ଟ ଶକ୍ତିମାନଙ୍କର ବାହନରୂପେ ପ୍ରାଚୀନ ଋଷିମାନେ ଏହି ସିଂହକୁ ନିର୍ଦ୍ଦେଶ କରିଅଛନ୍ତି, କାରଣ ଜ୍ଞାନ ହିଁ ଶକ୍ତି । ଏଣୁ ଶକ୍ତିରୂପିଣୀ ଦୁର୍ଗାଙ୍କର ଜ୍ଞାନମଗ୍ନ ସିଂହ ହିଁ ବାହନ । ଏହା ମଧ୍ୟ ତାନ୍ତ୍ରିକ ପୂଜା ପଦ୍ଧତିରେ ଦେହ ପୀଠନ୍ୟାସରେ ବ୍ୟକ୍ତ ଅଛି—

"କୃଷ୍ଣବର୍ଣ୍ଣଂ ସିଂହଂ ଧାତ୍ୱା ଓଁ ଜ୍ଞାନାୟ ନମଃ"

(ଇତି ନ୍ୟାସଃ)

ପଞ୍ଚଦେବତାଙ୍କ ବ୍ୟତୀତ ଲକ୍ଷ୍ମୀ, ସରସ୍ୱତୀ ଓ ବ୍ରହ୍ମା ମଧ୍ୟ ଆମର ନିତ୍ୟ ଉପାସ୍ୟ—

ବ୍ରହ୍ମା ଓ ସରସ୍ୱତୀ ଏ ଉଭୟଙ୍କର ବାହନ ହେଉଛନ୍ତି ହଂସ । ହଂସ ଶବ୍ଦରେ ଜୀବ ଓ ପରମଙ୍କର ସଂଯୋଗଭାବ ନିହିତ । ଏହି ସଂଯୋଗ ସ୍ଥାନ ହିଁ ହଂସରୂପ ।

ଏହି ସ୍ଥାନରେ ବା ହଂସ ପୃଷ୍ଠରେ ଚିନ୍ମୟୀ ସରସ୍ୱତୀ ଓ ପରମେଷ୍ଠୀ ବ୍ରହ୍ମାଙ୍କର ଆବିର୍ଭାବ ବା ଅଭିବ୍ୟକ୍ତି କଳ୍ପିତ ହୋଇଅଛି । ଚିନ୍ମୟୀ ଶକ୍ତିରୂପିଣୀ ସରସ୍ୱତୀ ଓ ଜଗଦାତ୍ମା ପିତାମହଙ୍କର ଜୀବପରମ ସଂଯୋଗ, ଯୋଗରୂପ ହଂସାସନରେ ଆବିର୍ଭାବ । ଏହା ଅତି ପ୍ରିୟଦର୍ଶୀ ମନ୍ତ୍ରଦ୍ରଷ୍ଟା ମହର୍ଷିମାନଙ୍କ ଦ୍ୱାରା କଳ୍ପିତ ।

Digitized by srujanika@gmail.com

ପେଚକ ଲକ୍ଷ୍ମୀଙ୍କ ବାହନ—

ପଦ୍ମାଳୟା ଲକ୍ଷ୍ମୀଦେବୀଙ୍କର ବାହନ ରୂପେ କୌଶିକ (ପେଚକ) ଦିବାନ୍ଧ ପକ୍ଷୀ କଳ୍ପିତ ରହିଅଛି । ଏହି ବାହନ କଳ୍ପନାର କାରଣ ଏହି ଯେ, ନିଖିଳ ବିଭୂତିମାନଙ୍କର ଅଧିଷ୍ଠାତ୍ରୀ ଶ୍ରୀଦେବୀ ଚଞ୍ଚଳା ଅଟନ୍ତି । ସେ ନାରାୟଣଙ୍କ ବକ୍ଷସ୍ଥଳ ବ୍ୟତୀତ ଅନ୍ୟତ୍ର ସ୍ଥିର ନୁହନ୍ତି । ଏଣୁ ତାଙ୍କର ଚଞ୍ଚଳତା ସୃଷ୍ଟିର ସମସ୍ତ କର୍ମଲବ୍ଧ ବିଭୂତି ବିନଶ୍ୱର ଅଟନ୍ତି । ସାଧାରଣତଃ ବିଭୂତିଶାଳୀ ବ୍ୟକ୍ତିମାନଙ୍କର ପରମାର୍ଥ ଦୃଷ୍ଟି ରହେ ନାହିଁ ।

"ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା
ପଶ୍ୟତୋ ମୁନେଃ ।" [ଗୀତା]

ଏହି ଗୀତୋକ୍ତ ମତରେ ସାଂସାରିକ ନିଖିଳ ବିଭୂତି ପରମାର୍ଥ ଦୃଷ୍ଟି ପ୍ରତିବନ୍ଧକାରିଣୀ ଅଟେ । ତେଣୁ ସର୍ବବିଧ ବିଭୂତିର ଅଧିଷ୍ଠାତ୍ରୀ ଲକ୍ଷ୍ମୀଦେବୀଙ୍କର ଦିବାନ୍ଧ ପେଚକ ବାହନରୂପେ କଳ୍ପିତ ।

ଦିବା ଅର୍ଥ ପରମାର୍ଥ ଜ୍ଞାନ—ଦିବାନ୍ଧ—ପରମାର୍ଥଜ୍ଞାନ ଶୂନ୍ୟ ।

Digitized by srujanika@gmail.com

# ଓଡ଼ିଆ ସାହିତ୍ୟରେ
# ସଗୁଣ ଓ ନିର୍ଗୁଣ ଉପାସନା

ସାହିତ୍ୟ ପାଠକ ସାଧାରଣତଃ ରସ ଓ ସହୃଦୟତାର ସନ୍ଧାନୀ, କିନ୍ତୁ ଏହି ପ୍ରବନ୍ଧରେ ଓଡ଼ିଆ ସାହିତ୍ୟର ସଗୁଣ ଓ ନିର୍ଗୁଣ ଉପାସନା ସଂପର୍କରେ ମୁଁ ଯେତେବେଳେ ଆଲୋଚନା କରିବାକୁ ଯାଉଛି, ସେତେବେଳେ କେବଳ ସାହିତ୍ୟ-ରସିକ ନୁହନ୍ତି, ବହୁ ପାଠକ ମଧ୍ୟ ନାସିକା କୁଂଚନ କରି ଏହାକୁ ଏକ ଅସାହିତ୍ୟିକ ପ୍ରବନ୍ଧ ବୋଲି ବିବେଚନା କରିବା ସଙ୍ଗେ ଏହାର ମୂଲ୍ୟବୋଧ ପ୍ରତି ଅବହେଳା ପ୍ରଦର୍ଶନ କରିପାରନ୍ତି । କିନ୍ତୁ ମୁଁ ମୋର ପାଠକମାନଙ୍କୁ ପ୍ରଥମରୁ କହିଦେବାକୁ ଚାହେଁ ଯେ, ସେମାନଙ୍କର ସାହିତ୍ୟ କେବଳ ନୁହେଁ, ସେମାନେ ନିଜେ ମଧ୍ୟ ଏହି ସଗୁଣ ଓ ନିର୍ଗୁଣର ଯୁଗ୍ମ ପ୍ରତିବିମ୍ବ ବା ମିଳିତାଦର୍ଶ ।

କେବଳ ଓଡ଼ିଆ ନୁହେଁ ବା ଓଡ଼ିଆ ସାହିତ୍ୟ ନୁହେଁ, ସମଗ୍ର ମାନବ ଜୀବନ ଓ ବିଶ୍ୱ-ସାହିତ୍ୟରେ ଏହି ସଗୁଣ ଓ ନିର୍ଗୁଣ, ରୂପ ଓ ଅରୂପ, ଶାନ୍ତ ଓ ଅନନ୍ତର ଉପାସନା ପରିଲକ୍ଷିତ । ମଣିଷ ମାତ୍ରେହିଁ ଏକକ, ନିଃସଙ୍ଗ ଓ ବ୍ୟକ୍ତି ଜୀବନର ସେବକ । କିନ୍ତୁ ମନୁଷ୍ୟର ଏହି ରୂପ ପୂର୍ଣ୍ଣାବୟବ ନୁହେଁ । ତାହାର ପୂର୍ଣ୍ଣ ରୂପର ପ୍ରତିଷ୍ଠା ହେଉଛି ତାର ବହୁ, ଭୂମା ଓ ଅନନ୍ତ-ଜୀବନର ଆରାଧନା ମଧ୍ୟରେ ।

ମଣିଷର ଆଦିମ ଓ ଅସଭ୍ୟ ଜୀବନଠାରୁ ତାର ସଭ୍ୟ ଉନ୍ନତ ଜୀବନ ଯଦି ଆମେ ଆଲୋଚନା କରୁ, ତାହାହେଲେ ତାର ଏହି ଦ୍ୱୈତ ଓ ଅଦ୍ୱୈତ ରୂପର ପରିପୂର୍ଣ୍ଣ କଳା ଉପଲବ୍ଧି କରି ପାରିବା । ଅନ୍ୟ ସାହିତ୍ୟ କଥା ଛାଡ଼ିଦେଲେ ଓଡ଼ିଆ ସାହିତ୍ୟର କ୍ରମବିକାଶ ଓ ବିବର୍ତ୍ତନ ପ୍ରତି ଆମେ

Digitized by srujanika@gmail.com

ଯଦି ଲକ୍ଷ୍ୟ ଦେବା, ମନୁଷ୍ୟ ଜୀବନ ଓ ସାଧନାର ଏହି ଉଭୟ ରୂପର ଚିତ୍ର ଲକ୍ଷ୍ୟ କରିପାରିବା ।

ସଗୁଣ ହେଉଛି ଯାହା ଗୁଣ ଓ ଉପାଧିଯୁକ୍ତ । ନିର୍ଗୁଣ ହେଉଛି ଯାହା ଗୁଣହୀନ, ଉପାଧିହୀନ ଓ ବିକାରହୀନ । ଅଳ୍ପ କଥାରେ କହିଲେ ସଗୁଣ ହେଉଛି ଆମର ଜୀବନ ଏବଂ ନିର୍ଗୁଣ ହେଉଛି ଆମର ଆଦର୍ଶ । କେବଳ ବର୍ତ୍ତମାନତାକୁ ନେଇ ମହାକାଳ ଯେପରି ସମ୍ପୂର୍ଣ୍ଣ ନୁହେଁ, ଯଦିଚ ବର୍ତ୍ତମାନତାହିଁ ମହାକାଳର ଏକ ଅଂଶବିଶେଷ, ଠିକ୍ ସେହିପରି ସଗୁଣକୁ ନେଇ ଜୀବନର ନିର୍ଗୁଣ ସିଦ୍ଧିର ପୂର୍ଣ୍ଣତା ସମ୍ଭବ ନ ହେଲେ ମଧ୍ୟ ଏହି ସଗୁଣତାହିଁ ପରିପୂର୍ଣ୍ଣ ନିର୍ଗୁଣ ମହିମାର ଏକ ଅପରିହାର୍ଯ୍ୟ ଓ ଦୃଢ଼ ସୋପାନ ।

ଯେ କୌଣସି ସାହିତ୍ୟ ଭଳି ଆମର ଓଡ଼ିଆ ସାହିତ୍ୟ କାବ୍ୟ କବିତା ମଧ୍ୟରେ ପ୍ରଥମେ ଜନ୍ମଲାଭ କରିଛି ଏବଂ ମନୁଷ୍ୟ ହୃଦୟର ସହଜ ଇନ୍ଦ୍ରିୟାନୁଭୂତି ଓ ପ୍ରାଣଚେତନା ସେଥିରେ ଅଙ୍ଗୀଭୂତ । ଯୁଗର ପ୍ରଭାବ ହେତୁ ଅନ୍ୟାନ୍ୟ ସାହିତ୍ୟ ଭଳି ଓଡ଼ିଆ ସାହିତ୍ୟ, ବିଶେଷତଃ କାବ୍ୟସାହିତ୍ୟ, ଧର୍ମ, ପ୍ରଣୟ ଓ ସମାଜ-ଚେତନା ବା ପ୍ରଣୟ, ସମାଜ ଓ ଧର୍ମ-ଚେତନା ନିଜ ଶରୀରରେ ବହନ କରିଛି ।

କିନ୍ତୁ ସୂକ୍ଷ୍ମ ଦୃଷ୍ଟିରେ ବିଚାର କଲେ ଧର୍ମ, ପ୍ରଣୟ, ସମାଜଚେତନା ବା ପ୍ରଣୟ, ସମାଜ ଓ ଧର୍ମ-ଚେତନା ହେଉଛି ମନୁଷ୍ୟର ଆଦିମ, ସଚେତନ, ଅବଚେତନ ଓ ଅଚେତନ ମନର ଅଭିବ୍ୟକ୍ତି ।

ସମାଜ-ବିଜ୍ଞାନ ଦୃଷ୍ଟିରୁ କେତେବେଳେ କେଉଁ ଚେତନାକୁ ପ୍ରାଧାନ୍ୟ ଦିଆଯାଇଥିଲେହେଁ ଏହି ତିନୋଟି ମଧ୍ୟରେ ଆତ୍ମଗତ ସମ୍ପର୍କ ବିଦ୍ୟମାନ । ଅଭିବ୍ୟକ୍ତି ସ୍ୱତନ୍ତ୍ର ହୋଇପାରେ ; କିନ୍ତୁ ଆତ୍ମମୁଖ୍ୟ ଦୃଷ୍ଟିରୁ ବିଚାର କଲେ ତିନୋଟିର ସମପ୍ରକାଶ ପ୍ରତ୍ୟେକ ସାହିତ୍ୟରେ ସମାନ୍ତରାଳ ଭାବେ ପରିଦୃଷ୍ଟ ।

ମନୁଷ୍ୟର ବାଙ୍ମୟ ଅଭିବ୍ୟକ୍ତିହିଁ ତାର ସାହିତ୍ୟ ; ତେଣୁ ସାହିତ୍ୟରେ ଆମେ ତାର ସବାକ୍ ଓ ନିର୍ବାକ୍ ରୂପ ଅବଲୋକନ କରୁଁ, ଅନ୍ୟ କଥାରେ ତାର ସାମାଜିକ ଓ ଆଧ୍ୟାତ୍ମିକ ଜୀବନର ସତ୍ତା ଲକ୍ଷ୍ୟ କରୁଁ ।

Digitized by srujanika@gmail.com

ଓଡ଼ିଆ ସାହିତ୍ୟରେ ଏହି ଦ୍ୱୟୀ-ଚେତନାର ସଙ୍ଗମ ପ୍ରତ୍ୟେକ ଯୁଗର ସାହିତ୍ୟରେ ସ୍ପଷ୍ଟ । ପୁଣି ମନୁଷ୍ୟର ଧର୍ମ-ଚେତନା ଆଦିମ ଯୁଗରୁ ଦୁଇଟି ମାଧ୍ୟମରେ ପ୍ରକାଶିତ । ଗୋଟିଏ ହେଉଛି ସଗୁଣ ଓ ଅନ୍ୟଟି ନିର୍ଗୁଣ । କିଏ ଆଗ କିଏ ପଛ, ସଗୁଣରୁ ନିର୍ଗୁଣ ଆଡ଼କୁ ବା ନିର୍ଗୁଣରୁ ସଗୁଣ ଆଡ଼କୁ ମନୁଷ୍ୟ ଗତି କରେ, ତାହାର ବିଚାରର ସ୍ଥାନ ସ୍ୱତନ୍ତ୍ର । ତଥାପି ସଗୁଣ ନିର୍ଗୁଣର ଯୁଗପତ୍ ପରପ୍ରକାଶ ବିଶ୍ୱ-ସାହିତ୍ୟରେ ଲକ୍ଷଣୀୟ ।

ଏହି ମାନଦଣ୍ଡରୁ ବିଚାର କଲେ ଓଡ଼ିଆ ସାହିତ୍ୟ ବିଭିନ୍ନ ଯୁଗକୁ ଚିନ୍ତାଧାରାର ଆନ୍ଦୋଳନ ମଧ୍ୟରେ ଗତି କରିଛି ସତ୍ୟ, କିନ୍ତୁ ଧର୍ମ-ଚେତନା ଓ କୌଣସି ସମୟରେ ନିଜ ଅଙ୍ଗର ଏକ ଅତିରିକ୍ତ ଅବୟବ ଭାବରେ ବିଚାର କରିନାହିଁ । ଅଷ୍ଟମ-ଦ୍ୱାଦଶ ଶତାବ୍ଦୀର ବୌଦ୍ଧ ଯୁଗଠାରୁ ଆରମ୍ଭ କରି ଶୈବ, ଶାକ୍ତ ଓ ବୈଷ୍ଣବ ଯୁଗକୁ ଅତିକ୍ରମ କରି ଓଡ଼ିଆ ସାହିତ୍ୟର ମଧ୍ୟ-ଯୁଗରେ ଏହି ଧର୍ମ ସାଧନାର ସ୍ୱାକ୍ଷର ଯେପରି ପ୍ରାଞ୍ଜଳ, ମଧ୍ୟଯୁଗର ପରବର୍ତ୍ତୀ ଆଧୁନିକ ଓଡ଼ିଆ ସାହିତ୍ୟରେ ଏହି ଧର୍ମ-ଚେତନା ଓ ଧର୍ମର ସଗୁଣ ଓ ନିର୍ଗୁଣ ରୂପର ଉପାସନା ସେହିପରି ସ୍ପଷ୍ଟ ।

## ଉପାସନାର ସ୍ୱରୂପ ଓ ଶାସ୍ତ୍ରୀୟ ଭୂମିକା—

ବିଭିନ୍ନ ଦାର୍ଶନିକଗଣ ଉକ୍ତ ସଗୁଣ ନିର୍ଗୁଣ ଅଥବା ସବିକଳ୍ପ ଓ ନିର୍ବିକଳ୍ପ ଉପାସନା ସମ୍ବନ୍ଧରେ ନାନା ମତ ପୋଷଣ କରିଅଛନ୍ତି । ଦ୍ୱୈତ-ବାଦୀମାନଙ୍କ ମତରେ ସଗୁଣ ହେଉଛି ନିତ୍ୟ ଓ ପରମାର୍ଥ । କିନ୍ତୁ ଅଦ୍ୱୈତ-ବାଦୀ ବା ଅଦ୍ୱୈତ ବେଦାନ୍ତ ମତରେ ନିର୍ଗୁଣ, ନିରଞ୍ଜନ, ନିଷ୍କଳ ବା ନିଷ୍କ୍ରିୟ ଉପାସନା ହେଉଛି ନିତ୍ୟ ଓ ପରମାର୍ଥ ।

ଯଥା—"ଦ୍ୱିରୂପଂହି ବ୍ରହ୍ମ ଅବଗମ୍ୟତେ
ନାମ ରୂପ ବିକାର ଭେଦୋପାଧି ବିଶିଷ୍ଟଂ
ତଦ୍ ବିପରୀତଂ ଚ ସର୍ବୋପାଧି ବିବର୍ଜିତଂ ।"
ଶଙ୍କର ଭାଷ୍ୟ ପ୍ରଥମ ପାଦ (ଆନନ୍ଦମୟାଧିକରଣ)

ଅର୍ଥାତ୍ ନିଷ୍କଳ ବ୍ରହ୍ମୋପାସନାରେ ସଗୁଣ ଉପାସନା ଅପରମାର୍ଥ ହେଲେହେଁ ତାହା ସୋପାନୀଭୂତ ଅଟେ । ପରଂବ୍ରହ୍ମଙ୍କର କେତେକ

Digitized by srujanika@gmail.com

ଉପାସନା ଅଭ୍ୟୁଦୟାର୍ଥକ, ଆଉ କେତେକ କ୍ରମମୁକ୍ତି ସମ୍ପାଦକ । ପ୍ରତ୍ୟେକ ଉପାସନା ଗୁଣ ବିଶେଷ ଉପାଧି ଭେଦରେ ଭେଦଯୁକ୍ତ । ବସ୍ତୁତଃ ସେହି ଏକ ପରମାତ୍ମା ସେ କ ଗୁଣବିଶେଷ ମାନଙ୍କରେ ବିଶିଷ୍ଟ ହୋଇ ଉପାସ୍ୟ ହୋଇଥାନ୍ତି ଏବଂ ଯିଏ ଯେଉଁପରି ଗୁଣବିଶିଷ୍ଟ ଉପାସ୍ୟକୁ ଉପାସନା କରେ, ସେ ସେହି ରୂପ ଫଳ ଲାଭ କରେ ।

"ତାଂ ତାଂ ଯଥା ଯଥୋପାସ୍ୟତେ,
ତଦେବ ଭବତି, ଇତି ଶ୍ରୁତିଃ ।"

ଗୀତାରେ ଭଗବାନ ଶ୍ରୀକୃଷ୍ଣ ମଧ୍ୟ ଏହାହିଁ କହିଛନ୍ତି—

ଯଂ ଯଂ ବାପି ସ୍ମରନ୍ ଭାବଂ
ତ୍ୟଜତ୍ୟନ୍ତେ କଳେବରମ୍ ।
ତଂ ତମେବୈତି କୌନ୍ତେୟ
ସଦା ତଦ୍ଭାବ ଭାବିତଃ ।"
ଗୀତା-୮ଅ-୬ ଶ୍ଳୋକ ।

ଛାନ୍ଦୋଗ୍ୟ ଉପନିଷଦରେ ମଧ୍ୟ ଏହାହିଁ ପ୍ରତିପାଦିତ—
"ଯଥା କ୍ରତୁରସ୍ମିନ୍-ଲୋକେ ପୁରୁଷୋ ଭବତି
ତଥେତ ପ୍ରେତ୍ୟ ଭବତି ।"

( ଇହଲୋକରେ ପୁରୁଷ ଯେପରି କର୍ମୀ ହୁଏ, ପରଲୋକରେ ସେ ସେହିପରି କର୍ମଯୁକ୍ତ ହୁଏ ) ।

ଅଦ୍ୱୈତ ମତରେ ଉପାସନା ଅପରମାର୍ଥ ହେଲେହେଁ ତହିଁରୁ ପରମାର୍ଥ ତତ୍ତ୍ୱ ଲାଭ ହୁଏ । ଯେପରି ସ୍ଥୂଳ ବର୍ତ୍ତୁଳ କଠିନୀ (ଖଡ଼ି) ଦ୍ୱାରା ନିତ୍ୟ ଅକ୍ଷରୋପଲବ୍ଧି ହୋଇଥାଏ, ସେହିପରି ନିତ୍ୟ ନିରଞ୍ଜନ ନିର୍ମଳ ଓ ନିରବଦ୍ୟ ଅକ୍ଷର ତତ୍ତ୍ୱ ପାଇଁ ଦାରୁ ମୃଣ୍ମୟ ଶିଳାମୟ ମୂର୍ତ୍ତ୍ୟୁପାସନା ପ୍ରଚଳିତ । ସେହିପରି ଅପରୋକ୍ଷ ଉପାସନାରୁ ପରୋକ୍ଷ ଫଳ ଲବ୍ଧ ହୁଏ, ଯେପରି ପ୍ରତ୍ୟକ୍ଷ ଶାଳଗ୍ରାମରେ ପରୋକ୍ଷ ନାରାୟଣ ବୁଦ୍ଧି ଅବ୍ୟାହତ ରହି ତଦୁଚିତ ଫଳଲାଭ ହୋଇଥାଏ ।

"ଶ୍ରଦ୍ଧାଳୋରେବ ସର୍ବତ୍ର ବୈଦିକେ
ସ୍ୱାଧିକାର ତଃ" [ପଞ୍ଚଦଶୀ ଧ୍ୟାନଦୀପ]—

Digitized by srujanika@gmail.com

ଅର୍ଥାତ୍ ଶ୍ରଦ୍ଧାବାନ୍ ଆସ୍ତିକ ବୁଦ୍ଧିସମ୍ପନ୍ନ ବ୍ୟକ୍ତି ସମସ୍ତ ବୈଦିକ ଉପାସନାର ଅଧିକାରୀ । ଏକବାର ମାତ୍ର ଗୁରୂପଦେଶ ପ୍ରାପ୍ତ ହେଲେ ତାଙ୍କର ପରୋକ୍ଷ ଜ୍ଞାନ ଜାତ ହୁଏ । ତେଣୁ ଶ୍ରଦ୍ଧାଳୁ ବ୍ୟକ୍ତି କାଷ୍ଠ ଶିଳାଦିରେ ବସ୍ତୁର ଭକ୍ତର ନିଦର୍ଶନ ଦେଖିବାକୁ ସମର୍ଥ ହୁଏ । ଏହାହିଁ ସଗୁଣ ଉପାସନାର ସ୍ୱରୂପ ।

ସଗୁଣ ସାକାର ଉପାସନା ପରି ନିର୍ଗୁଣ ନିରାକାର ଉପାସନା ମଧ୍ୟ ଶାସ୍ତ୍ରାଦିରେ ବର୍ଣ୍ଣିତ । କେହି କେହି ଅବାଙ୍ମନସ ଗୋଚର ନିର୍ଗୁଣ ବସ୍ତୁର ଉପାସନ ଅସମ୍ଭବ ବୋଲି ମନେକରନ୍ତି । କିନ୍ତୁ ଏହା ଭ୍ରମାତ୍ମକ ।

ନିର୍ଗୁଣ ବ୍ରହ୍ମତତ୍ତ୍ୱସ୍ୟ ନହ୍ୟୁପାସ୍ତେରସମ୍ଭବଃ
ସଗୁଣବ୍ରହ୍ମଣି ବାତ୍ର ପ୍ରତ୍ୟୟାବୃତ୍ତି ସମ୍ଭବାତ୍ ।"

[ ପଞ୍ଚଦଶୀ, ଧ୍ୟାନଦୀପ, ୫୫ ଶ୍ଳୋକ ]

ଯେପରି ସଗୁଣ ଉପାସନା ପରୋକ୍ଷ ଗୁରୁପଦେଶ ନିବନ୍ଧନ ଶତ୍ରୁ ପ୍ରତ୍ୟୟର ଆବୃତ୍ତିରେ ସମାହିତ, ସେହିପରି ନିର୍ଗୁଣ ଈଶ୍ୱର, ତତ୍ତ୍ୱର ଉପାସନା ମଧ୍ୟ ମାନସ ପ୍ରତ୍ୟୟର ପୁନଃ ପୁନଃ ଆବୃତ୍ତି ସାହାଯ୍ୟରେ ସାଧିତ । ଯଦି ମନୋବଚନାତୀତ ବସ୍ତୁର ଉପାସନା ଅସମ୍ଭବ ବୋଲି ମନେହୁଏ, ତେବେ ସେହିପରି ବସ୍ତୁର ଧ୍ୟାନ ମଧ୍ୟ ସମ୍ଭବପର ନୁହେଁ ।

## ଉପାସନା ଓ ଧ୍ୟାନ—

ରୂପାଦି ଗୁଣାବଲମ୍ବନ ବ୍ୟତିରେକେ ଯେଉଁ ଭାବନା ତାହାହିଁ ଉପାସନା । ଅର୍ଥାତ୍ ରୂପଗୁଣକୁ ଅବଲମ୍ବନ ନ କରି ସାଧକ ହୃଦୟରେ ଯେଉଁ ଭାବ ଜନ୍ମଲାଭ କରେ, ତାହାହିଁ ଉପାସନା ; କିନ୍ତୁ ରୂପ ଓ ଗୁଣାଦିର ଉଲ୍ଲେଖନ ପୂର୍ବକ ଯେଉଁ ଭାବନା ଆତ୍ମଲାଭ କରେ, ତାହାହିଁ ଧ୍ୟାନ ।

ଶ୍ରୀମଦ୍ଭାଗବଦ୍ ଗୀତାର ଦ୍ୱାଦଶ ଅଧ୍ୟାୟରେ ଭଗବାନ ଶ୍ରୀକୃଷ୍ଣ ଭକ୍ତାଗ୍ରଣୀ ଅର୍ଜୁନଙ୍କୁ ଏହି ଉପାସନା ସମ୍ପର୍କରେ ଯେଉଁ ଦ୍ୱିବିଧ ଉପାସନା ଓ ଗୁଣାଦିର ପରିଚୟ ଦେଇଛନ୍ତି ତାହାର ଆଲୋଚନା ଏଠାରେ ଅପ୍ରାସଙ୍ଗିକ ହେବ ନାହିଁ । ସଗୁଣ ଓ ନିର୍ଗୁଣ ଉପାସନା ସମ୍ପର୍କରେ ଉପଦେଶ ଦେବାକୁ ଯାଇଁ ଶ୍ରୀକୃଷ୍ଣ ଦେହୀଙ୍କ ପକ୍ଷରେ ସଗୁଣ ଉପାସନା ଓ

Digitized by srujanika@gmail.com

ଯୋଗୀଙ୍କ ପକ୍ଷରେ ନିର୍ଗୁଣ ଉପାସନା ଯେ ଶ୍ରେୟସ୍କର, ତାହାହିଁ ବ୍ୟକ୍ତ କରିଥିଲେହେଁ ସଗୁଣ ଉପାସନାର ଶ୍ରେଷ୍ଠତ୍ୱ ଉପରେହିଁ ତାଙ୍କର ମତାମତ ପ୍ରତିଷ୍ଠିତ । ତଥାପି ନିମ୍ନୋକ୍ତ ଶ୍ଳୋକରେ ନିର୍ଗୁଣ ଉପାସନା ସମ୍ବନ୍ଧରେ କୁହାଯାଇଛି—

"ଯେ ତ୍ୱକ୍ଷରମନିର୍ଦ୍ଦେଶ୍ୟମବ୍ୟକ୍ତଂ ପର୍ଯ୍ୟୁପାସତେ
ସର୍ବତ୍ରଗମଚିନ୍ତ୍ୟଂଚ କୂଟସ୍ଥମଚଳଂ ଧ୍ରୁବମ୍ ।"

୧୨ଅ. ଶ୍ଳୋକ ୩ ।

ଯେଉଁମାନେ ଜିତେନ୍ଦ୍ରିୟ, ସମଦୃଷ୍ଟିସମ୍ପନ୍ନ ହୋଇ ଅକ୍ଷର, ଅନିର୍ଦ୍ଦେଶ୍ୟ, ଅବ୍ୟକ୍ତ, ଅଚିନ୍ତ୍ୟନୀୟ, କୂଟସ୍ଥ ବ୍ରହ୍ମର ଉପାସନା କରନ୍ତି, ସେମାନେ ମଧ୍ୟ ମୋତେ ପାଇଥାନ୍ତି । ଅକ୍ଷରର ଲକ୍ଷଣ ହେଉଛି ଅନିର୍ଦ୍ଦେଶ୍ୟ—ନିର୍ଦ୍ଦେଶର ଅତୀତ । ଯେ ଅବ୍ୟକ୍ତ ଅର୍ଥାତ୍ ରୂପାଦିବିହୀନ ସେ କୂଟସ୍ଥ । କୂଟସ୍ଥର ଉପାସନାହିଁ ଅବ୍ୟକ୍ତର ଉପାସନା—ଏହି ନିର୍ଗୁଣ ଉପାସନାରେ କେବଳ ଯୋଗୀମାନେ ଅଧିକାରୀ ।

ପ୍ରାଣର ନିରୋଧ ଓ ଚିତ୍ତର ସ୍ଥୈର୍ଯ୍ୟାବସ୍ଥା ନ ଆସିଲେ ନିର୍ଗୁଣ ଉପାସନା ସହଜସାଧ୍ୟ ନୁହେଁ । ତେଣୁ ପ୍ରାଣାୟାମ ଦ୍ୱାରା ପ୍ରାଣର ନିରୋଧ ହେଲେ ମନ ନିରୁଦ୍ଧ ହେବ । ସେତେବେଳେ ଆସିବ ଅପୂର୍ବ ଧ୍ୟାନାବସ୍ଥା । ସେତେବେଳେ ଧ୍ୟାତା ଓ ଧ୍ୟେୟ ଏକ ଓ ଅଦ୍ୱୈତ ।

ଧ୍ୟାତା ଓ ଧ୍ୟେୟ ପୃଥକ୍ ହେଲେ ବା ଦ୍ୱୈତଭାବ ଆସିଲେ, ନିର୍ଗୁଣାବସ୍ଥା ସମ୍ଭବ ନୁହେଁ । ପରିଦୃଶ୍ୟମାନ ବିଶ୍ୱବ୍ରହ୍ମାଣ୍ଡ କିପରି ମନର ଘନୀଭୂତ ଅବସ୍ଥାରୁହିଁ ବିକଶିତ ହେଉଅଛି ଏବଂ କିପରି ଧ୍ୟାନନିଷ୍ଠ ଚିତ୍ତଦ୍ୱାରା ସୂକ୍ଷ୍ମାତ୍ ସୂକ୍ଷ୍ମତର ହୋଇ ସୂକ୍ଷ୍ମତମ ଆତ୍ମାକାରରେ ପର୍ଯ୍ୟବସିତ ହେଉଅଛି—ଏହାର ଉପଲବ୍ଧିରେହିଁ ଅକ୍ଷର ଉପାସନାର ଆଦର୍ଶ ନିହିତ । ସଗୁଣ ଓ ନିର୍ଗୁଣ ପୃଥକ୍ ନୁହେଁ । ସଗୁଣହିଁ ନିର୍ଗୁଣ ଓ ନିର୍ଗୁଣହିଁ ସଗୁଣରେ ପରିଣତ ହେଉଅଛି—ଏକଥା ପୂର୍ବେ ସୂଚିତ । ବିଶୁଦ୍ଧ ଚୈତନ୍ୟ ଅବିଦ୍ୟା ଅଞ୍ଜନରେ ଅନୁରଞ୍ଜିତ ହେଲେହେଁ ତାର ନାମ ରୂପ ଆସେ । ସାଧନ ପ୍ରଭାବରେ ବିକ୍ଷିପ୍ତ ମନ ଯେତେବେଳେ ନାମରୂପ ଭୁଲି ଜ୍ୟୋତିଃ ମାଧ୍ୟରେ ପର୍ଯ୍ୟବସିତ ହୁଏ, ସେତେବେଳେ ସାଧକ ନିର୍ବିକାର ପଥରେ ଧାବିତ

Digitized by srujanika@gmail.com

ହୁଏ । ଯେତେବେଳେ ସେହି ଜ୍ୟୋତି କେବଳ ଗୋଟିଏ ସୂକ୍ଷ୍ମାତିସୂକ୍ଷ୍ମ ବିନ୍ଦୁରେ ବିଲୟପ୍ରାପ୍ତ ହୋଇ ବିନ୍ଦୁରୂପ ହୋଇଯାଏ, ସେତେବେଳେହିଁ "ତଦ୍‌ବିଷ୍ଣୁଃ ପରମ ପଦଂ" ପ୍ରକାଶିତ ହୁଏ ।

ପରେ ତାହା ଚିଦାକାଶରେ ଚିନ୍ମାତ୍ର ଅବସ୍ଥାରେ ଅବସ୍ଥିତ ହୋଇ ଚିତ୍ ସ୍ୱରୂପ ହୋଇଯାଏ । ଏହାହିଁ ପୂର୍ଣ୍ଣ ଅବ୍ୟକ୍ତାବସ୍ଥା, ଏହାହିଁ ନିର୍ଗୁଣ— ଏଥିରେ ଉପାସନା ଓ ବୋଧ । ଏ ଦୁହିଁଙ୍କର ଭେଦ ପ୍ରାୟ ଲୀନ ହୋଇଯାଏ ।

## ଉପାସନା ଓ ବୋଧ—

ଉପାସନା କର୍ତ୍ତାର ଅଧୀନ । କର୍ତ୍ତା ଅର୍ଥାତ୍ ଉପାସକ ନିଜର ଅଭୀଷ୍ଟ ଉପାସ୍ୟକର ଆକାର ନିଜେ କଳ୍ପନା କରିଥାନ୍ତି, କିନ୍ତୁ ବୋଧ ସେପରି ନୁହେଁ । ବୋଧ ହେଉଛି ପ୍ରକୃତ ତତ୍ତ୍ୱଗତ । ତାହା ତତ୍ତ୍ୱର ଅଧୀନ ବସ୍ତୁର ଅଧୀନ ନୁହେଁ । କୁହାଯାଇଛି—

ବସ୍ତୁ ତନ୍ତ୍ରୋ ଭବେତ୍ ବୋଧା
କର୍ତ୍ତୃତନ୍ତ୍ର ମୁପାସନମ୍ ।

[ ପାତଞ୍ଜଳ ଯୋଗସୂତ୍ର ସାଧନ ] ପାଦ, ପୃ ୨୯

ଯୋଗଦ୍ୱାରା ନିର୍ଗୁଣ ବ୍ରହ୍ମୋପାସନା ସୁଲଭ । ଯମ ନିୟମ ପ୍ରଭୃତି ଅଷ୍ଟାଙ୍ଗ ଯୋଗଦ୍ୱାରା ଏହା ଲଭ୍ୟ । ଶେଷରେ ଚିନ୍ମାତ୍ରହିଁ ନିରାକାରଙ୍କ ଉପାସନା । ଉତ୍କଳୀୟ ସାଧକମାନେ ଏହି ନିର୍ଗୁଣ ଉପାସନା ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରିଅଛନ୍ତି । ସାକାର ସଗୁଣ ଉପାସନା ସାହାଯ୍ୟରେ ନିରାକାର ଓ ନିର୍ଗୁଣ ପ୍ରାପ୍ତି ଯେପରି ସମ୍ଭବ, ଦ୍ୱୈତ ଅବଲମ୍ବନରେ ଅଦ୍ୱୈତରେ ପହଞ୍ଚିବା ସେହିପରି ସାଧ୍ୟ ।

ତୈତିରୀୟ ଉପନିଷଦରେ ଏହି ମର୍ମରେ ଉକ୍ତ ଅଛି—

ସର୍ବାଣି ରୂପାଣି ବିଚିତ୍ୟ ଧୀରଃ
ନାମାନି କୃତ୍ୱାଭିବଦନ୍ ଯଦାସ୍ତେ ।

ମନୁଟୀକା, ଦ୍ୱାଦଶ ଅଧ୍ୟାୟ ।

Digitized by srujanika@gmail.com

ଯେ ପର୍ଯ୍ୟନ୍ତ ଭଗବାନଙ୍କ ସର୍ବପ୍ରକାର ରୂପ ଓ ନାମ ଧ୍ୟାନରେ ଅର୍ପିତ ହେଉଥିବ, ସେ ପର୍ଯ୍ୟନ୍ତ ଧୀର ସଗୁଣ ଉପାସନା, ଆଉ ନାମ-ରୂପାଦି ବିଲୟାବସ୍ଥା ପରେ ଧୀର, ନିର୍ଗୁଣ ଉପାସନାର ଅଧିକାରୀ ହେବ । ଏହି ଉପନିଷଦୀୟ ଚିନ୍ତା ତଥା ସାଧନାର ଧାରା ଉତ୍କଳରେ ପ୍ରବାହିତ ହେବାର ପ୍ରକୃଷ୍ଟ ପ୍ରମାଣ ଓଡ଼ିଆ ସାହିତ୍ୟରେ ପରିଦୃଷ୍ଟ ।

ଦ୍ୱୈତ ଅଦ୍ୱୈତ ଓ ଦ୍ୱୈତାଦ୍ୱୈତ ଭକ୍ତିବାଦ ବା ଉପାସନାର ନିଦର୍ଶନ ମଧ୍ୟ ଏହି ଉତ୍କଳର ବିଭିନ୍ନ ବିଷ୍ଣୁ ମନ୍ଦିର ଓ ଶାସ୍ତ୍ରାଦିରେ ପ୍ରକଟିତ । ତାର କାରଣ ଉତ୍କଳ ଯୁଗେ ଯୁଗେ ବହୁ ଧର୍ମାଚାର୍ଯ୍ୟଙ୍କର ବିହାର ସ୍ଥଳୀରୂପେ ସମ୍ମାନ ଲାଭ କରି ଆସିଛି । ବହୁ ଭକ୍ତ, ମନୀଷୀ, ଦାର୍ଶନିକ ଏହି ଜଗନ୍ନାଥଧାମ ବା ପୁରୁଷୋତ୍ତମ କ୍ଷେତ୍ରକୁ ଆସି ନିଜକୁ ପବିତ୍ରୀଭୂତ କରି ଯାଇଅଛନ୍ତି । ତେଣୁ ଧର୍ମ ଓ ଉପାସନା ଜଗତକୁ ଏହି ଧାମର ଦାନ ଅପୂର୍ବ ଓ ଅନବଦ୍ୟ । ବିଭିନ୍ନ ଧର୍ମ-ଦର୍ଶନ ଓ ଭକ୍ତିବାଦର ସ୍ୱାକ୍ଷର ଆଜି ଉତ୍କଳର ପ୍ରାଚୀନ ସାହିତ୍ୟରେ ଉତ୍କୀର୍ଣ୍ଣ । ବ୍ରାହ୍ମଣ୍ୟ ଧର୍ମର ଉତ୍କର୍ଷ ବୌଦ୍ଧ, ଜୈନ ଓ ବୈଷ୍ଣବ ଧର୍ମର ବିକାଶ ଏହି ପବିତ୍ର ଭୂମିରେହିଁ ସଂଗଠିତ । ତେଣୁ ଆଜି ଉତ୍କଳର ସାହିତ୍ୟ, ଉପାସନା ମାର୍ଗ ଏପରିକି ଶିଳ୍ପଭାସ୍କର୍ଯ୍ୟରେ ମଧ୍ୟ ସର୍ବ ଧର୍ମ ସମନ୍ୱୟତାର ପରିଚୟ ମିଳୁଅଛି ।

ଉତ୍କଳର ସାଧକ ତଥା ଭକ୍ତବୃନ୍ଦ ଏକାଧାରରେ ସଗୁଣ ଓ ନିର୍ଗୁଣର ଉପାସକ । ସେମାନଙ୍କ ମଧ୍ୟରୁ ହୁଏତ କେତେକ ନିର୍ଗୁଣ ଉପାସନା ଉପରେ ପ୍ରାଧାନ୍ୟ ଆରୋପ କରି ନିରାକାର ତଥା ନିଷ୍କାମୋ-ପାସନାର ଶ୍ରେଷ୍ଠତ୍ୱ ସ୍ୱୀକାର କରିବାକୁ କୁଣ୍ଠାବୋଧ କରିନାହାନ୍ତି । କିନ୍ତୁ ଅଧିକାଂଶ ସଗୁଣ ଉପାସନା ଅବଲମ୍ବନ ପୂର୍ବକ ସ୍ୱୀୟ ଜୀବନର ମୁକ୍ତି ପାଇଁ ଅପୂର୍ବ ସାଧନା କରିଯାଇ ଅଛନ୍ତି ।

ଓଡ଼ିଶାର ଧର୍ମ-ଇତିହାସ ଅଧ୍ୟୟନ କଲେ ଦେଖାଯାଏ ଯେ ଖ୍ରୀଷ୍ଟୀୟ ୪ର୍ଥ ଶତକରୁ ଅଷ୍ଟାଦଶ ଶତକ ପର୍ଯ୍ୟନ୍ତ ଧର୍ମର ଅଭ୍ୟୁଦୟ ଘଟିଅଛି ଏବଂ ଧାର୍ମିକ ଜୀବନରେ ଏକ ସୁଦୃଢ଼ ପରମ୍ପରା ମଧ୍ୟ ସୃଷ୍ଟି ହୋଇଛି । ଫଳରେ ଷୋଡ଼ଶ ଶତକରେ ଏକ ସ୍ୱତନ୍ତ୍ର ଧର୍ମ ସାହିତ୍ୟର ଉନ୍ମେଷ ପରିଦୃଷ୍ଟ । ପ୍ରୋକ୍ତ ସାହିତ୍ୟର ପ୍ରାଣ ପ୍ରତିଷ୍ଠାତା ହେଉଛନ୍ତି ଉତ୍କଳର ଆଦିକବି ସାରଳା ଓ ସ୍ୱନାମଧନ୍ୟ ପଞ୍ଚସଖା—ବଳରାମ, ଜଗନ୍ନାଥ,

Digitized by srujanika@gmail.com

ଅଚ୍ୟୁତ, ଯଶୋବନ୍ତ ଓ ଶିଶୁ ଅନନ୍ତ । ଅବଶ୍ୟ ଏହାର ଭିତ୍ତିଭୂମି ବୌଦ୍ଧଯୁଗର ବୌଦ୍ଧଗାନ ଓ ଦୋହାରେ ପରିଲକ୍ଷିତ, କିନ୍ତୁ ଉତ୍କଳର ଧର୍ମଜୀବନରେ ପ୍ରୋକ୍ତ ପଞ୍ଚ ବିମ୍ଳଗୀ ସନ୍ତାନଙ୍କର ସୃଷ୍ଟ ସାହିତ୍ୟ ଓ ରଚିତ ଗ୍ରନ୍ଥାଦି ପାଠକଲେ ଏହା ସ୍ପଷ୍ଟ ହେବ ।

ଉଦାହରଣ ସ୍ୱରୂପ ଅଚ୍ୟୁତାନନ୍ଦ ଗୁରୁଭକ୍ତି ଗୀତାରେ ସଗୁଣ ଓ ନିର୍ଗୁଣ ଉପାସନାର ପରିଚୟ ଦେବାକୁ ଯାଇ କହିଛନ୍ତି—

"ଶୁଣ ଆହେ ଗୋପସୁତ ଭକତର କଥା
ସଗୁଣ ନିର୍ଗୁଣ ଦୁଇ ଯେବଣ ବ୍ୟବସ୍ଥା
ଦୁଇ ଯେ ଡେଣାରେ ପକ୍ଷୀ ଉଡ଼ିକରି ଯାଇ
ଦୁଇ ଯେ ଚକ୍ଷୁର ସ୍ନେହ ସଂସାରେ ଖେଳଇ
ଏକ ଯେ ନ ଥିଲେ କଣା ଦୁଇ ଗଲେ ଅନ୍ଧ
ଏଣୁ କରି ନିର୍ଗୁଣ ସଗୁଣ ଏହୁ ହେଜ ।
ଯନ୍ତ୍ର ମନ୍ତ୍ର ତନ୍ତ୍ର ଗ୍ରସ ଏହି ଗୃହଗୁଣ
ସଗୁଣ ଯାହାକୁ ବୋଲେ ଏହୁ କଥା ଶୁଣ
ଶୁଦ୍ଧ ଅବାଡ଼ ଜ୍ୟୋତି ଯେ ଏହୁଟି ସମାଧି
ଏ ଗୃହ ନିର୍ଗୁଣ ବୋଲି ପାରିଲେଟି ସାଧି ।"

ଉତ୍କଳୀୟ ବୈଷ୍ଣବମାନଙ୍କର ସାଧନ ପ୍ରଣାଳୀର ଭକ୍ତିମାର୍ଗରୁ ପ୍ରଥମ ୪ଟିକୁ ସଗୁଣ ଓ ଶେଷ ୪ଟିକୁ ନିର୍ଗୁଣ ବୋଲି ଏମାନେ ନିର୍ଦ୍ଦେଶିତ କରିଅଛନ୍ତି । ଏଥିରେ ଅଚ୍ୟୁତାନନ୍ଦଙ୍କର ସଗୁଣୀୟ ଦୃଷ୍ଟିକୋଣ ଏବଂ ମୌଳିକତା ନିହିତ । ତାଙ୍କ ମତରେ ସଗୁଣ ଓ ନିର୍ଗୁଣ ଗୋଟିଏ ପକ୍ଷୀର ଦୁଇଟି ଡେଣା, ଦେହୀର ଦୁଇଚକ୍ଷୁ ସଦୃଶ ବା ସାଧନ ମାର୍ଗର ଦୁଇଟି ପଥ । ଗୋଟିକର ଅଭାବରେ ଅପରଟି ଅପୂର୍ଣ୍ଣ; ଅସମର୍ଥ, ଚକ୍ଷୁହୀନ— ଏଠାରେ ସେହି ସମନ୍ୱୟବାଦ ହିଁ ପ୍ରକଟିତ । ବ୍ରହ୍ମ ଓ ବ୍ରହ୍ମୋପାସନାର ଅପୂର୍ବ ମିଳନ ପନ୍ଥାର ଆଦର୍ଶ ନିର୍ଦ୍ଦେଶକ ଭାବେ ଏଠାରେ ଦାର୍ଶନିକ ଅଚ୍ୟୁତାନନ୍ଦ ଦଣ୍ଡାୟମାନ ।

ହିନ୍ଦି ସାହିତ୍ୟ ଓ ଧାର୍ମିକ ଜୀବନର ଅନ୍ୟତମ ପଞ୍ଚପୁରୋଧା ସନ୍ଥ କବୀର ମଧ୍ୟ ଏହି ସମନ୍ୱୟବାଦର ପକ୍ଷପାତୀ । ତାଙ୍କ ମତରେ ସଗୁଣ ନିର୍ଗୁଣର ନିତ୍ୟଲୀଳା ତଥା ନୃତ୍ୟ ପ୍ରକୃତ ସାଧକ ଦେଖିପାରେ ।

"ନିର୍‌ଗୁନା ଆଗେ ସର୍‌ଗୁନା ନାଚେ
ବାଜେ ସୋହଙ୍ଗ ତୁର୍" ଅଥବା

Digitized by srujanika@gmail.com

ଆଉ ଏକ ସ୍ଥଳରେ—

"ଜାନସି ନହି କଥସି ଅଯ୍ୟାନା
ହମ ନିର୍ଗୁଣ ତୁମ ସଦ୍‌ଗୁଣ ଜାନା ।"

[କବୀର ଗ୍ରନ୍ଥାବଳୀ । ପୃଷ୍ଠା—୨୦]

ମହାପୁରୁଷ ଅଚ୍ୟୁତାନନ୍ଦ ସ୍ୱରଚିତ ଗୁରୁଭକ୍ତି ଗୀତାରେ କହିଛନ୍ତି—

ଏ ତ ସଗୁଣ ଭକ୍ତିରସ, ସଗୁଣ ନିର୍ଗୁଣ ହିରସ
କୃଷ୍ଣଭଣ୍ଡାରେ ଦୁଇରସ, ଢୋଉଛନ୍ତି ସାଧୁସନ୍ଥ ଦାସ
ନିର୍ଗୁଣ ଏକ ଏକ ଢୋଷେ, ସଦ୍‌ଗୁଣ ସର୍ବ ଜନ ପଶେ
ସଗୁଣ ନିର୍ଗୁଣ ସାଧିବ, ତେବେ ସଂଶୟ ମନୁ ଯିବ
ବେନି ଚକ୍ଷୁ ଥିଲେ ଯେମନ୍ତ, ନିର୍ଗୁଣ ସଦ୍‌ଗୁଣ ହିସତ ।

ଅଚ୍ୟୁତାନନ୍ଦ ନିର୍ଗୁଣ ଓ ସଗୁଣ ଉଭୟର ଉପାସକ ଥିଲେ ବୋଲି ଏଥିରୁ ପ୍ରମାଣିତ ହୁଏ । ସାଧନା କ୍ଷେତ୍ରରେ ପରିପୂର୍ଣ୍ଣତା ଲାଭ କରିବାକୁ ହେଲେ ଉଭୟର ସାଧନା ଯେ ଅପରିହାର୍ଯ୍ୟ ଏଥିରେ ଆଉ ସନ୍ଦେହ ନାହିଁ । ଗୀତାର ଉକ୍ତି ସହ ଅଚ୍ୟୁତାନନ୍ଦଙ୍କ ଉକ୍ତିର ସାମ୍ୟ ଏଠାରେ ଲକ୍ଷଣୀୟ । ତାଙ୍କ ମତରେ ନିର୍ଗୁଣ କ୍ୱଚିତ୍ ଭକ୍ତଙ୍କର ଆଚରଣୀୟ । କାରଣ ତାହା କଷ୍ଟସାଧ୍ୟ—ସଗୁଣରେ ସକଳ ପ୍ରକାର ଭକ୍ତଙ୍କର ଅଧିକାର ସ୍ୱୀକାର୍ଯ୍ୟ । ଭକ୍ତପ୍ରବର ବଳରାମ ଦାସ ମଧ୍ୟ ନିର୍ଗୁଣ ଉପାସନାର ସଙ୍କେତ ସ୍ୱୀୟ ରଚିତ ଛତିଶ ଗୁପ୍ତ ଗୀତାରେ ପ୍ରଦାନ କରିଯାଇଅଛନ୍ତି ।

"ଏକାକ୍ଷର ଦେଖ ପାର୍ଥ ଜୀବଟି ପ୍ରମାଣ
ତାହାପରେ ଅଣାକ୍ଷର ପରମ ନିର୍ଗୁଣ

× × ×

ଏକାକ୍ଷର ଉପରେ ଯେ ସ୍ଥାନ ଅଣାକ୍ଷର
ସେ ଆଦି ଭଜନ ସନ୍ଥ ନାମ ନିରାକାର
ହଂସର ଗୁପତ ମନ୍ତ୍ର ଭଜନଟି ଏହି
ସେ ଯେମନ୍ତ ମନ୍ତ୍ର ତାହା କହୁଛି ବୁଝାଇ ।

Digitized by srujanika@gmail.com

ପ୍ରାଚୀନ ଓଡ଼ିଆ ଧର୍ମ-ସାହିତ୍ୟର ଅନନ୍ୟ ଗ୍ରନ୍ଥ-ସାଧକ ଯଶୋବନ୍ତଙ୍କ ପ୍ରେମଭକ୍ତି ବ୍ରହ୍ମଗୀତାରେ ମଧ୍ୟ ସେହି ନିର୍ଗୁଣ ତତ୍ତ୍ୱ ସ୍ୱରୂପ ସମ୍ବନ୍ଧରେ କବି କହିଛନ୍ତି—

"ଆବର କହିବା ହେ ଶୁଣ
ସେ ରାମ ନାମ ଯେ ନିର୍ଗୁଣ
ଶ୍ରୀରାଧା କୃଷ୍ଣଙ୍କ ଏକାନ୍ତ
କହିବା ଗୁପ୍ତ ହୋଇ ନିତ୍ୟ ।

ଦ୍ୱାରକା ଦାସ 'ପରଚେଗୀତା'ରେ ମଧ୍ୟ ଅନୁରୂପ ମତ ବ୍ୟକ୍ତ କରିଅଛନ୍ତି । ଶ୍ରୀହରି ଅର୍ଜୁନଙ୍କ କଥୋପକଥନରେ ଏହି ଗୂଢ଼ତତ୍ତ୍ୱ ପରିବେଷିତ ହୋଇଅଛି—

"ମୋତେ ଯେ ଜାଣିବ ମୁଁ ଅଣଅକ୍ଷର
ଅରୂପ ବର୍ଣ୍ଣ ନାହିଁ ଯେ ମୋହର
ଅଲେଖ ଅବ୍ୟକତ ମୁଁ ଅଚ୍ୟୁତ
ଅଜନ୍ମ ଅନାଦି ନିର୍ଗୁଣ ତତ୍ତ୍ୱ ।"

ଅଷ୍ଟାଦଶ ଶତାବ୍ଦୀର ସାଧକ ଭକ୍ତକବି ଅଭିରାମ ପରମହଂସ ଭୋଇ ମଧ୍ୟ ସ୍ୱକୀୟ ଗ୍ରନ୍ଥ ସ୍ତୁତିଚିନ୍ତାମଣିରେ ବ୍ରହ୍ମର ଏହି ଦ୍ୱୈତରୂପର ପରିଚୟ ଦେଇ-ଅଛନ୍ତି—

"ରୂପରୁ ଅରୂପ ଅରୂପରୁ ରୂପ
ସର୍ବଘଟେ ବିଜେ ହରି
ଭକତ ଆରତ ବାନା ବହିଅଛି
ଅରକ୍ଷକୁ ହିତକାରୀ ।
ଶ୍ରୀନାମ ବ୍ରହ୍ମରେ ଅଙ୍ଗ ଶଙ୍ଗ ଯୋଗ
ଯେସନ ପୁରୁଷ ସ୍ତ୍ରିରୀ
ଭଣେ ଭୀମ ହୋଇ ପାମର ଅଜ୍ଞାନ
ଗୁଣ ନିର୍ଗୁଣକୁ ଧରି ।"

Digitized by srujanika@gmail.com

ଏହି ଉଦ୍ଧୃତମାନଙ୍କରୁ ପ୍ରମାଣିତ ହୁଏ ଉତ୍କଳର ସାଧକମାନେ ସଗୁଣ ଓ ନିର୍ଗୁଣ ଉଭୟର ଉପାସକ ଥିଲେ ମଧ୍ୟ ନିର୍ଗୁଣହିଁ ସେମାନଙ୍କର ଲକ୍ଷ୍ୟ । ଅବଶ୍ୟ ନିଳାଦ୍ରୀବିହାରୀ ଜଗନ୍ନାଥଙ୍କୁ ସାକାର, ନିରାକାର, ରୂପ, ଅରୂପ, ସଗୁଣ ଓ ନିର୍ଗୁଣ ଭାବରେ ପରିକଳ୍ପନା କରାଯାଇଥିବାରୁ ଉତ୍କଳୀୟ ବୈଷ୍ଣବ ଧର୍ମଗ୍ରନ୍ଥର ରଚୟିତାମାନେ ଏହି ଉଭୟ ଉପାସନାକୁ ଗ୍ରହଣ କରିଅଛନ୍ତି । ଫଳରେ ସାହିତ୍ୟ-ଜଗତରେ ଓ ଉପାସନା କ୍ଷେତ୍ରରେ ଧର୍ମବୋଧର ସୃଷ୍ଟି ହୋଇଅଛି । ଭାରତୀୟ ସାହିତ୍ୟ ଓ ସଂସ୍କୃତିର ଆଲୋଚନାରୁ ପରିଜ୍ଞାତ ହୁଏ ଯେ ଧର୍ମହିଁ ଏ ଦେଶର ସଭ୍ୟତା ଓ ସଂସ୍କୃତିର ମୂଳଭିତ୍ତି । ଭାରତୀୟ ଜୀବନ, ଆତ୍ମର ବ୍ୟବହାର ଏବଂ ସାମାଜିକ ବିଧି-ବିଧାନର ପରିକଳ୍ପନା ଧର୍ମଧାରାର ସମ୍ପର୍କ ବିହୀନତାରେ ଅସମ୍ଭବ । ଏ କ୍ଷେତ୍ରରେ ଉତ୍କଳ ସ୍ୱତନ୍ତ୍ର ସମ୍ମାନ ଦାବିକରେ । ପୁରାଣର ବା 'ଉତ୍କଳଖଣ୍ଡ'ର ଆବିର୍ଭାବ ଯେପରି ଏ ଦେଶର ଧାର୍ମିକ ଗୌରବର ଦ୍ୟୋତକ, ଜଗନ୍ନାଥଙ୍କ ପରି ବିଶ୍ୱବନ୍ଦ୍ୟ ଗଣଦେବତାର ପ୍ରତିଷ୍ଠା ସେହିପରି ଏ ଦେଶର ନୈତିକ ଓ ଆଧ୍ୟାତ୍ମିକ ଉତ୍କର୍ଷର ବ୍ୟଞ୍ଜକ ।

ଯୁଗ ଯୁଗ ଧରି ଶ୍ରୁତି, ସୂତ୍ର ଓ ଗୀତା ଧର୍ମାଗ୍ରହୀମାନଙ୍କର ବିଭିନ୍ନ ବିଭିନ୍ନ ସ୍ତୋତ୍ର ସାହିତ୍ୟ ଓ ଦର୍ଶନ ସାହିତ୍ୟ—ଏ ସମସ୍ତ ଜଗନ୍ନାଥଙ୍କ ସଙ୍ଗେ ଆତ୍ମିକ ସମ୍ପର୍କ ପ୍ରତିଷ୍ଠା ଦ୍ୱାରା ଆତ୍ମୋତ୍କର୍ଷ ବିଧାନ ଲାଗି ଉଦ୍ୟତ ହୋଇଥିବାର ବର୍ତ୍ତମାନ ଐତିହାସିକ ସିଦ୍ଧାନ୍ତରୂପେ ପରିଗଣିତ । ସୁତରାଂ ବେଦଠାରୁ ଆରମ୍ଭ କରି ସଂସ୍କୃତ ଦର୍ଶନ ସାହିତ୍ୟ ମାର୍ଗରେ ଓଡ଼ିଶାର ବିଶିଷ୍ଟ ଧର୍ମନାୟକମାନଙ୍କର ବଳିଷ୍ଠ ଚିନ୍ତା ସାହାଯ୍ୟରେ ଓଡ଼ିଆ ସାହିତ୍ୟର ପରିପୁଷ୍ଟି ବିଧାନ ଏକ ଅଖଣ୍ଡ ଧର୍ମନିଷ୍ଠ ପରମ୍ପରା ସୋପାନ ରୂପେ ପ୍ରତିଭାତ । କେତେବେଳେ ଜଗନ୍ନାଥଙ୍କର ବ୍ରହ୍ମ ସଙ୍ଗେ ଅଭେଦ ତାଦାତ୍ମ୍ୟ, କେତେବେଳେ ବା ଅଧିକାରୀର ଗ୍ରାହିକାଶକ୍ତି ଭେଦରେ ସଗୁଣ ଉପାସନା ଉତ୍କଳୀୟ ଧର୍ମଧାରାର ଭାରତୀୟ ପୃଷ୍ଠଭୂମି ଜଗନ୍ନାଥଙ୍କୁ କେନ୍ଦ୍ରକରି ବିଳମ୍ବିତ ।

Digitized by srujanika@gmail.com

# ଜଗନ୍ନାଥ ମନ୍ଦିର

ମନ୍ଦିରମାଳିନୀ ଉତ୍କଳର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ କେବଳ ଭାରତରେ ନୁହେଁ ସମଗ୍ର ପୃଥିବୀରେ ମଧ୍ୟ ପ୍ରସିଦ୍ଧି ଲାଭ କରିଛି । ମହାଭାରତ ଯୁଗରେ କଳିଙ୍ଗ ବାସ୍ତୁ ବିଦ୍ୟାର ଏକ ପ୍ରକୃଷ୍ଟ କ୍ଷେତ୍ର ରୂପରେ ସମ୍ମାନିତ ହୋଇଥିଲା । ଜନ୍ମେଜୟ ସର୍ପଯଜ୍ଞ କଲାବେଳେ କଳିଙ୍ଗର ବାସ୍ତୁବିଦ୍ୟା ବିଶାରଦଙ୍କୁ ନିମନ୍ତ୍ରିତ କରି ନେଇଥିଲେ । ବାସ୍ତୁ ବିଦ୍ୟା ବିଶାରଦ ରାଜାଙ୍କୁ କହିଥିଲେ ଯେ ଯଦି ଏ ସ୍ଥଳରେ ସର୍ପଯଜ୍ଞ ଅନୁଷ୍ଠିତ ହୁଏ ତାହାହେଲେ ଯଜ୍ଞାନୁଷ୍ଠାନରେ ବିଘ୍ନ ସଂଘଟିତ ହେବ । ରାଜା ତାହାଙ୍କ ନିର୍ଦ୍ଦେଶ ନ ମାନିବାରୁ ସେହିଠାରେହିଁ ଯଜ୍ଞକ୍ରିୟା ଅନୁଷ୍ଠିତ ହେଲା । କହିବା ବାହୁଲ୍ୟ ଯେ ରାଜାଙ୍କର ଉଦ୍ଦେଶ୍ୟ ଚରିତାର୍ଥ ହେଲା ନାହିଁ ଏବଂ ରାଜା ଉକ୍ତ ଅନୁଷ୍ଠାନ ସୁସଂପନ୍ନ କରିବାରେ ବ୍ୟର୍ଥ କାମ ହେଲେ । ସେ ଯାହାହେଉ କଳିଙ୍ଗ ବା ଉତ୍କଳର ସ୍ଥାପତ୍ୟର ଇତିହାସ ଅନୁସନ୍ଧାନ କଲେ ଭକ୍ତିମୂଳକ ସ୍ଥାପତ୍ୟର ପ୍ରଥମ ନିଦର୍ଶନ ଦେଖିବାକୁ ମିଳେ ଉଦୟଗିରି ଓ ଖଣ୍ଡଗିରିରେ । ଏଗୁଡ଼ିକୁ ଗୁହା ମନ୍ଦିର ବୋଲି ଅଭିହିତ କରାଯାଏ । ଏମାନଙ୍କର ସୃଷ୍ଟିକାଳ ଖ୍ରୀଷ୍ଟୀୟ ୨ୟ ଶତାବ୍ଦୀଠାରୁ ଆରମ୍ଭ କରି ପ୍ରଥମ ଶତାବ୍ଦୀ ମଧ୍ୟରେ ନିର୍ଦ୍ଧାରିତ ହୋଇଅଛି । ଏହାପରେ ସର୍ବ ପୁରାତନ ଦେବ ମନ୍ଦିର କେଉଁଠାରେ ପ୍ରଥମ ଉଦ୍ଭବ ହେଲା, ତାହା ଠିକ୍ ଭାବରେ କୁହାଯାଇ ପାରିବ ନାହିଁ । କାରଣ ଉତ୍କଳର ଅତି ପ୍ରାଚୀନ ମନ୍ଦିରମାନ ଧ୍ୱଂସ ମୁଖରେ ପତିତ ହୋଇଛି । ଇତସ୍ତତଃ ସେହି ମନ୍ଦିରର ଅଂଶମାନ ଅଦ୍ୟାପି ଦେଖିବାକୁ ମିଳେ ଏବଂ ସେ ଗୁପ୍ତ ଯୁଗରେ ନିର୍ମିତ ହୋଇଥିଲା ବୋଲି ଜଣାଯାଏ । ଯାଜପୁର ନିକଟସ୍ଥ କଳସପୁରଠାରେ ବିରଜା ଦେବୀଙ୍କର ଆଦ୍ୟପୀଠ ମନ୍ଦିର ଥିଲା । ଏହା ଗୁପ୍ତ ଯୁଗରେ ଅର୍ଥାତ ୪ର୍ଥ ବା ୫ମ ଶତାବ୍ଦୀରେ ନିର୍ମିତ ହୋଇଥିଲା । ସେହି ମନ୍ଦିରର ଧ୍ୱଂସାବଶେଷ ଅଦ୍ୟାପି ସେଠାରେ ବିଦ୍ୟମାନ । ମହେନ୍ଦ୍ରଗିରିର ଶିଖର ଦେଶରେ ଥିବା ସପ୍ତଶିଳାଖଣ୍ଡ ନିର୍ମିତ ଏକ ମନ୍ଦିର ମଧ୍ୟ ଏହି ଗୁପ୍ତ ଯୁଗରେ ନିର୍ମିତ

Digitized by srujanika@gmail.com

ହୋଇଥିଲା ବୋଲି ମନେହୁଏ । ସେହିପରି କୋରାପୁଟ ଜିଲ୍ଲାର ପଦ୍ମପୁର ଗ୍ରାମ ନିକଟରେ ନୀଳକଣ୍ଠେଶ୍ୱର ମନ୍ଦିର ମଧ୍ୟ ଉତ୍କଳୀୟ ସ୍ଥାପତ୍ୟ କଳାର ଆଦ୍ୟ ନିଦର୍ଶନର ବହନ କରିଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ମହେନ୍ଦ୍ରଗିରିସ୍ଥ ମନ୍ଦିରର ଶୈଳୀରେ ଏହା ନିର୍ମିତ । ଗୋଟିଏ ଶିବଲିଙ୍ଗ ଅଦ୍ୟାପି ସେଠାରେ ପୂଜିତ ହେଉଛନ୍ତି । ବିଖ୍ୟାତ ବୌଦ୍ଧ ଦାର୍ଶନିକ ଧର୍ମକୀର୍ତ୍ତିଙ୍କର ନାମ ସେଠାରେ ଉତ୍କୀର୍ଣ୍ଣ ହୋଇଥିବାର ଦେଖାଯାଏ । ଏହି ଧର୍ମକୀର୍ତ୍ତି ପ୍ରସିଦ୍ଧ ପଣ୍ଡିତ କୁମାରିଲଭଟ୍ଟଙ୍କୁ ଯୁକ୍ତିରେ ଓ ବିଦ୍ୟାରେ ପରାସ୍ତ କରିଥିଲେ । ଭୁବନେଶ୍ୱରର ରାମେଶ୍ୱର ନିକଟସ୍ଥ ଯେଉଁ ତିନୋଟି ମନ୍ଦିର ଦେଖାଯାଏ ସେଗୁଡିକ ଖ୍ରୀଷ୍ଟୀୟ ୫ଷ୍ଠ ଶତାବ୍ଦୀରେ ନିର୍ମିତ ହୋଇଥିବାର ପ୍ରମାଣିତ ହୁଏ । ଏଗୁଡ଼ିକ ପ୍ରାୟ ସମସ୍ତ ତ୍ରିରଥ ମନ୍ଦିର । ଏତେବେଳକୁ ପଞ୍ଚରଥ ମନ୍ଦିର ଉତ୍କଳରେ ନିର୍ମିତ ହୋଇନାହିଁ । ଏହି ସବୁ ପ୍ରାଚୀନ-ମନ୍ଦିରଗୁଡ଼ିକ ଗୁପ୍ତ ଶୈଳୀରେ ନିର୍ମିତ । ଏହାର କାରୁକାର୍ଯ୍ୟ ମଧ୍ଯ ଗୁପ୍ତଶୈଳୀ ଦ୍ୱାରା ପ୍ରଭାବିତ । ଏଗୁଡିକର ଶିଖର ଥିଲା, ମୁଖଶାଳା ମଧ୍ଯ ଥିଲା । କିନ୍ତୁ ମୁଖଶାଳାଗୁଡ଼ିକ ମଣ୍ଡପାକୃତି । ଏହି ମଣ୍ଡପାକୃତି ମୁଖଶାଳା ଅଦ୍ୟାପି ପର୍ଶୁରାମେଶ୍ୱର, ବୈତାଳ ଓ ଶିଶିରେଶ୍ୱର ମନ୍ଦିରରେ ବିଦ୍ୟମାନ ରହିଛି । ଉତ୍କଳର ସୋମବଂଶୀ ବା କେଶରୀବଂଶ ରାଜତ୍ୱ ସମୟରେ ଅର୍ଥାତ୍ ପ୍ରାୟ ନବମ ଦଶମ ଶତାବ୍ଦୀ ବେଳକୁ ପଞ୍ଚରଥ ମନ୍ଦିରର ଆବିର୍ଭାବ ଘଟିନାହିଁ । ଏହି ପଞ୍ଚରଥ ଶୈଳୀରେ ଭୁବନେଶ୍ୱରର ସୁବିଖ୍ୟାତ ଲିଙ୍ଗରାଜ ମନ୍ଦିର ମଧ୍ଯ ନିର୍ମିତ । ଏହାପରେ ଗଙ୍ଗରାଜତ୍ୱ କାଳରେ ପଞ୍ଚରଥ ମନ୍ଦିରର ପ୍ରଚଳନ ସଙ୍ଗେ ସପ୍ତରଥ ମନ୍ଦିରର ପ୍ରଚଳନ ମଧ୍ଯ ଘଟିଅଛି । ଭୁବନେଶ୍ୱରର ଯାମନାଶିନୀ, ଚନ୍ଦ୍ରେଶ୍ୱର ଏବଂ ବଳେଶ୍ୱର, ସାରିଦେଉଳ ଇତ୍ୟାଦି ସପ୍ତରଥ ଶୈଳୀରେ ନିର୍ମିତ ।

ପୂର୍ବରୁ କୁହାଯାଇଛି ଯେ ଗଙ୍ଗରାଜତ୍ୱରେ ପଞ୍ଚରଥ ଓ ସପ୍ତରଥ ଉଭୟ ପ୍ରକାର ମନ୍ଦିର ପ୍ରଚଳିତ ଥିଲା । ବିଶ୍ୱବିଶ୍ରୁତ ଜଗନ୍ନାଥ ମନ୍ଦିର କିନ୍ତୁ ପଞ୍ଚରଥ ଶୈଳୀରେ ନିର୍ମିତ ଏବଂ ଏହା ଯେ ଉକ୍ତ ଶୈଳୀରେ ନିର୍ମିତ ମନ୍ଦିରମାନଙ୍କ ମଧ୍ୟରେ ଅତି ଚମତ୍କାର ନିଦର୍ଶନ ଏଥିରେ ଆଉ ସନ୍ଦେହ ନାହିଁ । ଏହାର ପାଗଗୁଡ଼ିକ ହେଉଛି ପଞ୍ଚସଂଖ୍ୟକ । ରାହାପାଗ ୧ କୋଣିକ ବା କୋଣିକ ପାଗ ୨ ଏବଂ ଅନୁରାହା ଭାଗ ୨ — ଏହିପରି ପଞ୍ଚସଂଖ୍ୟକ ହେତୁ ଏହାର ନାମ ପଞ୍ଚରଥ ମନ୍ଦିର । ମନ୍ଦିରର ପ୍ରତ୍ୟେକ ପାର୍ଶ୍ୱରେ ଏହି ପାଞ୍ଚୋଟି

Digitized by srujanika@gmail.com

ଫାଗ ରହିଛି । ଏହା ବ୍ୟତୀତ ଏତେବେଳକୁ ମନ୍ଦିରର ସ୍ଥାପତ୍ୟ କଳାର ପୂର୍ଣ୍ଣ ବିକାଶ ଘଟି ସାରିଥିଲା । ଏବଂ ଏହାର ପ୍ରତ୍ୟେକ ଅଂଶଟିର ନିର୍ଦ୍ଦିଷ୍ଟ ନାମ ମଧ୍ୟ ରହିଥିଲା ।

ମନ୍ଦିରର ଉପର ଦେଶରୁ ଆରମ୍ଭ କରି ପଦଦେଶ ପର୍ଯ୍ୟନ୍ତ ଏହି ଅଂଶଗୁଡ଼ିକର ବିଭିନ୍ନ ନାମ ଥିଲା ଆୟୁଧ, କଳସ, ବେକି, ଖପୁରି, ଗଣ୍ଡି ବନ୍ଧନ, ଜଙ୍ଘା (ଉପର ଏବଂ ତଳ ଜଙ୍ଘା), ପାଦ ପିଷ୍ଟ କଣି ବସନ୍ତ ଇତ୍ୟାଦି । ଏହାଛଡ଼ା ମନ୍ଦିରର ଗଣ୍ଡିଦେଶ ବା ଶିଖର ଦେଶ ବିଭିନ୍ନ ଅଂଶରେ ବିଭକ୍ତ ହୋଇଥିଲା ଏବଂ ଏଗୁଡ଼ିକୁ ଭୂମି କୁହାଯାଉଥିଲା । ମନ୍ଦିରର ଯେଉଁ ଅଂଶରୁ ଶିଖର ଅଂଶ ଆରମ୍ଭ ହେଉଥିଲା, ସେହିଠାରେ ଆଡ଼ୁପରି ସ୍ତର ପକାଇ ମୁଦା ମରାଯାଉଥିଲା । ଏଥିରେ ଗଙ୍ଗରାଜତ୍ୱ ସମୟରେ ଲୁହା ଧାରଣାମାନ ବ୍ୟବହୃତ ହେଉଥିଲା । ଗଙ୍ଗ ରାଜତ୍ୱରେ ନିର୍ମିତ କୋଣାର୍କରେ ଯେଉଁ ଲୁହାଧାରଣା ବ୍ୟବହୃତ ହୋଇଥିଲା ସେହିଗୁଡ଼ିକ ଅଦ୍ୟାପି ସେଠାରେହିଁ ଦେଖିବାକୁ ମିଳେ । ଏହାଛଡ଼ା ଗଙ୍ଗ ସମୟର ମନ୍ଦିରମାନଙ୍କରେ ଯେଉଁ ଅଂଶମାନ ଉପର ଭାଗରେ ଭାଙ୍ଗି ପଡ଼ିବାର ସମ୍ଭାବନା ଥିଲା ସେହି ସେହି ଜାଗାରେ ସେମାନେ ତୋରଣାକୃତି ଖୋଲମାନ ନିର୍ମାଣ କରୁଥିଲେ । ଏଥିରୁ ଗଙ୍ଗଶିଳ୍ପୀମାନଙ୍କର ସ୍ଥାପତ୍ୟ ଜ୍ଞାନର ପରିସର ସହଜରେ ଜଣାପଡ଼େ ।

ପଞ୍ଚରଥ ସପ୍ତରଥ ବ୍ୟତୀତ ଆଉ ପ୍ରକାର ମନ୍ଦିର ମଧ୍ୟ ଉତ୍କଳରେ ଦେଖାଯାଏ । ତାର ନାମ ହେଉଛି ପଞ୍ଚାୟତନ ମନ୍ଦିର । ଭୁବନେଶ୍ୱରସ୍ଥ ଶତ୍ରୁଘ୍ନେଶ୍ୱର ଓ ବ୍ରହ୍ମେଶ୍ୱର ଏହାର ପ୍ରକୃଷ୍ଟ ଉଦାହରଣ । ବୈତାଳ ମନ୍ଦିରର ଶିଳ୍ପୀମାନେ ଏହାକୁ ବୋଧହୁଏ ପଞ୍ଚାୟତନ ମନ୍ଦିର ରୂପରେ ଗଢ଼ିବାକୁ କଳ୍ପନା କରିଥିଲେ; ମାତ୍ର କୌଣସି କାରଣରୁ ତାହା ସମ୍ଭବପର ହୋଇନାହିଁ ।

ଜଗନ୍ନାଥ ମନ୍ଦିରର ଶିଳ୍ପୀମାନଙ୍କୁ ଭୁବନେଶ୍ୱର ଓ ମୁଖଲିଙ୍ଗେଶ୍ୱର ମନ୍ଦିରର ଶିଳ୍ପକଳା ନିଶ୍ଚୟ କେବଳ ପ୍ରେରଣା ନୁହେଁ ଏପରିକି ଶିଳ୍ପାଦର୍ଶ ମଧ୍ୟ ଯୋଗାଇଥିବ ଏଥିରେ ସନ୍ଦେହ ନାହିଁ । କାରଣ ଜଗନ୍ନାଥ ମନ୍ଦିର ନିର୍ମାଣର ବହୁ ପୂର୍ବରୁ ସେଗୁଡ଼ିକ ନିର୍ମିତ ହୋଇ ସାରିଥିଲା । ତେଣୁ ଶିଳ୍ପଗତ ଓ ଭାସ୍କର୍ଯ୍ୟଗତ ସାମ୍ୟ ଉଭୟ ମନ୍ଦିରରେ ପରିଦୃଷ୍ଟ । ତଥାପି ଶିଳ୍ପକଳା ଦୃଷ୍ଟିରୁ ଜଗନ୍ନାଥ ମନ୍ଦିରରେ କେତେକ ନୂତନତା ଓ ବୈଶିଷ୍ଟ୍ୟ

Digitized by srujanika@gmail.com

ରହିଛି ଯାହାକି ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମନ୍ଦିରରେ ପରିଦୃଷ୍ଟ ହୁଏନି । ଜଗନ୍ନାଥ ମନ୍ଦିର ଏକ ସମୁଚ୍ଚ ଭିତ୍ତି ଉପରେ ପ୍ରତିଷ୍ଠିତ । ମନ୍ଦିରସ୍ଥ ଦେବତାଙ୍କ ପାଇଁ ମଧ୍ୟ ଏକ ଉଚ୍ଚ ସିଂହାସନ ରହିଛି । କିନ୍ତୁ ଲିଙ୍ଗରାଜ ମନ୍ଦିର ବା କୋଣାର୍କ ମନ୍ଦିର ସେପରି ଉଚ୍ଚ ଭିତ୍ତି ଉପରେ ପ୍ରତିଷ୍ଠିତ ନୁହେଁ । ଜଗନ୍ନାଥ ମନ୍ଦିରର ପାର୍ଶ୍ୱ ଦେବତାଙ୍କ ପାଇଁ ମଧ୍ୟ କ୍ଷୁଦ୍ର କ୍ଷୁଦ୍ର ଦେଉଳର ପରିକଳ୍ପନା କରାଯାଇଛି । କିନ୍ତୁ ଅନ୍ୟାନ୍ୟ ମନ୍ଦିରରେ ଏପରି ନାହିଁ । ତେବେ କୋଣାର୍କ ଓ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରରେ ଯେପରି ସୂକ୍ଷ୍ମ କାରୁକାର୍ଯ୍ୟର ପରିଚୟ ମିଳେ କଳାର ସେହି ସୂକ୍ଷ୍ମତା ବା ଗୁରୁତା ଜଗନ୍ନାଥ ମନ୍ଦିରରେ ଦୁର୍ଲଭ । ଏ ମନ୍ଦିରରେ ଦୁଇଗୋଟି ବେଢ଼ା ଯଥାକ୍ରମେ ମେଘନାଦ ପ୍ରାଚୀର ଓ କୂର୍ମବେଢ଼ା ଥିବାରୁ ଏହାକୁ ଏକ ଦ୍ୱି ଆବରଣ ମନ୍ଦିର କୁହାଯାଏ । ଏହାର ଚାରିଗୋଟି ଦ୍ୱାର ମଧ୍ୟ ରହିଛି । ଚତୁର୍ଦ୍ୱାର ଓ ଦ୍ୱି ଆବରଣ ବେଷ୍ଟିତ ମନ୍ଦିରଟି ନାନାଦି ବୈଶିଷ୍ଟ୍ୟରେ ଗୌରବାନ୍ୱିତ । ଅନ୍ୟାନ୍ୟ ମନ୍ଦିରର ଦ୍ୱାରର ସଂଖ୍ୟା କେଉଁଠି ହୁଏତ ଦୁଇ କିମ୍ବା ତିନି । କିନ୍ତୁ ଏ ମନ୍ଦିରରେ ଯଥାକ୍ରମେ ପୂର୍ବଦ୍ୱାରରେ ସିଂହ, ପଶ୍ଚିମ ଦ୍ୱାରରେ ବ୍ୟାଘ୍ର, ଉତ୍ତର ଦ୍ୱାରରେ ହସ୍ତୀ ଓ ଦକ୍ଷିଣ ଦ୍ୱାରରେ ଅଶ୍ୱ ଅବସ୍ଥିତ । ଶିଳ୍ପୀମାନେ ଦେବଦେବ ଜଗନ୍ନାଥଙ୍କୁ ଏକ ସମ୍ରାଟ ଓ ମନ୍ଦିରକୁ ତାଙ୍କର ଏକ ପ୍ରାସାଦ ରୂପେ ପରି-କଳ୍ପନା କରିଅଛନ୍ତି । ରାଜକୀୟ ପରିବେଶରେ ସ୍ୱୟଂ ଜଗନ୍ନାଥ ନୀଳାଦ୍ରି ଶିଖରରେ ବିହାର କରୁଅଛନ୍ତି । ସମ୍ରାଟଙ୍କ ନିଜର ବିଶ୍ରାମ ପାଇଁ ପ୍ରାସାଦ-ରୂପୀ ବିମାନ, ବସବାସ ପାଇଁ ଆସ୍ଥାନ ମଣ୍ଡପ, ଚିତ୍ତବିନୋଦନ ପାଇଁ ନାଟ ମନ୍ଦିର ଏବଂ ମନୋହର ସକାଶେ ଭୋଗମଣ୍ଡପର ଆୟୋଜନ କରାଯାଇଛି । ଯଥାର୍ଥରେ କବିକୁଳକଞ୍ଜ ଉପେନ୍ଦ୍ରଭଞ୍ଜ କହିଛନ୍ତି—

ସେ କମ୍ବୁକଟକ ରାଜା ନାମ ଜଗନ୍ନାଥ
ଚାରି ବର୍ଣ୍ଣ ଚଉବର୍ଗ ଦେବାକୁ ସମର୍ଥ

ଚାରିଦ୍ୱାରରେ ଜଗନ୍ନାଥ ଚତୁର୍ବର୍ଗ "ଧର୍ମାର୍ଥ କାମ ମୋକ୍ଷ" ଦାନ କରୁଅଛନ୍ତି ।

ଏହି ଜଗନ୍ନାଥ କ୍ଷେତ୍ରର ନାମ ଶଙ୍ଖକ୍ଷେତ୍ର, ପୁରୁଷୋତ୍ତମ କ୍ଷେତ୍ର ଏବଂ ଶ୍ରୀକ୍ଷେତ୍ର ଅର୍ଥାତ୍ ଶ୍ରେଷ୍ଠ କ୍ଷେତ୍ର । ସମଗ୍ର ଭାରତବର୍ଷରେ ଶ୍ରୀ ଶବ୍ଦ ଆଦ୍ୟରେ ଥାଇ ଅନେକ ଭକ୍ତିପୀଠ ଅଦ୍ୟାପି ବିରାଜିତ । ଶ୍ରୀ ଶୈଳ ଓ

Digitized by srujanika@gmail.com

ଶ୍ରୀକୂର୍ମ ପରି ଶ୍ରୀକ୍ଷେତ୍ର ମଧ୍ୟ କ୍ଷେତ୍ରମାନଙ୍କ ମଧ୍ୟରେ ମହତ୍ତ୍ୱମଣି ସ୍ୱରୂପ ବର୍ଣ୍ଣିତ। ରାଜାମାନଙ୍କ ପ୍ରଦତ୍ତ ତମ୍ବା ପଟା ତଥା ଦାନପତ୍ରରେ ଶ୍ରୀକ୍ଷେତ୍ରକୁ ଶ୍ରୀଧାମ ବୋଲି ଅଭିହିତ କରାଯାଇଛି। ଦକ୍ଷିଣର ଚାଲୁକ୍ୟ ରାଜା ରାଜରାଜ ଯେ କି ୧୦୨୨।୨୩ରେ ସିଂହାସନ ଆରୋହଣ କରିଥିଲେ। ସେ ପୁରୁଷୋତ୍ତମ ଧାମକୁ ଶ୍ରୀଧାମ ବୋଲି କହିଛନ୍ତି। ଉତ୍କଳର ଧର୍ମ ଜୀବନରେ ଯେପରି ବହୁ ମତ ଓ ଦର୍ଶନର ସମନ୍ୱୟ ଘଟିଅଛି ଶିଳ୍ପଭାସ୍କର୍ଯ୍ୟ କ୍ଷେତ୍ରରେ ମଧ୍ୟ ସେହିପରି ସମନ୍ୱୟ ସଂସାଧିତ ହୋଇଅଛି। ବୈଷ୍ଣବ ଶୈବ ଓ ଶାକ୍ତ ଧର୍ମର ନିବନ୍ଧ ଦେବତା ଯଥାକ୍ରମେ ଜଗନ୍ନାଥ ବଳରାମ ଓ ସୁଭଦ୍ରା ଏକପୀଠରେ ବର୍ତ୍ତମାନ ଥିବାରୁ ମନେହୁଏ ଏଠାରେ ହିଁ ଏହି ନିବନ୍ଧ ଧର୍ମମତର ସମନ୍ୱୟ ସାଧିତ ହୋଇଛି। ଭୋଗମଣ୍ଡପର ଗୋଟିଏ ଚିତ୍ରଫଳକରେ ଦୁର୍ଗା ଶିବ ଏବଂ ଜଗନ୍ନାଥ ଉତ୍କୀର୍ଣ୍ଣ ଥିବାରୁ ଏହା ସେହି ସମନ୍ୱୟବାଦର ସାକ୍ଷ୍ୟ ବହନ କରୁଅଛି।

ଏହି ଧାମରେ ଦ୍ୱାଦଶ ମାସରେ ଦ୍ୱାଦଶ ଯାତ୍ରାର ପରିକଳ୍ପନା କରାଯାଉଛି ଏବଂ ଭୋଗମଣ୍ଡପରେ ଉତ୍କୀର୍ଣ୍ଣ ହୋଇଥିବା ବିବିଧ ଚିତ୍ର ଖୋଦିତ ହେବାର ଦେଖିଲେ ମନେହୁଏ ଯେ ପୁରୀର ରାଜାଙ୍କ ସକାଶେ ମଧ୍ୟ ୧୨ଟି କୌତୁକ ଯାତ୍ରାର ବ୍ୟବସ୍ଥା କରାଯାଇଥିଲା। ପୌରାଣିକ ବହୁ ଉପାଖ୍ୟାନ ମଧ୍ୟ ମନ୍ଦିର ଗାତ୍ରରେ ଶିଳ୍ପୀମାନେ ଖୋଦିତ କରି ଯାଇଅଛନ୍ତି। ଚତୁର୍ମୁଖ ଶିବ ଚତୁର୍ମୁଖ ବ୍ରହ୍ମାଙ୍କଠାରୁ ଆରମ୍ଭ କରି କୃଷ୍ଣଲୀଳା ରାମଲୀଳାର ବହୁ ଉପାଦେୟ ଏବଂ କୌତୁକପୂର୍ଣ୍ଣ ତଥ୍ୟ ମଧ୍ୟ ମନ୍ଦିର ଗାତ୍ରରେ ଖୋଦିତ ହୋଇଅଛି। ମୋଟ ଉପରେ ଗୋଟିଏ ଜାତିର ଜୀବନ ଇତିହାସ ରୂପେ ମନ୍ଦିରହିଁ ସେତେବେଳେ ପରିଗଣିତ ହେଉଥିଲା। ଆଲୋଚ୍ୟ ଶ୍ରୀମନ୍ଦିରର ନିର୍ମାତା କିଏ ଏ ସମ୍ବନ୍ଧରେ ବହୁ ବାଦାନୁବାଦ ଅତୀତରେ ହୋଇ ଯାଇଛି। ମାଦଳାପାଞ୍ଜି ଗଙ୍ଗବଂଶାନୁଚରିତ ପ୍ରଭୃତି ଗ୍ରନ୍ଥରେ ଅନଙ୍ଗଭୀମଦେବଙ୍କୁହିଁ ମନ୍ଦିରର ପ୍ରତିଷ୍ଠାତା ବୋଲି କୁହାଯାଇଛି କିନ୍ତୁ ଐତିହାସିକମାନେ ବହୁ ତମ୍ବାପଟା ଦାନପତ୍ର ଖୋଦିତ ଲିପି ସାହାଯ୍ୟରେ ପ୍ରମାଣ କରିଛନ୍ତି ଯେ ଦ୍ୱାଦଶ ଶତାବ୍ଦୀରେହିଁ ଅନନ୍ତ ବର୍ମନ ଚୋଡ଼ଗଙ୍ଗ ବର୍ତ୍ତମାନ ମନ୍ଦିର ନିର୍ମାଣ କରିଅଛନ୍ତି। ଯଦିଓ ଚୋଡ଼ଗଙ୍ଗଙ୍କ ପୂର୍ବରୁ ମନ୍ଦିରର ଅସ୍ତିତ୍ୱ ଥିଲା ଏବଂ ବିଧିବଦ୍ଧ ଭାବରେ ଉପାସନା ମଧ୍ୟ ପ୍ରଚଳିତ ଥିଲା। ସେତେବେଳେ ପୁରୀ ବା

Digitized by srujanika@gmail.com

ପୁରୁଷୋତ୍ତମ ଏପରି ପ୍ରସିଦ୍ଧି ଲାଭ କରିଥିଲା ଯେ ଭାରତର ବହୁ ଅଞ୍ଚଳର ଭକ୍ତ ତଥା ପଣ୍ଡିତ ଓ ରାଜାମାନେ ତୀର୍ଥଯାତ୍ରା ଲକ୍ଷ୍ୟରେ ଏ କ୍ଷେତ୍ରକୁ ଆସି ଏ ଧାମର କୀର୍ତ୍ତି ଓ ପବିତ୍ରତା ସମ୍ବନ୍ଧରେ ଦାନପତ୍ରମାନ ତାଙ୍କ ଦେଶରେ ଦେଇ ଯାଇଅଛନ୍ତି । ସେଗୁଡ଼ିକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ଖ୍ରୀଷ୍ଟୀୟ ୭ମ ଶତାବ୍ଦୀ ବେଳକୁ ମଧ୍ୟ ପୁରୁଷୋତ୍ତମ ଧାମର ମହିମା ସମଗ୍ର ଭାରତରେ ପରିବ୍ୟାପ୍ତ ହୋଇ ସାରିଥିଲା ।

Digitized by srujanika@gmail.com

# ନୃସିଂହନାଥ ମନ୍ଦିର

ଓଡ଼ିଶାର ଇତିହାସ ଆଲୋଚନା କଲେ ଜଣାଯାଏ ଯେ, ପାଣ୍ଡୁବଂଶୀ ରାଜାମାନଙ୍କର ରାଜତ୍ୱ କାଳରେ ସେମାନଙ୍କର ଇଷ୍ଟଦେବତା ରୂପେ ନୃସିଂହ ବା ନରସିଂହ ମୂର୍ତ୍ତି ପୂଜା ପାଉଥିଲେ ଏବଂ ନୃସିଂହ ଉପାସନା ଭାରତରେ ପ୍ରାଚୀନ ଯୁଗରୁ ପ୍ରଚଳିତ ଥିଲେ ସୁଦ୍ଧା ଓଡ଼ିଶାରେ ଉକ୍ତ ପାଣ୍ଡୁବଂଶୀ ରାଜା ମାନଙ୍କ ସମୟରୁ ହିଁ ପ୍ରସ୍ଫୁରିତ ଓ ପ୍ରସାରିତ ହୋଇଅଛି । ନୃସିଂହ ଉପାସନା ସହିତ ପଞ୍ଚୋପାସନା ମଧ୍ୟ ଏ ଦେଶରେ ପ୍ରାଚୀନ କାଳରୁ ପ୍ରଚଳିତ ।

ପୁରୀ, ଭୁବନେଶ୍ୱର, କୋଣାର୍କ ବିରଜା ଓ ମହାବିନାୟକ ମନ୍ଦିରରେ ଯଥାକ୍ରମେ ନାରାୟଣ, ରୁଦ୍ର, ଭାସ୍କର, ଅମ୍ବିକା ଓ ଗଣେଶ ପୂଜା ପାଉଅଛନ୍ତି । ଅବତାରବାଦରେ ନୃସିଂହ, ରାମ ଓ କୃଷ୍ଣ ଏ ତ୍ରିଦେବ ହିଁ ପୂର୍ଣ୍ଣବ୍ରହ୍ମ ବା ପୂର୍ଣ୍ଣାବତାର ବୋଲି ସମ୍ମାନିତ । ତେଣୁ ରାମ ଓ କୃଷ୍ଣଙ୍କ ମନ୍ଦିର ନିର୍ମାଣ ସଙ୍ଗେ ସଙ୍ଗେ ନୃସିଂହ ମନ୍ଦିର ନିର୍ମାଣର ପରିକଳ୍ପନା ଉତ୍କଳର ବାସ୍ତୁ ବିଦ୍ୟା ବିଶାରଦ ଓ ରାଜାମାନଙ୍କୁ ପ୍ରେରଣା ଦେଇଥିବ ଏଥିରେ ସନ୍ଦେହ ନାହିଁ । ବିଶ୍ୱବିଶ୍ରୁତ ଜଗନ୍ନାଥ ମନ୍ଦିରରେ ନୃସିଂହ ମନ୍ଦିର ଆଦ୍ୟ ମନ୍ଦିର ବୋଲି ବିବେଚିତ । ନୃସିଂହ ହିଁ ପୁରୁଷୋତ୍ତମ ।

ପାଣ୍ଡୁବଂଶୀ ରାଜାମାନେ ଯେତେବେଳେ ଦକ୍ଷିଣ କୋଶଳରେ ଶିରପୁରଠାରୁ ରାଜ୍ୟଶାସନ କରୁଥିଲେ ସେତେବେଳେ ସେମାନଙ୍କର କେତୋଟି ଶିଳାଲେଖ ତତ୍ରସ୍ଥ ଲକ୍ଷ୍ମଣେଶ୍ୱର ମନ୍ଦିରରେ ଉତ୍କୀର୍ଣ୍ଣ ହୋଇଅଛି । ସେଥିମଧ୍ୟରୁ ମହାଶିବ ଗୁପ୍ତ ବାଲାର୍ଜ୍ଜୁନଙ୍କ ସମୟରେ ଖୋଦିତ ଗୋଟିଏ ଅଭିଲେଖର ମଙ୍ଗଳାଚରଣ ଶ୍ଳୋକରେ ନୃସିଂହଙ୍କ ସ୍ତୁତି ଦେଖିବାକୁ ମିଳେ ।

ଆଲୋଚ୍ୟ ନୃସିଂହନାଥ ମନ୍ଦିର ପଶ୍ଚିମ ଓଡ଼ିଶାର ଏକ ବିଖ୍ୟାତ ମନ୍ଦିର । ସମ୍ବଲପୁର ଜିଲ୍ଲାର ବରଗଡ଼ ସବଡ଼ିଭିଜନସ୍ଥ ପଦ୍ମପୁର ଠାରୁ

Digitized by srujanika@gmail.com

ପ୍ରାୟ କୋଡ଼ିଏ ମାଇଲ ଦୂରରେ ଦକ୍ଷିଣ ପଶ୍ଚିମକୋଣରେ ଅବସ୍ଥିତ । ବରଗଡ଼ଠାରୁ ନୂଆପଡ଼ା ରାସ୍ତାରେ ଗଲେ ପାଇକମାଳ ଠାରୁ ମାତ୍ର ଅଢ଼େଇ ମାଇଲ ଦୂରରେ ଏହା ଅବସ୍ଥିତ ।

ଗନ୍ଧମାଦନ ପର୍ବତମାଳାର ପଶ୍ଚିମ ପାର୍ଶ୍ୱରେ ଏହା ଏକ ପରମ ତୀର୍ଥ ରୂପେ ପ୍ରତିଷ୍ଠିତ ଓ ଗନ୍ଧମାଦନ ପର୍ବତମାଳାର ନୃସିଂହନାଥ ଶୃଙ୍ଗର ପାଦ ଦେଶରେ ଏ ମନ୍ଦିର ଅବସ୍ଥିତ । ଏକ ପାର୍ଶ୍ୱରେ ନୃସିଂହନାଥ ଶୃଙ୍ଗ ଓ ଅପରପାର୍ଶ୍ୱରେ ହରିଶଙ୍କର ଶୃଙ୍ଗ ବିରାଜିତ ଏବଂ ଏହି ଉଭୟ ଶୃଙ୍ଗର ମଧ୍ୟ ଦେଶରେ ଏକ ବିସ୍ତୀର୍ଣ୍ଣ ସମତଳ ଭୂମି ଅଛି । ଅତି ରମଣୀୟ ପ୍ରାକୃତିକ ଦୃଶ୍ୟରେ ଏହା ପରିପୂର୍ଣ୍ଣ । ଏହାହିଁ ଐତିହାସିକ ପରିମଳ ଗିରି ନାମରେ ପରିଚିତ ।

ଏହିଠାରେ ହିଁ ବିଖ୍ୟାତ ବୌଦ୍ଧ ଦାର୍ଶନିକ ନାଗାର୍ଜୁନ ଖ୍ରୀଷ୍ଟୀୟ ୨ୟ ଶତକରେ ସ୍ୱୀୟ ଆଶ୍ରମ ନିର୍ମାଣ ପୂର୍ବକ ସେଠାରେ ବସବାସ କରୁଥିଲେ । ଅଦ୍ୟାପି ନାଗାର୍ଜୁନଙ୍କ ଆଶ୍ରମର ଧ୍ୱଂସାବଶେଷ ରହିଛି ଏବଂ ନାଗାର୍ଜୁନଙ୍କ ପ୍ରତିମୂର୍ତ୍ତିରୁ କେବଳ ତାଙ୍କର ମସ୍ତକ ଅଂଶଟି ପଡ଼ିରହିଛି । ମାଧ୍ୟମିକ ଦର୍ଶନର ପ୍ରତିଷ୍ଠାତା ନାଗାର୍ଜୁନଙ୍କ ପାଣ୍ଡିତ୍ୟ ଓ ଦାର୍ଶନିକତା ତଥା ପ୍ରତିଷ୍ଠାର ପରିଚୟ ପାଇ ବହୁ ପଣ୍ଡିତ ଭାରତର ବିଭିନ୍ନ ଅଂଚଳରୁ ଏଠାକୁ ଶିକ୍ଷାଲାଭ ଉଦ୍ଦେଶ୍ୟରେ ଆଗମନ କରୁଥିଲେ । ପ୍ରସିଦ୍ଧ ପଣ୍ଡିତ ଆର୍ଯ୍ୟଦେବ ଏହିଠାରୁ ହିଁ ଶିକ୍ଷାଲାଭ କରି ନାଗାର୍ଜୁନଙ୍କ ଶିଷ୍ୟତ୍ୱ ଲାଭ କରିଥିଲେ । କଳିଙ୍ଗର ରାଜଧାନୀ ସିଂହପୁରରେ ଆର୍ଯ୍ୟଦେବ ଜନ୍ମଗ୍ରହଣ କରିଥିଲେ ଏବଂ ସେହିଠାରୁ ସେ ପରିମଳ ବିହାରକୁ ଆସିଥିଲେ । ହୁଏନ୍‌ସାଂଙ୍କ ବିବରଣୀରୁ ଜଣାଯାଏ ଯେ ସିଂହପୁରରୁ ପରିମଳଗିରିର ଦୂରତ୍ୱ ହେଉଛି ୨୫୭ ମାଇଲ ।

ପାଟଣାର ରାଜା ବୈଜଲଦେବ ଏହି ମନ୍ଦିରର ନିର୍ମାତା ଓ ପ୍ରତିଷ୍ଠାତା । ତାଙ୍କର ରାଣୀ ଦୁର୍ଲ୍ଲଭ ଦେବୀ ସେହିପରି ହରିଶଙ୍କର ମନ୍ଦିରର ପ୍ରତିଷ୍ଠାତ୍ରୀ । ଏହି ମନ୍ଦିର ନିକଟରେ ପାପହାରିଣୀ ନାଳ ନାମକ ଅଙ୍ଗ ନଦୀର ଏକ ଶାଖା ପ୍ରବାହିତ । ଏହି ନାଳ ଠିକ୍ ଯେଉଁଠାରେ ପର୍ବତରୁ ଖସିଆସି ସମତଳ ଭୂମିରେ ପଡ଼ୁଛି, ଠିକ୍ ସେହିଠାରେ ହିଁ ମନ୍ଦିରଟି ଅବସ୍ଥିତ । ଏହା ବ୍ୟତୀତ ଅନ୍ୟ କେତୋଟି

Digitized by srujanika@gmail.com

ମନ୍ଦିର ସେଠାରେ ନିର୍ମିତ ହୋଇଥିଲେ ମଧ୍ୟ ନୃସିଂହନାଥ ମନ୍ଦିରହିଁ ସେଠାରେ ଖୁବ୍ ପ୍ରସିଦ୍ଧ । ସେଠାରେ ଥିବା ପ୍ରାୟ ସବୁ ମନ୍ଦିର ମଧ୍ୟପ୍ରଦେଶ ଅନ୍ତର୍ଗତ ପ୍ରଖ୍ୟାତ ଖଜୁରାହୋ ମନ୍ଦିର ଶୈଳୀରେ ନିର୍ମିତ । ସେଥିରୁ ଅନେକ ମନ୍ଦିର ବର୍ତ୍ତମାନ ପତନୋନ୍ମୁଖ ଅବସ୍ଥାରେ ରହିଅଛନ୍ତି । ଏଥିରୁ କେତୋଟି ଆକାରରେ କ୍ଷୁଦ୍ର ହେଲେହେଁ କାରୁକାର୍ଯ୍ୟ ଦିଗରୁ ବିଚାର କଲେ ଏହା ଏକ ଉନ୍ନତ ଅବସ୍ଥାର ପରିଚୟ ଦିଏ । ନୃସିଂହନାଥ ମନ୍ଦିରର ସକଳ ଅଂଶ ଏକ ସମୟରେ ନିର୍ମିତ ହୋଇନାହିଁ । ବିଭିନ୍ନ ସମୟରେ ମନ୍ଦିରର ବିଭିନ୍ନ ଅଂଶ ନିର୍ମିତ ହୋଇଅଛି । ଜେନେରାଲ କାନିଂହାମ୍ (Cunningham) ଙ୍କ ମତରେ ପ୍ରାଚୀନ ମନ୍ଦିରଟି ଭଗ୍ନ ହୋଇଯିବାରୁ ସେଥିରେ ଯେଉଁ ସଂସ୍କାର କରାଯାଇଥିଲା, ତାର ସମୟ ବର୍ତ୍ତମାନ କାଳଠାରୁ (ଅର୍ଥାତ୍ କାନିଂହାମଙ୍କ କାଳ) ପ୍ରାୟ ୨୦୦ ବର୍ଷ ମାତ୍ର ହେବ । ସେଠାରୁ ଅଳ୍ପ କେତେକ ଶତାବ୍ଦୀ ପୂର୍ବେ ପୁରାତନ ମନ୍ଦିରଟି ନିର୍ମିତ ହେବା ସମ୍ଭବ । ଏ ମନ୍ଦିରରେ ଗୋଟିଏ ଶିଳାଲିପି ଅଛି । ସେହି ଅଭିଲେଖ ଅନୁଯାୟୀ ବଇରଙ୍କ ପୁତ୍ର ବୈଜଳଦେବ ୭୭୨ ବା ୭୨୮ ସମ୍ବତ୍‌ରେ ଏହି ମନ୍ଦିରର ପରିଚାଳନା ନିମନ୍ତେ "ଲଇଣିଙ୍ଗା" ନାମକ ଗ୍ରାମ ଦାନ କରିଥିଲେ । ଏହି ସମ୍ବତ୍‌କୁ କେହି କେହି ମୁସଲମାନ ରାଜତ୍ୱର ହିଜିରା ସଙ୍ଗେ ସମାନ କରି ସେଥିର କାଳ ୭୭୨ + ୫୯୦ = ୧୩୬୨ ଖ୍ରୀଷ୍ଟାବ୍ଦ ସଙ୍ଗେ ସମାନ କରିଅଛନ୍ତି । ଆଉ କେହି ୧୪୧୮ ସାଲରେ ଏହି ମନ୍ଦିର ନିର୍ମିତ ହେବା ସମ୍ଭବ ବୋଲି ମତ ପୋଷଣ କରନ୍ତି । କାରଣ ଅଭିଲେଖଟି ଓଡ଼ିଆ ଭାଷାରେ ଲିଖିତ ହୋଇଅଛି । (Sambalpur Gazateer) p 250, କିନ୍ତୁ ଏହି ସମ୍ବତ୍ ସେତେବେଳେ କୁତ୍ରାପି ଓଡିଶାରେ ବ୍ୟବହୃତ ହେବାର ପ୍ରମାଣ ନାହିଁ । ଉପରୋକ୍ତ ନାଳ ଗର୍ଭରେ କେତୋଟି କୁଣ୍ଡ ଅଛି, ସେଥିରେ ସ୍ନାନ କଲେ ସମସ୍ତ ପାପରୁ ମୁକ୍ତ ହୁଅନ୍ତି ବୋଲି ପ୍ରବାଦ ଅଛି । ଏଠାରୁ ଅଳ୍ପ ଦୂରରେ ଗଜଧାରା ନାମକ ଏକ କ୍ଷୁଦ୍ର ପ୍ରପାତ ଦେଖାଯାଏ । ସେଠାରୁ ଆଉ କିଛି ଦୂରରେ ଠିକ୍ ଉପରକୁ ଭୀମଧାରା ନାମରେ ଆଉ ଏକ ପ୍ରପାତ ଅଛି । ଏହାର ଉଚ୍ଚତା ପ୍ରାୟ ୨୦ ଫୁଟ । ସେଠାରୁ ପୁଣି ଆଉ କିଛିବାଟ ଉପରକୁ ଗଲେ ସୀତାକୁଣ୍ଡ ନାମକ ଏକ ଗହ୍ୱର ସଦୃଶ କୁଣ୍ଡ ଦେଖିବାକୁ ମିଳେ । କଥିତଅଛି ଯେ ବନବାସ ସମୟରେ ସୀତା ତାଙ୍କର ପରିଧାନ ଧୌତ କରିବା ପାଇଁ ରାମଚନ୍ଦ୍ର ଅନ୍ୟାନ୍ୟ କୁଣ୍ଡ ଗୋଳିଆ ଥିବାରୁ ଏଠାରେ ଏକ ସ୍ୱତନ୍ତ୍ର କୁଣ୍ଡ ନିର୍ମାଣ କରିଥିଲେ ।

Digitized by srujanika@gmail.com

ଆର୍. ଜି. ଭଣ୍ଡାରକାର କହନ୍ତି ଯେ, ମନ୍ଦିରଟି ପୂର୍ବମୁଖୀ । ଏହାର ସମ୍ମୁଖରେ ନାଳର ଅପର ପାର୍ଶ୍ୱରେ ଗୋଟିଏ ଗରୁଡ଼ସ୍ତମ୍ଭ ଅଛି । ଏଠାରେ ଦୀପାବଳୀ ଦିନ ଦୀପଦାନ ଉତ୍ସବ ଅନୁଷ୍ଠିତ ହୁଏ । ଏହି ମନ୍ଦିରରେ ମାତ୍ର ଦୁଇଟି ଘର ଅଛି । ଜଗମୋହନ ଓ ବିମାନ । ଜଗମୋହନର କାନ୍ଥଗୁଡ଼ିକ ଅଳ୍ପକାଳ ପୂର୍ବେ ନିର୍ମିତ ହୋଇ-ଥିବାର ଜଣାଯାଏ । ମନ୍ଦିରର ଉତ୍ତର ଦିଗରେ ଗଜଲକ୍ଷ୍ମୀ ବିଗ୍ରହ ପରିସ୍ଥାପିତ । ତାର ଉଭୟ ପାର୍ଶ୍ୱରେ ଚାମରଧାରୀ ବିଗ୍ରହ ପୁଣି ଦୁଇଟି ହସ୍ତୀ ପଦ୍ମନାଳ ଧରି ଦଣ୍ଡାୟମାନ । ଓଡ଼ିଶାର ପ୍ରାୟ ସବୁ ମନ୍ଦିର ସମ୍ମୁଖରେ ଠିକ୍ ଦ୍ୱାର ଉପରେ ଏପରି ଗଜଲକ୍ଷ୍ମୀ ବିଗ୍ରହ ଦେଖାଯାନ୍ତି । ସୋମବଂଶୀ ରାଜାମାନଙ୍କର ସେ ଇଷ୍ଟଦେବୀ ଥିବାରୁ ତାଙ୍କ ତାମ୍ରଶାସନରେ **seal** ବା ଲାଂଛନ ରୂପେ ଗଜଲକ୍ଷ୍ମୀ ବ୍ୟବହୃତ ହୋଇ ଅଛନ୍ତି । ମନ୍ଦିରର ପ୍ରଧାନ ଦ୍ୱାର ମୁଗୁନି ପଥରରେ ନିର୍ମିତ ଏବଂ ଉଭୟ ପାଖ ଦ୍ୱାର ବନ୍ଧ ବାଦ୍ୟକାର ଶ୍ରେଣୀ ଏବଂ ପୁଷ୍ପଲତା ମଣ୍ଡିତ ହୋଇ ଶୋଭା ପାଉଅଛି ଏବଂ ଶିବ, ମକରବାହିନୀ ଗଙ୍ଗା ଅନ୍ୟ ପାର୍ଶ୍ୱରେ କୂର୍ମବାହିନୀ ଯମୁନା ବିଗ୍ରହ ପରିସ୍ଥାପିତ ହୋଇଅଛି । ଦ୍ୱାରବନ୍ଧର ନିମ୍ନ ଦେଶରେ ଦ୍ୱାରପାଳ ଏବଂ ଉପରେ ନବଗ୍ରହ ମୂର୍ତ୍ତି । ଏହି ଦ୍ୱାର ନିକଟରେ ଗୋଟିଏ ବୀରପୁରୁଷ, ହସ୍ତରେ କୃପାଣ ଧରି ଦଣ୍ଡାୟମାନ । ବୋଧହୁଏ ମନ୍ଦିର ନିର୍ମାତା ବିଜଳ ଦେବଙ୍କର ଏହି ବିଗ୍ରହଟି । ମନ୍ଦିର ବାହାରପଟରେ ପୁଣି ଦ୍ୱାରବନ୍ଧ ଉପରେ ଗଜଲକ୍ଷ୍ମୀ ବିଗ୍ରହ । ତଳେ ବାୟୁ-ବିଜୟ [ଦ୍ୱାରପାଳ] ବାହାରେ ପୁଣି ତିନୋଟି ଖୋଳରେ ତ୍ରିବିକ୍ରମ ମୂର୍ତ୍ତି [ଚତୁର୍ଭୁଜ] । ଏ ମୂର୍ତ୍ତିର ପାଦଦେଶରେ ଲକ୍ଷ୍ମୀ ବିଗ୍ରହ, ଉପରେ ବାମନ ଓ ନରସିଂହ । ମୂଳ ମନ୍ଦିରରେ ମାର୍ଜାର କେଶରୀ ବିଗ୍ରହ ପ୍ରତିଷ୍ଠା କରାଯାଇଛି । ଏ ବିଗ୍ରହର ମସ୍ତକ ଦେଖିବାକୁ ମାର୍ଜାର ପରି ଏବଂ ଶରୀର ସିଂହ ସଦୃଶ । ଏହାଙ୍କର ମାହାତ୍ମ୍ୟ ଓଡ଼ିଆରେ ଲିଖିତ ହୋଇ ସେଠାରେ ପ୍ରଚଳିତ ହୁଏ । ତଦନୁସାରେ ପ୍ରବାଦଟି ହେଉଛି ଯେ, ଗୋଦାବରୀ କୂଳରେ ଜଣେ ଋଷି ତପସ୍ୟା କରୁଥିଲେ । ତାଙ୍କର ମାଳତୀ ନାମରେ ଗୋଟିଏ କନ୍ୟା ଥିଲା । ତାକୁ ରାବଣ ଅପହରଣ କରି କଳଙ୍କିତ କରିବାରୁ ଋଷି ତାକୁ ପରିତ୍ୟାଗ କରି ଚାଲିଗଲେ । ସେହି ଅନାଥିନୀକୁ ରକ୍ଷା କରିବାକୁ ଗଣେଶଙ୍କ ବାହନ ମୂଷିକ ସେଠାକୁ ଗଲେ । ତାଙ୍କ ସଙ୍ଗେ ରତି କରିବାରୁ ସେ ଗର୍ଭବତୀ ହୋଇ

Digitized by srujanika@gmail.com

ମୂଷିକନାମକ ଦୈତ୍ୟ ଜନ୍ମ କଲେ । ସେହି ଦୈତ୍ୟକୁ ବଧ କରିବା ସକାଶେ ନରସିଂହ ମାର୍ଜାର ରୂପ ଧାରଣ କରିଥିଲେ ।

ଏହି ମନ୍ଦିରର ବିଶେଷତ୍ୱ ହେଉଛି ଏହାର ବିରାଟ ଗଣେଶ ମୂର୍ତ୍ତି । ଏ ମୂର୍ତ୍ତିଟି ସମଗ୍ର ଭାରତବର୍ଷରେ ସର୍ବାପେକ୍ଷା ବୃହତ । ପୁନଶ୍ଚ ବୁଟ୍ ଯୋଡାଧାରୀ ନୃସିଂହନାଥ ଦଣ୍ଡାୟମାନ ଅବସ୍ଥାରେ ରହିଅଛନ୍ତି । ଆଉ ମଧ୍ୟ ଗୋଟିଏ ବୃହତ ଦୁର୍ଗା ମୂର୍ତ୍ତି ମଧ୍ୟ ଏଠାରେ ରହିଛି । ଏହା ଏକ ତାନ୍ତ୍ରିକ ଦୁର୍ଗା ମୂର୍ତ୍ତି ବୋଲି ଜଣାଯାଏ । ମନ୍ଦିରର ଚାରିଆଡ଼େ ପ୍ରଦକ୍ଷିଣ ପଥ ଅଛି । ସମ୍ମୁଖରେ ଝରଣା—ନରସିଂହ ଚତୁର୍ଦ୍ଦଶୀରେ ଏଠାରେ ପ୍ରକାଣ୍ଡ ମେଳା ଅନୁଷ୍ଠିତ ହୁଏ । ତାର ପରଦିନହିଁ ବୁଦ୍ଧ ପୂର୍ଣ୍ଣିମା । ଏହି ଉଭୟ ଦିନରେ ମେଳା ମହୋତ୍ସବରେ ସ୍ଥାନଟି ମୁଖରିତ ହୁଏ । ଛତିଶଗଡ଼ ଓ ପଶ୍ଚିମ ଓଡିଶାର ହଜାର ହଜାର ଯାତ୍ରୀ ସେଠାକୁ ଚତୁର୍ଦ୍ଦଶୀରେ ଯାଆନ୍ତି ଓ ସ୍ନାନ କରନ୍ତି । ଗୋହତ୍ୟା ପାପରୁ ମୁକ୍ତି ପାଇବାକୁ ଏ କ୍ଷେତ୍ର ଏକ ପ୍ରଶସ୍ତ ତୀର୍ଥ ରୂପେ ସମ୍ମାନିତ । କେହି କେହି କହନ୍ତି ଯେ ପୂର୍ବେ ଏହା ଏକ ବୌଦ୍ଧ କ୍ଷେତ୍ର ଥିଲା । ପରେ ବୈଷ୍ଣବ କ୍ଷେତ୍ରରେ ପରିଣତ ହେଲା । ମୂଷିକ ଦୈତ୍ୟ ବୌଦ୍ଧଧର୍ମର ପ୍ରତୀକ ଏବଂ ଜଗିଥିବା ବିରାଡ଼ି ସିଂହ ହେଉଛି ବୈଷ୍ଣବ ଧର୍ମର ପ୍ରତୀକ—ସତେ କି ବୈଷ୍ଣବ ଧର୍ମ ବୌଦ୍ଧ ଧର୍ମକୁ ଏକପ୍ରକାର ଆତ୍ମସାତ୍ କରିବାର ପ୍ରକୃଷ୍ଟ ପ୍ରମାଣ ଏଥିରେ ଉତ୍କୀର୍ଣ୍ଣ ହୋଇଅଛି । ଏହା ଏକ ପଞ୍ଚରଥ ନଗରକୃତି ମନ୍ଦିର । ଏହାର ନିର୍ମାତା ପୂର୍ବୋକ୍ତ ରାଜା ବୈଜଲ ଦେବ । ଏହି ରାଜା "ବୈଜଲ ଚନ୍ଦ୍ରିକା"ର ଲେଖକ । ଏହା ଏକ ଅଳଙ୍କାର ଓ ଓ ବ୍ୟାକରଣ ପୁସ୍ତକ । ସମଗ୍ର ଭାରତରେ ଏପରି ସୁନ୍ଦର ବ୍ୟାକରଣ ତଥା ଅଳଙ୍କାର ଗ୍ରନ୍ଥ ଦୁର୍ଲଭ । ବୈଜଲଦେବ ସ୍ୱୟଂ ଏହାର ଟୀକାକାର । ବୈଜଲ ଚନ୍ଦ୍ରିକାର ଲୋକପ୍ରିୟ ନାମ "ରାମ ବ୍ୟାକରଣ", ବୈଜଲଦେବ ରାମୋପାସକ ବୈଷ୍ଣବ ଥିଲେ ।

Digitized by srujanika@gmail.com

# ଖିଚିଙ୍ଗ ମନ୍ଦିର

ଉତ୍ତର ଓଡ଼ିଶାରେ ଆଉ ଏକ ପ୍ରସିଦ୍ଧ ପୁରାତନ ଓ କାରୁକାର୍ଯ୍ୟ ପୂର୍ଣ୍ଣ ମନ୍ଦିର ଅଛି । ତାର ନାମ ଖିଚିଂ ବା ଖିଚିଙ୍ଗେଶ୍ୱରୀ ମନ୍ଦିର । ମୟୂରଭଂଜ ଜିଲ୍ଲା ସଦର ମହକୁମା ବାରିପଦା ସହରରୁ ପ୍ରାୟ ୯୨ ମାଇଲ ଦୂରରେ ଏହି ମନ୍ଦିର ଅବସ୍ଥିତ । ବାରିପଦାରୁ କରଂଜିଆ ବାଟେ ସେଠାକୁ ଯିବାକୁ ପଡ଼େ ।

ଖିଚିଙ୍ଗେଶ୍ୱରୀ ବା ଖିଚିଂ ମନ୍ଦିରର ନିର୍ମାତା କିଏ ସେ ସମ୍ବନ୍ଧରେ ଐତିହାସିକମାନେ ଗବେଷଣା କରି ଏକ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ଖିଚିଂ ମନ୍ଦିର ନିକଟରେ ଅବଲୋକିତେଶ୍ୱର ମୂର୍ତ୍ତିର ପାଦପୀଠରେ ଏକ ଖୋଦିତ ଲିପିରୁ ଜଣାଯାଏ ଯେ ରାଜଭଂଜଙ୍କ ରାଜତ୍ୱକାଳରେ ଧରଣୀ ବରାହ ଓ ତାଙ୍କ ଧର୍ମପତ୍ନୀ କୀର୍ତ୍ତି ଦେବୀଙ୍କ ମିଳିତ ପ୍ରଚେଷ୍ଟାରେ ଭଗବାନ ଲୋକେଶ୍ୱରଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହୋଇଛନ୍ତି—ରାଜଭଂଜଙ୍କ ରାଜ୍ୟରେ ।

ରାଜ୍ୟେ ଶ୍ରୀ ରାଜଭଂଜସ୍ୟ
ଲୋକେଶ ଭଗବାନ ଅୟମ୍
ଶ୍ରୀ ଧରଣୀ ବରାହେଣ
ସହ କୀର୍ତ୍ତ୍ୟା ବିନିର୍ମିତଃ ।

ତେଣୁ ଏ ମନ୍ଦିର ମଧ୍ୟ ଏହାଙ୍କ ସମୟରେ ନିର୍ମିତ ହେବାର ଅନୁମିତ ହୁଏ । ପୁନଶ୍ଚ ବାମନଘାଟି ତାମ୍ର ଶାସନରୁ ଜଣାଯାଏ ଖିଚିଂ ଏକ ଗଡ଼ରେ ପରିଣତ ହୋଇଥିଲା ଏବଂ ଭଂଜରାଜମାନେ "ଏହିଠାରୁ ହିଁ ରାଜ୍ୟ ଶାସନ କରୁଥିଲେ । ୯୨୪ ଖ୍ରୀଷ୍ଟାବ୍ଦରେ ଏହି ତାମ୍ର ଶାସନଟି ଉତ୍କୀର୍ଣ୍ଣ ହେବାର ଜଣାଯାଏ । "ଖିଚିଙ୍ଗ କୋଟ୍ଟ ନିବାସୀ ହରଚରଣାରାଧନ କ୍ଷପିତ ପାପଃ" ଅର୍ଥାତ୍ ହରଚରଣ ଆରାଧନା ଫଳରେ ଯାହାଙ୍କର ପାପ କ୍ଷୟ

Digitized by srujanika@gmail.com

ହୋଇଛି । ଏଥିରୁ ଅନୁମିତ ହୁଏ ଯେ, ଭଂଜ ରାଜାମାନେ ଆଦ୍ୟନ୍ତ ଶୈବଧର୍ମା-ବଲମ୍ବୀ ଥିଲେ ଏବଂ ଖିଚିଙ୍ଗ କୋଟରେ ବସବାସ କରୁଥିଲେ ଏବଂ ମନ୍ଦିର ୯୨୪ରେ ନିର୍ମିତ ହୋଇଥିଲା । ଖିଚିଙ୍ଗରୁ ୫ ମାଇଲ ଦୂରରେ ବିହାର ପ୍ରଦେଶସ୍ଥ ବେଣୁ ସାଗର ଅବସ୍ଥିତ । ଏଠାରେ ମଧ୍ୟ ବହୁ ଖିଚିଙ୍ଗର ସମସାମୟିକ ପ୍ରାଚୀନ ଅବଶେଷ ମିଳୁଅଛି ।

ତେଣୁ ଖିଚିଙ୍ଗ ଓ ବେଣୁ ସାଗର ଅଂଚଳଟି ଏକ ସମୟରେ ଏକ ବିରାଟ ସହର ରୂପେ ପରିଣତ ହୋଇଥିଲା ।

ସେ ଯାହାହେଉ ଖିଚିଙ୍ଗ ମନ୍ଦିରର କାରୁକାର୍ଯ୍ୟ, ମନ୍ଦିରର ସ୍ଥାପତ୍ୟ, ମନ୍ଦିରର ଗଠନ ନୈପୁଣ୍ୟ ସବୁ ଦିଗରୁ ବିଚାର କରି ପ୍ରତ୍ନତତ୍ତ୍ୱବିତ୍‌ମାନେ କହିଛନ୍ତି ଯେ, ଏହା ଭୁବନେଶ୍ୱରସ୍ଥ ବ୍ରହ୍ମେଶ୍ୱର ମନ୍ଦିରର ଢାଂଚରେ ନିର୍ମିତ । ଅବଶ୍ୟ ଅଧୁନା ସେହି ମୂଳ ମନ୍ଦିରଟି ନାହିଁ—ମୂଳ ମନ୍ଦିରର ଭଗ୍ନାବଶେଷରେ ବର୍ତ୍ତମାନ ଖିଚିଙ୍ଗ ମନ୍ଦିର ପୁନଃନିର୍ମିତ ହୋଇଅଛି । ମହାରାଜା ପୂର୍ଣ୍ଣଚନ୍ଦ୍ର ଭଂଜ ବହୁ ଅର୍ଥବ୍ୟୟରେ ଏ ମନ୍ଦିରର ପୁନରୁଦ୍ଧାର କରିଛନ୍ତି ।

ଇତିହାସରୁ ଜଣାଯାଏ ଯେ, ଫିରୋଜ ସାହା ତୋଗଲକ ୧୩୬୧ରେ ଏ ମନ୍ଦିର ନଷ୍ଟ କରି ଦେଇଥିଲା ।

ମନ୍ଦିରର ଆଦ୍ୟ ଦେବୀ ରୂପେ ପ୍ରାଚୀନ କାଳର ଖିଚିଙ୍ଗେଶ୍ୱରୀ ନାହାନ୍ତି । ସେ ବର୍ତ୍ତମାନ ମୟୂରଭଂଜ ରାଜାଙ୍କ ପ୍ରାସାଦରେ ପୂଜିତା; ମାତ୍ର ଚାମୁଣ୍ଡା ମୂର୍ତ୍ତି ଏ ମନ୍ଦିରରେ ଅଭିଷିକ୍ତ ହୋଇଥିବାରୁ ସେହି ଚାମୁଣ୍ଡାହିଁ ବର୍ତ୍ତମାନ ଖିଚିଙ୍ଗେଶ୍ୱରୀ ନାମରେ ପରିଚିତା ଓ ପୂଜିତା ହେଉଛନ୍ତି ।

ମନ୍ଦିରର ବିଶେଷତ୍ୱ ହେଉଛି ଏହାର ମୁଖଶାଳା ନାହିଁ; କିଂତୁ ଶିଖର ଅଛି । ବାଙ୍କୁଡ଼ା ଓ ତତ୍ ସମୀପବର୍ତ୍ତୀ ସ୍ଥାନରେ ଯେତେ ଯେତେ ମନ୍ଦିର ଅଛି, ସେଗୁଡ଼ିକର ପ୍ରାୟ ମୁଖଶାଳା ନାହିଁ । କେବଳ ଶିଖର ଅଛି ।

ଫ୍ରାନ୍ସର ପ୍ରତ୍ନତତ୍ତ୍ୱବିତ୍ ରେନେଗ୍ରାସେ ଏହାକୁ ମୟୂରଭଂଜସ୍ଥ ଏକ ସ୍ୱତନ୍ତ୍ର କଳା କୀର୍ତ୍ତି ବୋଲି କହିଛନ୍ତି । ପ୍ରସିଦ୍ଧ ଐତିହାସିକ ଜେନେରାଲ କ୍ୟାନିଂହାମ୍ ଏହି ଖିଚିଙ୍ଗ ଅଂଚଳକୁ 'କର୍ଣ୍ଣ ସୁବର୍ଣ୍ଣ' ବୋଲି ନାମିତ କରିଛନ୍ତି । ଖିଚିଙ୍ଗ ହିଁ ଭଂଜ ରାଜାମାନଙ୍କର ପ୍ରଥମ ରାଜଧାନୀ ଥିଲା ।

ଖିଚିଙ୍ଗର ଚାମୁଣ୍ଡା ମନ୍ଦିରଟି ରେଖମନ୍ଦିରର ସକଳ ପ୍ରକାର ବୈଶିଷ୍ଟ୍ୟରେ ପରିପୂର୍ଣ୍ଣ । ପ୍ରଧାନ ମନ୍ଦିରଟି ପଞ୍ଚରଥ ମନ୍ଦିର । କିଂତୁ ମହାଦେବ ମନ୍ଦିରଟି ତ୍ରିରଥ ।

Digitized by srujanika@gmail.com

ମୂଳ ମନ୍ଦିରର ଦେବୀ ଚାମୁଣ୍ଡା ଶବ ଉପରେ ଉପବିଷ୍ଟା କଙ୍କାଳସାର ମୁଣ୍ଡମାଳାଶୋଭିତା ଲୋଲଜିହ୍ୱା ବିକଟାଳ ମୂର୍ତ୍ତି । ମନ୍ଦିରର ପାର୍ଶ୍ୱଦେବତା ରୂପେ ଶୋଭା ପାଉଛନ୍ତି ଗଣେଶ, କାର୍ତ୍ତିକେୟ ଓ ଦୁର୍ଗା । ମନ୍ଦିର ଗାତ୍ରରେ ଖୋଦିତ କାରୁକାର୍ଯ୍ୟପୂର୍ଣ୍ଣ ବହୁ ମୂର୍ତ୍ତି ରହିଛି । ସେଥିରୁ ମହିଷମର୍ଦ୍ଦିନୀ ଦୁର୍ଗା, ଚାମୁଣ୍ଡା, ଗଣେଶ, କାର୍ତ୍ତିକେୟ, ଭୈରବ, ନଟରାଜ ଗଣେଶ, ନଟରାଜ ଶିବ, ଦ୍ୱିବାହୁ ଓ ବୁଟଜୋତା ପରିହିତ ପଦ୍ମପୁଷ୍ପଧାରୀ ସୂର୍ଯ୍ୟ ମୂର୍ତ୍ତି, ଶଙ୍ଖଚକ୍ରଧାରୀ ବାସୁଦେବ ମୂର୍ତ୍ତି, ନକୁଳଶ, ହରପାର୍ବତୀ, ଧ୍ୟାନୀବୁଦ୍ଧ, ଅବଲୋକିତେଶ୍ୱର, ନାଗ ନାଗିଣୀ, ଅଳସ କନ୍ୟା ଖୋଳମାନଙ୍କରେ ଓ ମନ୍ଦିର ଗାତ୍ରରେ ଶୋଭା ପାଉଛନ୍ତି । ମନ୍ଦିରର ଉଚ୍ଚତା ପ୍ରାୟ ୭୩ ଫୁଟ ହେବ । ଖିଚିଙ୍ଗରେ ମଧ୍ୟ ଆଉ ଦୁଇଟି କ୍ଷୁଦ୍ର ମନ୍ଦିର ଅଛି । ତାହା ଶିବ ମନ୍ଦିର । ସେଥିରୁ ଗୋଟିଏ ନୀଳକଣ୍ଠେଶ୍ୱର ନାମରେ ଅଭିହିତ । ଶିବରାତ୍ରିରେ ଏଠାରେ ପ୍ରକାଣ୍ଡ ମେଳା ଅନୁଷ୍ଠିତ ହୁଏ । ଏଥିରୁ ଅନୁମିତ ହୁଏ ଯେ, ଭଞ୍ଜରାଜାମାନେ ଆଦ୍ୟରୁ ଶୈବୋପାସକ ଥିଲେ ମଧ୍ୟରେ ଶାକ୍ତ ଧର୍ମରେ ଦୀକ୍ଷିତ ହୋଇଥିଲେ । ଖିଚିଙ୍ଗ ମନ୍ଦିର ନିକଟରେ ଏକ ସଂଗ୍ରହାଳୟ ଥିଲା । ମହାସ୍ ସହସ୍ ପୁରୀ କୁଷାଣ ମୁଦ୍ରା ଏଠାରେ ଆବିଷ୍କୃତ ହୋଇଅଛି—ଏ ମନ୍ଦିରର ପୂଜକମାନେ ବ୍ରାହ୍ମଣେତର ବିଖ୍ୟାତ ଐତିହାସିକ ଓ ପ୍ରତ୍ନତତ୍ତ୍ୱବିଦ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ବଂଶଧର । ମୟୂରଭଞ୍ଜ ରାଜାମାନେ କେବଳ ସାହିତ୍ୟାନୁରାଗୀ ନ ଥିଲେ, ପରନ୍ତୁ ସେମାନେ ଇତିହାସ ପ୍ରତ୍ନତତ୍ତ୍ୱାନୁରାଗୀ ମଧ୍ୟ ଥିଲେ । ରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କ ପ୍ରଚେଷ୍ଟାରେ ରାୟବାହାଦୂର ରମାପ୍ରସାଦ ଚନ୍ଦ ୧୯୨୩ରେ ପ୍ରଥମବାର ମୟୂରଭଞ୍ଜ ଜିଲ୍ଲାର ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନ କାର୍ଯ୍ୟ ଆରମ୍ଭ କରିଥିଲେ । ଏହାହିଁ ସମଗ୍ର ଓଡ଼ିଶାରେ ସର୍ବପ୍ରଥମ ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନ ରିପୋର୍ଟ । ଏ କାର୍ଯ୍ୟ ଶ୍ରୀରାମଚନ୍ଦ୍ର ଭଞ୍ଜ ୧୯୦୬ରେ ପ୍ରଥମ ଆରମ୍ଭ କରିଥିଲେ ଏବଂ ତାଙ୍କ ପୁତ୍ର ପୂର୍ଣ୍ଣଚନ୍ଦ୍ର ଭଞ୍ଜ ୧୯୨୩ରେ ଖୋଦନ କ୍ରିୟା ଆରମ୍ଭ କରିଥିଲେ ।

Digitized by srujanika@gmail.com

# ଆଗମର ସ୍ୱରୂପ

ଆଗମ—

ଆଗତଂ ଶିବବକ୍ତ୍ରେଭ୍ୟୋ ଗତଂ ଚ
ଗିରିଜାଶ୍ରୁତୌ,
ମତଂ ଚ ବାସୁଦେବସ୍ୟ ତସ୍ମାଦାଗମ
ଉଚ୍ୟତେ ।" । ଇତି ।

ଅର୍ଥାତ୍ ଭଗବାନଙ୍କର ଅଭିମତ ବିଷୟ ଶିବଙ୍କର ପଞ୍ଚମୁଖରୁ ନିର୍ଗତ ହୋଇ ପାର୍ବତୀଙ୍କର କର୍ଣ୍ଣକୁହରରେ ପ୍ରବେଶ କରିଥିବାରୁ ତାହାକୁ ଆଗମ କହନ୍ତି । ଏହି ଆଗମ ତ୍ରିଧା ବିଭକ୍ତ—ଆଗମ, ତନ୍ତ୍ର ଓ ଯାମଳ । ତନ୍ମଧ୍ୟରେ—

"ସୃଷ୍ଟିଶ୍ଚ ପ୍ରଳୟଶ୍ଚୈବ, ଦେବତାନାଂ ତଥାର୍ଚ୍ଚନମ୍
ସାଧନଂ ଚୈବ ସର୍ବେଷାଂ ପୁରଶ୍ଚରଣମେବ ଚ
ଷଟ୍‌କର୍ମ ସାଧନଂ ଚୈବ ଧ୍ୟାନଯୋଗଶ୍ଚତୁର୍ବିଧଃ ।
ସପ୍ତଭିର୍ଲକ୍ଷଣୈର୍ୟୁକ୍ତଂ ତ୍ୱାଗମଂ ତଦ୍‌ବିଦୋ ବିଦୁଃ । ଇତି ।

ଅର୍ଥାତ୍ ସୃଷ୍ଟି ଓ ପ୍ରଳୟ ବର୍ଣ୍ଣନ ଦେବତାମାନଙ୍କର ପୂଜା । ସମସ୍ତ ମନ୍ତ୍ରର ସାଧନ ପ୍ରଣାଳୀ ଓ ପୁରଶ୍ଚରଣ, ଶାନ୍ତି, ବଶୀକରଣ, ସ୍ତମ୍ଭନ, ବିଦ୍ୱେଷ, ଉଚ୍ଚାଟନ ଓ ମାରଣ ଏହି ଛଅଟି କର୍ମର ସାଧନ ପ୍ରଣାଳୀ ଓ ଚତୁର୍ବିଧ ପ୍ରକାର ଧ୍ୟାନଯୋଗ—ଏହି ସପ୍ତବିଧ ଲକ୍ଷଣଯୁକ୍ତ ଶାସ୍ତ୍ରକୁ ଆଗମ କୁହାଯାଏ । ପୁନଶ୍ଚ—

"ସୃଷ୍ଟିର୍ଲୟୋ ମନ୍ତ୍ରସୃଷ୍ଟିର୍ଦେବ ସଂସ୍ଥାନ ମେବ ଚ
ଭୂତାଦିସାଧନଂ ଚୈବ ତୀର୍ଥାଦି ବର୍ଣ୍ଣନଂ ତଥା ।
ବର୍ଣ୍ଣାଶ୍ରମବିଧିଶ୍ଚୈବ ବିପ୍ରସଂସ୍ଥାଦିକଂ ତଥା
ନବଭିର୍ଲକ୍ଷଣୈର୍ୟୁକ୍ତଂ ତନ୍ତ୍ର ମିତ୍ୟଭିଧୀୟତେ ।" । ଇତି ।

ଅର୍ଥାତ୍ ସୃଷ୍ଟି ଓ ପ୍ରଳୟ, ମନ୍ତ୍ରମାନଙ୍କର ଆକାର ସନ୍ନିବେଶ ବା ସମ୍ୟକ୍ ସ୍ଥିତି, ଭୂତ ପ୍ରେତାଦିର ସାଧନ, ତୀର୍ଥ ଆଶ୍ରମାଦିର ବର୍ଣ୍ଣନ, ବ୍ରାହ୍ମଣାଦି ବର୍ଣ୍ଣ ଚତୁଷ୍ଟୟ ଓ ବ୍ରହ୍ମଚର୍ଯ୍ୟାଦି ଆଶ୍ରମ ଚତୁଷ୍ଟୟର ବିଧାନ, ବ୍ରାହ୍ମଣମାନଙ୍କର

Digitized by srujanika@gmail.com

ଆକାର ସନ୍ନିବେଶ ବା ସମ୍ୟକ୍ ସ୍ଥିତି, ଏହି ନବବିଧ ଲକ୍ଷଣ ଦ୍ୱାରା ଯେଉଁ ଶାସ୍ତ୍ର ଯୁକ୍ତ ତାହା ତନ୍ତ୍ର ନାମରେ ଅଭିହିତ, ଏବଂ :

ସୃଷ୍ଟିତତ୍ତ୍ୱଂ ଜ୍ୟୋତିଷଂ ଚ ନିତ୍ୟକୃତ୍ୟଂକ୍ରମ ସ୍ତଥା
ସୂତ୍ରଂଚ ବର୍ଣ୍ଣଭେଦଶ୍ଚ ଜାତିଭେଦସ୍ତଥୈବ ଚ ।
ଯୁଗଧର୍ମଶ୍ଚ ଦେବେଶି ଭୂମ୍ନାଦ୍ୟୈର୍ଲକ୍ଷଣୈର୍ଯୁତମ୍
ଯାମଳଂ ତଦ୍‌ବିଜାନୀୟାଦିତି ମେଽଭିମତଂ ପ୍ରିୟେ ।

ଅର୍ଥାତ୍ ସୃଷ୍ଟିତତ୍ତ୍ୱ, ଜ୍ୟୋତିଷଶାସ୍ତ୍ର, ନିତ୍ୟକର୍ମ ଓ ତାହାର କ୍ରମ, ସୂତ୍ରାକାର ଶାସ୍ତ୍ରଭେଦ, ଆଦ୍ୟାଦି ବର୍ଣ୍ଣମାନଙ୍କର ଭେଦ ଓ ବ୍ରାହ୍ମଣାଦି ଜାତିର ଭେଦ ଓ ଧର୍ମଯୁଗ—ଏହି ଅଷ୍ଟବିଧ ଲକ୍ଷଣବିଧ ଯେ ଶାସ୍ତ୍ର ତାହା ଯାମଳ ନାମରେ କଥିତ—ଏହାହିଁ ଆମର ଅଭିମତ । ଆଗମର ସଂକ୍ଷିପ୍ତ ଇତିହାସ—କଳିଯୁଗରେ ବ୍ରାହ୍ମଣାଦି ବର୍ଣ୍ଣ ଆଚରଣଶୂନ୍ୟ ହେବେ । ବେଦୋକ୍ତ କର୍ମଦ୍ୱାରା ଶୁଦ୍ଧିଲାଭ କରିପାରିବେ ନାହିଁ—ପୁରାଣ, ସଂହିତା ଓ ସ୍ମୃତି ସମୂହରେ ସେମାନଙ୍କର ଇଷ୍ଟସିଦ୍ଧି ହେବନାହିଁ, ଏହା ଭାବି ଜଗତ୍‌ପିତା ସଦାଶିବ ଆଲୋଚ୍ୟ ଶାସ୍ତ୍ର ପ୍ରଣୟନ କରିଥିଲେ । ଶିବ ଓ ଶକ୍ତିଙ୍କର ପ୍ରାଧାନ୍ୟ ଓ ମହତ୍ତ୍ୱ କୀର୍ତ୍ତନହିଁ ଏହାର ଉଦ୍ଦେଶ୍ୟ । ତେଣୁ ଆଗମ ମାତ୍ରେହିଁ ଶୈବପର । ପାର୍ବତୀଙ୍କର ପ୍ରଶ୍ନରେ ଶିବଙ୍କର ଉତ୍ତରରେ ହିଁ ଏହା ବିବୃତ । ସତ୍ୟାଦି ଯୁଗରେ ଯେଉଁ ଯେଉଁ ମନ୍ତ୍ର ସବୁ ଫଳପ୍ରଦ ହେଉଥିଲେ ସେମାନେ କଳିଯୁଗରେ ମୃତପ୍ରାୟ ନିଷ୍ଫଳ । ତନ୍ତ୍ରୋକ୍ତ ମନ୍ତ୍ର ଭିନ୍ନ ଅନ୍ୟ ମନ୍ତ୍ରଦ୍ୱାରା କର୍ମାନୁଷ୍ଠାନ କଳି-ଯୁଗରେ ଫଳପ୍ରଦ ହେଉ ନ ଥିବାରୁ ତନ୍ତ୍ର ନିର୍ଦ୍ଦିଷ୍ଟ ପଥହିଁ ସୁଖ ଓ ମୋକ୍ଷର ହେତୁ ବୋଲି ନିର୍ଦ୍ଦେଶ କରାଯାଇଅଛି । ଫଳତଃ ଶ୍ରୁତି, ସ୍ମୃତି ଓ ପୁରାଣାଦିରେ ଜୀବର ଦୁଃଖ ନିବୃତ୍ତି ଉପାୟ ପରମ୍ପରା ଯେପରି ଭାବରେ ନିର୍ଦ୍ଦିଷ୍ଟ ହୋଇଅଛି, ତନ୍ତ୍ରମାନଙ୍କରେ ମଧ୍ୟ ପ୍ରକାର ଭେଦରେ ତାହାର ଆଲୋଚନା ଦେଖିବାକୁ ମିଳେ ।

କୌଣସି ପୁରାଣ ଆଲୋଚନା କଲେ ଦେଖାଯାଏ ଯେ, ସେହି ପୁରାଣର ପ୍ରାଧାନ୍ୟ ସେଥିରେ ସୂଚିତ ହୋଇଅଛି ; ଠିକ୍ ସେହିପରି ତନ୍ତ୍ର ସମ୍ବନ୍ଧରେ ସେହି ଏକାଭାବ ପରିଦୃଷ୍ଟ; ଯଥା—

ଦେବୀନାଂ ଚ ଯଥା ଦୁର୍ଗା
ବର୍ଣ୍ଣାନାଂ ବ୍ରାହ୍ମଣୋ ଯଥା
ତଥା ସକଳ ଶାସ୍ତ୍ରାଣାଂ
ତନ୍ତ୍ରଶାସ୍ତ୍ର ମନୁତ୍ତମମ୍ । ଇତି ।

Digitized by srujanika@gmail.com

ଶକ୍ତି ଉପାସନାହିଁ ତନ୍ତ୍ରର ମୂଳଲକ୍ଷ୍ୟ । ପୁରାଣ ଓ ଉପପୁରାଣାଦିରେ ଯାହାଙ୍କୁ ଭଗବାନ, ନାରାୟଣ, ବିଷ୍ଣୁ, ରାମ, କୃଷ୍ଣ, ଶିବ ଓ ଗଣେଶାଦି ନାମରେ ନାମିତ କରାଯାଇଛି ତାହାଙ୍କୁ ହିଁ ତନ୍ତ୍ରରେ ପରମାପ୍ରକୃତି, ମୂଳା-ପ୍ରକୃତି, ଆଦ୍ୟାଶକ୍ତି, କାଳୀ, ତାରା, ଦୁର୍ଗା ଓ ମହାବିଦ୍ୟାଦି ନାମରେ ଅଭିହିତ କରାଯାଇଛି । କେବଳ ନାମରେ ପାର୍ଥକ୍ୟ ଯିନା ପରିଦୃଷ୍ଟ, ମାତ୍ର ମୂଳ ବିଷୟରେ କୌଣସି ଅନୈକ୍ୟ ନାହିଁ ।

## ଆଗମ ବା ତନ୍ତ୍ରର ପ୍ରାଚୀନତା

ତତ୍ତ୍ୱବିଦ୍‌ମାନେ ଆଗମକୁ ବେଦର ପୂର୍ବବର୍ତ୍ତୀ ବୋଲି ମତ ପ୍ରଦାନ କରିଅଛନ୍ତି; କେହି ବା ବେଦର ସମସାମୟିକ ଆଉ ବା କେହି ଅର୍ବାଚୀନ ବୋଲି ମତ ପୋଷଣ କରି ଅଛନ୍ତି । ସେ ଯାହାହେଉ ତନ୍ତ୍ରର ମୂଳହିଁ ବେଦ । ଅଥର୍ବ ବେଦରେ ଯେଉଁ ମନ୍ତ୍ର ପ୍ରଭୃତି ବୀଜରୂପରେ ପରିଦୃଶ୍ୟମାନ ହେଲା ତାହାହିଁ ତନ୍ତ୍ରରେ ମୁକୁଳିତ ଓ ପଲ୍ଲବିତ ହୋଇଥିବାର ଦେଖାଯାଏ । ଆଗମ ଶବ୍ଦ ବେଦ ଓ ତନ୍ତ୍ରର ବୋଲି କୋଷ ଗ୍ରନ୍ଥରେ ଉଲ୍ଲେଖ ରହିଛି । ବେଦ ଈଶ୍ୱରୀୟ ବାକ୍ୟ ହେତୁ ତାହାର ଯେପରି ପ୍ରାଚୀନତା ନିର୍ଣ୍ଣୟ କରାଯାଏ ଆଗମ ମଧ୍ୟ ପରମଯୋଗୀ ଈଶ୍ୱରପର ନାମା ସଦାଶିବଙ୍କ ବାକ୍ୟ ହେତୁ ତାହାର ପ୍ରାଚୀନତା ଅସ୍ୱୀକାର କରିବା ଅବିଧେୟ ।

## ତନ୍ତ୍ରର ଆଲୋଚ୍ୟ ବିଷୟ

ପୂର୍ବରୁ କହାଯାଇଛି ଯେ—ସୃଷ୍ଟି, ପ୍ରଳୟ, ଦେବପୂଜା, ମନ୍ତ୍ରଯନ୍ତ୍ରାଦି ଏହାର ଅନ୍ତର୍ଗତ । ଉକ୍ତ ତନ୍ତ୍ର ଅସଂଖ୍ୟ ହେଲେ ମଧ୍ୟ—'ଆଗମ ତତ୍ତ୍ୱ-ବିଳାସ' ଗ୍ରନ୍ଥରେ ମାଳ, ଯୋଗିନୀ, ଭୈରବୀ, କୁମାରୀ, ତାରିଣୀ ପ୍ରଭୃତି ଚଉଷଠୀ ଏବଂ ବାରାହୀ ତନ୍ତ୍ରରେ ଯୋଗଡ଼ାମର, ଶିବଡ଼ାମର, ଦୁର୍ଗାଡାମର, ବ୍ରହ୍ମଡ଼ାମର ଆଦି ତନ୍ତ୍ରର ନାମୋଲ୍ଲେଖ ଦେଖାଯାଏ ।

ଯାମଳ ଗ୍ରନ୍ଥରେ ବ୍ରହ୍ମଯାମଳ, ବିଷ୍ଣୁଯାମଳ, ରୁଦ୍ରଯାମଳ, ଗୌତମୀ, ଆଦ୍ୟା, ସରସ୍ୱତୀ ଓ ଯୋଗିନୀ ପ୍ରଭୃତି ୫୫ଟି ତନ୍ତ୍ରର ନାମ ଉଲ୍ଲେଖ ଥିବାର ଦେଖାଯାଏ । ବୌଦ୍ଧମାନଙ୍କ ମତରେ ମଧ୍ୟ ତନ୍ତ୍ରର ସଂଖ୍ୟା ପ୍ରାୟ ଶତାଧିକ । ତନ୍ମଧ୍ୟରେ ଯୁଦ୍ଧଯାମଳ, ନାଗାର୍ଜ୍ଜୁନ, ମାୟାଜାଲ, ତତ୍ତ୍ୱଜ୍ଞାନ ସିଦ୍ଧି ଓ ସାଧନ ସଂଗ୍ରହ ପ୍ରଭୃତି ତନ୍ତ୍ର ପ୍ରସିଦ୍ଧ । ପ୍ରାୟ ଅଧିକାଂଶ

Digitized by srujanika@gmail.com

ତନ୍ତ୍ରରେ ପ୍ରାତଃକୃତ୍ୟ, ଭୂତଶୁଦ୍ଧି, ସ୍ନାନବିଧି, ପ୍ରାଣାୟାମ, ସନ୍ଧ୍ୟା, ଜପ, ନିତ୍ୟପୂଜା, କରାଙ୍ଗ ପଞ୍ଚାଙ୍ଗନ୍ୟାସ, ବିବିଧ ପୂଜା ପ୍ରଭୃତିର ବିଷୟ ଆଲୋଚିତ ହୋଇଅଛି । ଗୁରୁଗ୍ରହଣ, ଦୀକ୍ଷାଗ୍ରହଣ, ଆଚାର, ପ୍ରାୟଶ୍ଚିତ୍ତ ଓ ମନ୍ତ୍ର ପ୍ରଭୃତି ତନ୍ତ୍ରର ଅଙ୍ଗ ।

ଆଗମ ବା ତନ୍ତ୍ର ମତରେ ଗୁରୁ ଗ୍ରହଣ କରିବ । ଗୁରୁ ଯେଉଁ ବୀଜମନ୍ତ୍ର ପ୍ରଦାନ କରିବେ ତଦ୍ଦ୍ୱାରା ଭଗବାନଙ୍କର ଅର୍ଚ୍ଚନା କରିବାକୁ ହେବ । ଏହି ଗୁରୁଗ୍ରହଣ ପ୍ରଥା ବହୁକାଳରୁ ଏ ଦେଶରେ ପ୍ରଚଳିତ ହୋଇ ଆସୁଅଛି । ଉପଯୁକ୍ତ ଗୁରୁ ନ ହେଲେ ତାନ୍ତ୍ରିକ କ୍ରିୟା ଓ ଲତା, ତାନ୍ତ୍ରିକ ଆଚାର, ତାନ୍ତ୍ରିକ ପୂଜା ଓ ତନ୍ତ୍ରୋକ୍ତର ପରିପୁଷ୍ଟି ସାଧିତ ହେବ ନାହିଁ ବା ସାଧନ ପଥରେ ଶିଷ୍ୟ ସଫଳକାମ ହେବେ ନାହିଁ । ନାନା ସମ୍ପ୍ରଦାୟ ମଧ୍ୟ ତନ୍ତ୍ରାନୁସାରେ ସୃଷ୍ଟ ହୋଇଅଛି । ତନ୍ତ୍ରଶାସ୍ତ୍ର ଚିରକାଳ ଗୁପ୍ତଶାସ୍ତ୍ର ବୋଲି ପ୍ରଚଳିତ ଥିବାରୁ ତାର ପ୍ରକୃତାର୍ଥ ବହୁ ଲୋକ ପକ୍ଷରେ ଅନଧିଗମ୍ୟ । ସମ୍ପ୍ରତି ତନ୍ତ୍ରର ବ୍ୟାଖ୍ୟା ଯେପରି କରାଯାଏ ତାହା ଦେଶର ଓ ସୁଶିକ୍ଷାର ବାଧକ ହୋଇଥିବାରୁ ମନେହୁଏ ଏ ଶାସ୍ତ୍ର କେବେହେଲେ ମୋକ୍ଷସାଧନର ଉପାୟ ହୋଇ ନ ପାରେ । ବ୍ୟଭିଚାର ଓ ମଦ୍ୟପାନ ଏବଂ ଯୌନସଙ୍ଗମ ପ୍ରଭୃତିର ପ୍ରାଧାନ୍ୟ କୀର୍ତ୍ତନ ଯଦି ଶାସ୍ତ୍ରର ଲକ୍ଷ୍ୟ ହୁଏ, ତେବେ ମାନବ ସମାଜକୁ ଅଧଃପତନର ମାର୍ଗରେ ନେବା ଲାଗି, ମନେହୁଏ ଏ ଶାସ୍ତ୍ର ରଚିତ ହୋଇଅଛି । କିନ୍ତୁ ଏହା ଭ୍ରମାତ୍ମକ । ଚାର୍ବାକ୍ ଦର୍ଶନରୁ ସୂଚନା ମିଳେ ଯେ, ଅସୁରମାନଙ୍କୁ ତଥା ଦୈତ୍ୟମାନଙ୍କୁ ଭ୍ରାନ୍ତ ପଥରେ ପରିଚାଳିତ କରି ସେମାନଙ୍କର ଉଚ୍ଛେଦ ସାଧନ ପାଇଁ ସେ ଦର୍ଶନ ରଚିତ ହୋଇଅଛି । ତନ୍ତ୍ରଶାସ୍ତ୍ରରେ ମଧ୍ୟ କୌଣସି କୌଣସି ସ୍ଥଳରେ ବ୍ୟାଖ୍ୟାନ ପରମ୍ପରା ଦେଖିଲେ ଏହାହିଁ ସୂଚିତ ହେଉଅଛି ।

ପଦ୍ମପୁରାଣ ଓ ଭାଗବତର ପ୍ରକାରାନ୍ତରେ ଲିଖିତ ଅଛି ଯେ, ଶିବ ଓ ଶକ୍ତିର ନାମ ନେଇ ଯେଉଁମାନେ ଶାସ୍ତ୍ରର ପରିକଳ୍ପନା କରିବେ ସେହିମାନେହିଁ ପାଷଣ୍ଡ । ଯଦି ତାହା ହୁଏ ତାହାହେଲେ ତନ୍ତ୍ରଶାସ୍ତ୍ର ମୋକ୍ଷ-ଲାଭର ଅନ୍ତରାୟ ବୋଲି କୁହାଯିବ । କିନ୍ତୁ ତନ୍ତ୍ର ଶାସ୍ତ୍ରର ପ୍ରକୃତ ଉଦ୍ଦେଶ୍ୟ ତାହା ନୁହେଁ । କେବଳ ତାର ଅର୍ଥ ବିକୃତ ନେଇ ଅନର୍ଥର ଉତ୍ପତ୍ତି ହୋଇଅଛି । ସବୁ ବିଷୟର ସନ୍ଧାନ କଲେ ଦେଖାଯାଏ ଯେ, ତନ୍ତ୍ର ଶାସ୍ତ୍ର କଦାପି ମଦ୍ୟପାନ ବା ବ୍ୟଭିଚାରକୁ ପ୍ରଶ୍ରୟ ଦେଇନାହିଁ ।

Digitized by srujanika@gmail.com

## ପଞ୍ଚମକାର ତତ୍ତ୍ୱ

ତନ୍ତ୍ରଶାସ୍ତ୍ରର ମୂଳତତ୍ତ୍ୱ ପଞ୍ଚମକାର । ଯେଉଁ ପଞ୍ଚମକାରର ଦୋହାଇ ଦେଇ ଲୋକେ, ଏପରିକି ପଣ୍ଡିତମାନେ ନାନା କୁକର୍ମରେ ପ୍ରବୃତ୍ତ ହେଉ ଅଛନ୍ତି, ସୂକ୍ଷ୍ମଦୃଷ୍ଟିରେ ଦେଖିଲେ ମନେହୁଏ ତାହା କଦାପି ସେ ଅର୍ଥରେ ବ୍ୟବହୃତ ହୋଇ ନାହିଁ । ଏହାର ଅର୍ଥ ଅତୀବ ସାଧୁ ଓ ଦୃଢ଼ । ସେ ଶାସ୍ତ୍ର କେବେହେଲେ ମାନବକୁ କୁପଥଗାମୀ କରି ନ ପାରେ । ପଞ୍ଚମକାର ସାଧକର ପ୍ରାଣରେ ଅନୁପମ ଆତ୍ମତତ୍ତ୍ୱହିଁ ସେ ଶାସ୍ତ୍ର ଉଦ୍ଭାସିତ କରେ । ତନ୍ତ୍ରଶାସ୍ତ୍ର ଏକପ୍ରକାର ଯୋଗଶାସ୍ତ୍ର; ତନ୍ତ୍ର ସାଧନହିଁ ଯୋଗସାଧନ । ଏହାର ପ୍ରଧାନ ଅଙ୍ଗ ପଞ୍ଚମକାର ।

"ମଦ୍ୟଂ ମାଂସଂ ଚ ମତ୍ସ୍ୟଂ ଚ
ମୁଦ୍ରାଂ ମୈଥୁନ ମେବ ଚ,
ମକାର ପଞ୍ଚକଂ ଦେବି ଦେବତା—
ପ୍ରୀତି କାରଣକମ୍ ।"

ଅର୍ଥାତ୍ ମଦ୍ୟ, ମାଂସ, ମତ୍ସ୍ୟ, ମୁଦ୍ରା ଓ ମୈଥୁନ ଏହି ପଞ୍ଚମକାର ଦେବୀର ପ୍ରୀତିସାଧନ କରେ । ଏମାନଙ୍କ ସମ୍ବନ୍ଧରେ କୁଳାର୍ଣ୍ଣବ ତନ୍ତ୍ରରେ ଉପଦେଶାତ୍ମକ ବ୍ୟାଖ୍ୟାନ ଦେଖାଯାଏ ।

"ମଦ୍ୟପାନେନ ମନୁଜୋ ଯଦି ସିଦ୍ଧିଂ ଲଭେତ ବୈ ।
ମଦ୍ୟପାନ ରତାଃ ସର୍ବେ ସିଦ୍ଧିଂ ଗଚ୍ଛନ୍ତୁ ପାମରାଃ ।
ମାଂସ ଭକ୍ଷଣ ମାତ୍ରେଣ ଯଦି ପୁଣ୍ୟା ଗତିର୍ଭବେତ୍ ।
ଲୋକେ ମାଂସାଶିନଃ ସର୍ବେ ପୁଣ୍ୟଭାଜୋ ଭବନ୍ତୁ ବୈ ।
ସ୍ତ୍ରୀ ସମ୍ଭୋଗେନ ଦେବେଶି ଯଦି ମୋକ୍ଷଂ ଭବନ୍ତି ବୈ ।
ସର୍ବେଽପି ଜନ୍ତବୋ ଲୋକେ ମୁକ୍ତାଃ ସ୍ୟୁଃ ସ୍ତ୍ରୀ ନିଷେବଣାତ୍ ।"

ଅର୍ଥାତ୍ ମଦ୍ୟପାନ କଲେ ଯଦି ଲୋକ ସିଦ୍ଧି ଲାଭ କରନ୍ତା ତେବେ ମଦ୍ୟପାନରତ ପାଷାଣ୍ଡଗଣ ସମସ୍ତେ ତ ସିଦ୍ଧିଲାଭ କରନ୍ତେ; ମାଂସ ଭକ୍ଷଣ କଲେ ଯଦି ସଦ୍‌ଗତି ଲାଭ ହୁଅନ୍ତା, ତେବେ ମାଂସାଶୀ ବ୍ୟକ୍ତି ମାନେହିଁ ପୁଣ୍ୟଭାଗୀ ହୋଇ ପାରନ୍ତେ । ସ୍ତ୍ରୀ ସମ୍ଭୋଗରେ ଯଦି ମୋକ୍ଷ ଲାଭ ହୁଅନ୍ତା, ତେବେ ଜଗତର ସକଳ ଜୀବଜନ୍ତୁ ହିଁ ସ୍ତ୍ରୀ ସମ୍ଭୋଗ ଦ୍ୱାରା ମୁକ୍ତିଲାଭ କରି ପାରନ୍ତେ । ତେବେ ବୁଝିବାକୁ ହେବ, ତନ୍ତ୍ରର ପ୍ରକୃତ ଅର୍ଥ ଲୋକେ ବୁଝି ନ ପାରି ଭ୍ରାନ୍ତ ପଥରେ ପ୍ରଧାବିତ ହେଉଅଛନ୍ତି । ନୋହେତ୍ ତନ୍ତ୍ର ମଧ୍ୟରେ

Digitized by srujanika@gmail.com

ଯେଉଁ ନିଗୂଢ଼ ଯୋଗତତ୍ତ୍ୱ ନିହିତ ଅଛି, ତାହାର ଗୂଢ଼ତତ୍ତ୍ୱ ଉଦ୍‌ଘାଟନ କରି ପାରିଲେ ଲୋକେ ଇଷ୍ଟଲାଭ କରି କୃତକାର୍ଯ୍ୟ ହେବେ ଏଥିରେ ସନ୍ଦେହ ନାହିଁ । 'ଜ୍ଞାନସଙ୍କଳନୀ' ଓ 'ରୁଦ୍ର ଯାମଳ' ପ୍ରଭୃତି ଗ୍ରନ୍ଥମାନଙ୍କରେ ଉକ୍ତ ପଞ୍ଚମକାରର ବ୍ୟାଖ୍ୟା ଯେପରି ଭାବରେ କରାଯାଇଛି ତାହା ପ୍ରଣିଧାନ-ଯୋଗ୍ୟ—

ପଞ୍ଚମକାରର ପ୍ରଥମ ତତ୍ତ୍ୱ ମଦ୍ୟପାନ ; କିନ୍ତୁ ସେ ମଦ୍ୟପାନର ଅର୍ଥ ସାଧାରଣ ମଦ୍ୟପାନ ନୁହେଁ; ସେ ମଦ୍ୟର ଅର୍ଥ ବ୍ରହ୍ମାନନ୍ଦ । ବ୍ରହ୍ମରନ୍ଧ୍ର ସହସ୍ର ଦଳକମଳ ନିର୍ଗତ ସୁଧାକର ପାନରେ ସାଧକର ଯେ ମତ୍ତତା, ସେହି ମତ୍ତତାହିଁ ମଦ୍ୟପାନର ସ୍ୱରୂପ । ଏ ବିଷୟରେ 'ଆଗମସାର' ଗ୍ରନ୍ଥରେ ଲିଖିତ ଅଛି ଯେ—

"ସୋମଧାରା କ୍ଷରେତ୍ ଯା ତୁ ବ୍ରହ୍ମରନ୍ଧ୍ରାତ୍ ବରାନନେ,
ପୀତ୍ୱାନନ୍ଦମୟୀଂ ତାଂ ଯ ସ ଏବ ମଦ୍ୟସାଧକଃ ।"

ଦ୍ୱିତୀୟ ତତ୍ତ୍ୱ ମାଂସ ଭକ୍ଷଣ—ଏହା ମଧ୍ୟ ସାଧାରଣ ମାଂସ ଭକ୍ଷଣ ନୁହେଁ । ତାହାର ଗୂଢ଼ାର୍ଥ ଏହି ଯେ—ମା = ରସନା + ଅଂଶ ଅର୍ଥାତ୍ ରସନାର ଅଂଶ = ବାକ୍ୟ । ମାଂସ ଭକ୍ଷଣ ଅର୍ଥ ବାକ୍ୟରୋଧ ବା ମୌନାବଲମ୍ବନ ।

ଯଥୋକ୍ତଂ—

"ମା ଶବ୍ଦାଦ୍ରସନା ଜ୍ଞେୟା ତଦଂଶାନ୍
ରସନାପ୍ରିୟେ,
ସଦା ଯୋ ଭକ୍ଷୟେତ୍ ଦେବି ସ
ଏବ ମାଂସସାଧକଃ ।"

ଏଥିରୁ ଅନୁମିତ ହୁଏ ଯେ, ରସନା ଭକ୍ଷଣ ବା ଜିହ୍ୱା ସଙ୍କୋଚନାଦି ଦ୍ୱାରା ସାଧକର କ୍ଷୁଧା, ତୃଷା ଦୂରୀଭୂତ ହୁଏ ।

ତୃତୀୟ ତତ୍ତ୍ୱ ହେଉଛି ମତ୍ସ୍ୟ ଭକ୍ଷଣ—ସାଧକର ମତ୍ସ୍ୟଭକ୍ଷଣ ଅର୍ଥ କୁମ୍ଭକଯୋଗ ବା ନିଃଶ୍ୱାସ ପ୍ରଶ୍ୱାସ ରୋଧ ।

୪ର୍ଥ ତତ୍ତ୍ୱ ମୁଦ୍ରା—ମୁଦ୍ରା ଭକ୍ଷଣର ଅର୍ଥ ଆଶା, ତୃଷ୍ଣା, ଗ୍ଳାନି, ଭୟ, ଘୃଣା, ମାନ, ଲଜ୍ଜା ଓ କ୍ରୋଧ ଏହି ଅଷ୍ଟ ମୁଦ୍ରାକୁ ଆୟତ୍ତ କରିବା ବ୍ରହ୍ମଜ୍ଞାନ ରୂପ ଅଗ୍ନିଦ୍ୱାରା ସେ ସମୁଦାୟକୁ ସୁସିଦ୍ଧ କରି ଭକ୍ଷଣ କରିବା ଯଥା—

Digitized by srujanika@gmail.com

ଆଶା ତୃଷ୍ଣା ଜୁଗୁପ୍‌ସା ଭୟ ବିଷାଦ ଘୃଣାମାନ ଲଜ୍ଜାଭିଷଙ୍ଗାଃ
ବ୍ରହ୍ମାଗ୍ନାବଷ୍ଟମୁଦ୍ରା ପରମ ସୁକୃତିନଃ ପୀଚ୍ୟମାନ ସମନ୍ତାତ୍ ।"

ତନ୍ତ୍ରର ପଞ୍ଚମ ତତ୍ତ୍ୱ ମୈଥୁନ । ମୈଥୁନର ଅର୍ଥ ସ୍ତ୍ରୀ ସେବା ବା ବ୍ୟଭିଚାର ବା ଉଚ୍ଛୃଙ୍ଖଳତା ବା ସାଧାରଣ ସ୍ତ୍ରୀ ପୁରୁଷ ମିଳନ ନୁହେଁ । ଏହାର ଗୂଢ଼ ଅର୍ଥ ଜ୍ଞାନ ଓ ଭକ୍ତିର ସମ୍ମିଶ୍ରଣ, ବ୍ରହ୍ମରନ୍ଧ୍ର ସ୍ଥିତ ସହସ୍ରାର ବିନ୍ଦୁ ସହିତ କୁଣ୍ଡଳିନୀ ଶକ୍ତିର ମିଳନ ବା ସଂଘଟନ ।

ଯଥା—ସହସ୍ରାରୋପରି ବିନ୍ଦୌ କୁଣ୍ଡଳ୍ୟାତ୍
ମିଳନାତ୍ ଶିବେ,
ମୈଥୁନଂ ପରମଂ ଦିବ୍ୟଂ
ଯତୀନାଂ ପରିକୀର୍ତ୍ତିତମ୍ ।"

ଏହାଠାରୁ ଅଧିକ ପ୍ରଗାଢ଼ ଯୋଗାଭ୍ୟାସ ବା ଏହାଠାରୁ ଅଧିକ ଉତ୍କୃଷ୍ଟତର ଚିତ୍ତବୃତ୍ତି ନିରୋଧ ଆଉ କ'ଣ ହୋଇପାରେ ? ତନ୍ତ୍ରଶାସ୍ତ୍ରକୁ ଅଭିନିବେଶ ସହ ଆଲୋଚନା କଲେ, ଏହାର ଗୋଟିଏ ନିଗୂଢ଼ ଲକ୍ଷ୍ୟ ଥିଲା ପରି ମନେହୁଏ, ଯଥା—ସଂସାର ମଧ୍ୟରେ ପ୍ରଲୋଭନ ପରିବୃତ ହେଲେ ମଧ୍ୟ ନିର୍ଲିପ୍ତ ଭାବରେ ଶିକ୍ଷାଦାନ ଓ କାଳକାଳରେ ପଞ୍ଚମକାରର ପ୍ରାଧାନ୍ୟ ସୂଚିତ ହେଲେ ମଧ୍ୟ ତତ୍ ପ୍ରତି ଆସକ୍ତିଶୂନ୍ୟ ହେବା ତନ୍ତ୍ରର ସାର ସଂକଳ୍ପ । କାଳବଶରେ ବୁଦ୍ଧିଭ୍ରଂଶ ହେତୁ ତନ୍ତ୍ରର ସେହି ନିଗୂଢ଼ତତ୍ତ୍ୱ ହୃଦୟଙ୍ଗମ କରି ନ ପାରି ତନ୍ତ୍ର ମତରେ ତାନ୍ତ୍ରିକ ହେବାକୁ ଯାଇ ଯେଉଁମାନେ ବ୍ୟଭିଚାରୀ ହୋଇଛନ୍ତି, ତାହା ତନ୍ତ୍ରଶାସ୍ତ୍ରର ଦୋଷ ନୁହେଁ । ମାତ୍ର ସେ ତ୍ରୁଟି ଅନୁଷ୍ଠାତାର ବୁଦ୍ଧିଭ୍ରଂଶ ବା ଶିକ୍ଷା ଦୀକ୍ଷାର ବିଷମୟ ଫଳ ।

Digitized by srujanika@gmail.com

# ଜଗନ୍ନାଥ ଧର୍ମରେ ବନଯାଗ ବିଧି

ଜଗନ୍ନାଥ ଧର୍ମ କହିଲେ ଜଗନ୍ନାଥ ପୀଠ ପ୍ରତିଷ୍ଠିତ ଧର୍ମକୁ ହିଁ ବୁଝିବାକୁ ପଡ଼ିବ । ଉକ୍ତ ଧର୍ମ ଅନନ୍ୟସାଧାରଣ । ଭାରତୀୟ ପ୍ରସିଦ୍ଧ ପୀଠମାନଙ୍କରେ ଯେଉଁ ଧର୍ମ ଧାରଣା ପ୍ରଚଳିତ ଅଛି, ଏ ସମସ୍ତ ଧର୍ମ ଧାରଣାର ସମନ୍ୱୟ ଜଗନ୍ନାଥଙ୍କଠାରେ ଓ ଏ ଧାମରେ ପରିଦୃଷ୍ଟ । ଏହା ଏକ ଅସଙ୍କୁଚିତ ବ୍ୟାପକ ଧର୍ମ । ଶୈବ, ସୌର, ଶାକ୍ତ, ଗାଣପତ୍ୟ ଓ ବୈଷ୍ଣବାଦି ସକଳ ଉପାସନା ଏ ଧର୍ମର କୁକ୍ଷିଗତ । କୌଣସି ସମ୍ପ୍ରଦାୟର ବୈମତ୍ୟ ଏଥିରେ ନାହିଁ । ଜଗନ୍ନାଥ ଦେବ ନିର୍ଗୁଣ ନିରାକାର ନିରଂଜନ ବ୍ରହ୍ମରୂପୀ ଅଟନ୍ତି । କିନ୍ତୁ ଭେଦମୂଳକ ଘଟନା ବା ଉପାସନା ନିର୍ଗୁଣର ସମ୍ଭବପର ନ ହେବା ହେତୁ ଦୀନବନ୍ଧୁ ଦାରୁ ବିଗ୍ରହରେ ସଗୁଣ ଭାବ ଭକ୍ତାନୁଗ୍ରହରେ ପ୍ରକଟାଇ ଅଛନ୍ତି । ଏ ପୀଠ ଓ ମନ୍ଦିରାବରଣର ପରିସ୍ଥିତିର ବିବରଣ ପ୍ରଦତ୍ତ କରିବା ଏକ ଦୁରୂହ ବ୍ୟାପାର । କେବଳ ଗୋଟିଏ ବିଷୟରେ ତଥ୍ୟାଦି ଲିପିବଦ୍ଧ କରିବାକୁ ଗଲେ ପ୍ରବନ୍ଧର କଳେବର ବୃଦ୍ଧି ପାଇପାରେ ।

ଜଗନ୍ନାଥ ଦେବଙ୍କର ଦାରୁମୂର୍ତ୍ତିର ଆବିର୍ଭାବ କେଉଁ ସମୟରୁ ହୋଇଛି, ସେ ସମ୍ବନ୍ଧରେ ନାନା ମତ ଇତିହାସ ପ୍ରଚଳିତ ଅଛି ଏବଂ ତାହା ମଧ୍ୟ ଜାଣିବା କଷ୍ଟକର । ପୌରାଣିକ ମତରେ ମାଳବ ଦେଶୀୟ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ଆଗମନ ପରେ ଦାରୁମୂର୍ତ୍ତିଙ୍କର ଆବିର୍ଭାବ ଓ ବ୍ରହ୍ମାଙ୍କର ଦ୍ୱିତୀୟ ପରାର୍ଦ୍ଧ ଆରମ୍ଭରେ ଏହାର ପ୍ରତିଷ୍ଠା ।

ଏ ପୀଠରେ ପ୍ରଚଳିତ ଦାରୁ ପ୍ରତିଷ୍ଠା ବିଧି ବୈଦିକ ରୀତିରେ ବିହିତ ଓ ତାନ୍ତ୍ରିକ ରୀତ୍ୟାନୁଗତ । ଦ୍ୱିଆଷାଢ଼ ହେଲେ ଜଗନ୍ନାଥଙ୍କ ନବଦାରୁ ପ୍ରତିଷ୍ଠା କାର୍ଯ୍ୟ ବା ନବ କଳେବର ଅନୁଷ୍ଠିତ ହୁଏ । ବର୍ତ୍ତମାନ ଉକ୍ତ ପ୍ରତିଷ୍ଠା ବିଧିର ଅନୁକ୍ରମ ବର୍ଣ୍ଣ୍ୟ ।

Digitized by srujanika@gmail.com

ଜଗନ୍ନାଥ ଦେବଙ୍କ ଆଚାର୍ଯ୍ୟ, ପୁରୋହିତ, କତିପୟ ବ୍ରାହ୍ମଣ ଓ ସଂସ୍ଥ ରାଜାଙ୍କର ମୁଖ୍ୟତମ କର୍ମଚାରୀ, ବର୍ଦ୍ଧକୀ ଓ ଅନ୍ୟାନ୍ୟ ସେବକମାନେ ସମବେତ ହୋଇ ଦାରୁ ଅନ୍ୱେଷଣରେ ଯାତ୍ରା କରନ୍ତି । ଯାତ୍ରାଦିନ ପୂର୍ବରୁ ପୁରୁଷୋତ୍ତମଙ୍କ ଆଜ୍ଞାମାଳ ପ୍ରାପ୍ତ କରି ଉକ୍ତ ରାତିରେ ଉପୋଷିତ ରହନ୍ତି ଏବଂ ତହିଁ ଆରଦିନ କାକଟପୁର ମଙ୍ଗଳା ମନ୍ଦିରରେ ଉପସ୍ଥିତ ହୁଅନ୍ତି । ଦାରୁ ଆନୟନ ଉଦ୍ଦେଶ୍ୟରେ ବଶବର୍ତ୍ତୀ ହୋଇ ଏମାନେ ଶ୍ରୀ ମଙ୍ଗଳା ଦେବୀଙ୍କର ଉପାସନାରେ ରାତି ଯାପନ କରିଥାନ୍ତି । ଉକ୍ତ ରାତ୍ରରେ ଦେବୀଙ୍କର ସ୍ୱପ୍ନାଦେଶ ମତେ ଲକ୍ଷଣ ଲକ୍ଷିତ ଦାରୁ ନିଶ୍ଚିତ କରିବାକୁ ଯାତ୍ରା କରନ୍ତି । ଉକ୍ତ ସଲକ୍ଷଣ ଦାରୁ କେଉଁଠାରୁ ଆସିବ ବା କିପରି ମିଳିବ ଏହା କେବଳ ଭଗବତୀଙ୍କର ଆରାଧନାର ସାଫଲ୍ୟ ଉପରେ ନିର୍ଭର କରେ । ସମସ୍ତଙ୍କୁ ପ୍ରାୟ ଉପବାସରେ କାଳଯାପନ କରିବାକୁ ପଡ଼ିଥାଏ, ପରେ ଭଗବତୀଙ୍କର ସ୍ୱପ୍ନାଦେଶ ହୁଏ ଓ ସେମାନେ ଦେବ ବର୍ଦ୍ଧକୀ ସହିତ ନିର୍ଦ୍ଦିଷ୍ଟ ସ୍ଥାନକୁ ଯାତ୍ରା କରନ୍ତି । ଚତୁଃଶାଖା ବିଶିଷ୍ଟ, ପକ୍ଷୀବାସ ରହିତ, ବିଶୁଦ୍ଧ ଭୂମି ସଞ୍ଜାତ, ମୂଳଦେଶରେ ବିବର ନାଗବାସବିଶିଷ୍ଟ ପ୍ରାଚୀନ ନିମ୍ବବୃକ୍ଷ ସ୍ଥିର କରି ବନଯାଗ ବିଧିରେ ବୃକ୍ଷ ମୂଳରେ ଓ କାଷ୍ଠୋପରି ପୂଜା ହୋମାଦି ସମ୍ପାଦନ କରାଯାଏ । ଯଥାବିଧି ଦାରୁ ଆଚାର୍ଯ୍ୟଙ୍କ ଦ୍ୱାରା ପ୍ରଥମେ ଛେଦନ ପ୍ରାପ୍ତ ଓ କ୍ରମେ କର୍ତ୍ତିତ ହୋଇ ସମ୍ଭୃତ ଯାନରେ ଆନୀତ ହୁଅନ୍ତି । ବୈଦିକ ଯଜ୍ଞୀୟ ଅରଣ୍ୟ ଛେଦନ ନିୟମରେ ଛିନ୍ନ କରି ପଟ୍ଟବସ୍ତ୍ରାଦିରେ ସମାଚ୍ଛାଦିତ କରି ମହା ସମାରୋହରେ ପୁଷ୍ପଚନ୍ଦନ ଭୂଷିତ ପୂର୍ବକ ଶଙ୍ଖ, କାହାଳାଦି ବାଦ୍ୟ ପୁରଃସର ଆନୀତ ହୋଇ ଶ୍ରୀମନ୍ଦିରର ଉତ୍ତର ଦ୍ୱାରରେ ଥିବା କୋଇଲି ବୈକୁଣ୍ଠରେ ଉପସ୍ଥାପିତ ହୁଅନ୍ତି । ତା'ପରେ ଶୁଭଦିନ ଓ ମୁହୂର୍ତ୍ତରେ ଦାରୁ ପ୍ରତିଷ୍ଠା ବିଧି ଆରମ୍ଭ ହୁଏ । ଉକ୍ତ କାର୍ଯ୍ୟରେ ଅଷ୍ଟୋତ୍ତରଶତ ବ୍ରାହ୍ମଣ ବରଣ ହୁଅନ୍ତି । ଏହାଙ୍କର ପ୍ରତିଷ୍ଠା ସଂସ୍କାର ବହୁବିଧ ଓ ବହୁମୂଲ୍ୟଦ୍ରବ୍ୟସାଧ୍ୟ । କୁଣ୍ଡ, ମଣ୍ଡପ, ଶାଳା ଓ ଚନ୍ଦ୍ରାବଜ ମଣ୍ଡଳାଦି ନୃସିଂହ ମନ୍ତ୍ରରେ ପଞ୍ଚାଙ୍ଗ ବିବେ ଅୟୁତାଧିକ ହୋମ ଅନୁଷ୍ଠିତ ହେବାପରେ ଆନୀତ ଦାରୁ ମୂର୍ତ୍ତିଙ୍କର ଅଭିଷେକାଦି ସମସ୍ତ କର୍ମ ସୁସମ୍ପନ୍ନ ହୁଏ ଏବଂ ଦେବ ବର୍ଦ୍ଧକୀଙ୍କ ଦ୍ୱାରା ରହସ୍ୟ ଭାବରେ ଏକାନ୍ତରେ କୋଇଲି ବୈକୁଣ୍ଠରେ ମୂର୍ତ୍ତି ଗଠନ କ୍ରିୟା ମଧ୍ୟ ଆରମ୍ଭ ହୁଏ । ଉକ୍ତ ମୂର୍ତ୍ତି ଗଠନକାଳୀନ ଶବ୍ଦ ଅନ୍ୟ ବ୍ୟକ୍ତିର ଶ୍ରୁତିଗୋଚର ହେବା ନିଷିଦ୍ଧ । ଘଟଣା ସମକାଳରେ ମୃଦଙ୍ଗ କାହାଳାଦି ବାଦ୍ୟଧ୍ୱନି ହୋଇଥାଏ । ମୂର୍ତ୍ତିଗଠନ ପରେ ଚତୁର୍ଦ୍ଧା ବିଭକ୍ତ ପ୍ରତିମାଙ୍କର ନ୍ୟାସାଦି

Digitized by srujanika@gmail.com

କାର୍ଯ୍ୟ ଆରମ୍ଭ କରାଯାଏ । ଏଥିରେ ପ୍ରାୟ ସକଳ ପ୍ରକାର ଉପାସନା କାଣ୍ଡର ରୀତି (ବେଦାଗମ ମନ୍ତ୍ର ବୈଷ୍ଣବାଦି) ବ୍ୟାପକ ଭାବରେ ଅବଲମ୍ବିତ ହୋଇଥାଏ । ଅତଃପର ନବକଳେବର ବିଶିଷ୍ଟ ଚତୁର୍ଦ୍ଧା ମୂର୍ତ୍ତିଙ୍କର ଆବିର୍ଭାବ ଓ ବିଧି ଅତ୍ୟନ୍ତ ରହସ୍ୟାଚ୍ଛନ୍ନ ଓ ଦୁର୍ଜ୍ଞେୟ ହେତୁ ପ୍ରକାଶ ସମ୍ଭବ ନୁହେଁ । ଦ୍ୱିତୀୟାଷାଢ଼ରେ ତିନିପକ୍ଷ ବ୍ୟାପୀ ଏହି ଅପୂର୍ବ କୃତ୍ୟ ନିଷ୍ପାଦିତ ହୋଇଥାଏ । ନବଯୌବନ ଦର୍ଶନ ବା ନେତ୍ରୋତ୍ସବ ପରେ ଶ୍ରୀଗୁଣ୍ଡିଚା ଦିନ ରଥରେ ଏମାନେ ଯଜ୍ଞ ବେଦୀକୁ ଯାତ୍ରା କରନ୍ତି । ଉକ୍ତ ଯଜ୍ଞବେଦୀରେ ସପ୍ତାହବ୍ୟାପୀ ତ୍ରିକାଳ ଧୂପ ବେଶସିଂହାର (ବଡ଼ ଶୃଙ୍ଗାର) ଭୋଗ ଇତ୍ୟାଦି ନୀଳାଦ୍ରି ନିୟମରେ ଅନୁଷ୍ଠିତ ହୋଇଥାଏ । ନବମ ଦିନ ମହାପ୍ରଭୁଙ୍କ ବାହୁଡ଼ା ଯାତ୍ରା ଆରମ୍ଭ । ଦ୍ୱିତୀୟ ମାସରେ କୃଷ୍ଣ ଚତୁର୍ଦ୍ଦଶୀ ନିଶାରେ ପ୍ରଭୁଙ୍କର ଦାରୁମୂର୍ତ୍ତି ପରିବର୍ତ୍ତନ ଓ ନ୍ୟାସଶ୍ଚ ସପ୍ତାବରଣାଦି କୃତ୍ୟ ସମ୍ପାଦିତ ହୋଇ ଶୁକ୍ଳ ପ୍ରତିପଦ ଦିନ ନେତ୍ରୋତ୍ସବ ବା ନବଯୌବନ ଦର୍ଶନ ହୋଇଥାଏ । ଆଷାଢ଼ ଶୁକ୍ଳ ଦ୍ୱିତୀୟା ପ୍ରାତଃ ଧୂପଭୋଗାନ୍ତେ ବୈଦିକରୀତିରେ ମଙ୍ଗଳାରୋପଣ ପୂର୍ବକ ପ୍ରଭୁଙ୍କର ରଥଯାତ୍ରା ଓ ଉକ୍ତ ରଥର ପ୍ରତିଷ୍ଠା ବୈଦିକ ଓ ତାନ୍ତ୍ରିକ ରୀତିରେ ଅନୁଷ୍ଠିତ ହୋଇଥାଏ । ତିନୋଟି ରଥ ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରା ଦେବୀଙ୍କ ପାଇଁ ନିର୍ମିତ ହୁଏ । ତାଳଧ୍ୱଜ, ନନ୍ଦିଘୋଷ ଓ ଦେବଦଳନ ବା ଦେବୀରଥ ଏହି ରଥତ୍ରୟର ନାମ । ରଥ ଚତୁଃପାର୍ଶ୍ୱରେ ଆବରଣ ଦେବତାମାନଙ୍କର ସାରଥି ସହ ଦାରୁମୂର୍ତ୍ତିଙ୍କ କଳେବର କାଳରେ ମଧ୍ୟ ପରିବର୍ତ୍ତନ କରାଯାଏ । ଏପରିକି ପୂର୍ବ ବ୍ୟବହୃତ ସମସ୍ତ ଔପଗ୍ରହିକ ସାମଗ୍ରୀ ପଲଙ୍କ ଉତ୍ତରୀ ସହିତ ନୂତନ ଭାବରେ ନିର୍ମିତ ହୁଏ । ଉକ୍ତ ରଥ ନିର୍ମାଣ ବନଯାଗ ବିଧିମତେ ଅକ୍ଷୟ ତୃତୀୟାଠାରୁ ଆନୀତ କାଷ୍ଠରେ ଆରମ୍ଭ କରାଯାଏ । ଏହି ଅକ୍ଷୟ ତୃତୀୟା ସତ୍ୟଯୁଗାଦି ହେତୁ (ସତ୍ୟଯୁଗ ଏହି ଦିନରେ ଆରମ୍ଭ) ଏହି ଦିନଟି ରଥ ନିର୍ମାଣର ପ୍ରକୃଷ୍ଟ ଦିବସ ।

Digitized by srujanika@gmail.com

# ଶ୍ରୀକ୍ଷେତ୍ର ଓ ଶ୍ରୀ ଜଗନ୍ନାଥ ଦେବ

ଭାରତବର୍ଷରେ ପ୍ରସିଦ୍ଧ ଚତୁର୍ଦ୍ଧାମ ମଧ୍ୟରୁ ଶ୍ରୀକ୍ଷେତ୍ର ପୁରୀ ଅନ୍ୟତମ । ପୁଣି ଏହି କ୍ଷେତ୍ରସ୍ଥ ଶ୍ରୀ ଜଗନ୍ନାଥ ଦେବ ଅତି ପ୍ରାଚୀନ ଓ ତାଙ୍କର ମହିମା କୀର୍ତ୍ତନ କରିବା ସାଧାରଣ ମାନବ ପକ୍ଷରେ ଦୁରୂହ ବ୍ୟାପାର । ଜ୍ୟୋତିର୍ବିଦ୍ ପଠାଣି ସାମନ୍ତ ସ୍ୱୀୟ 'ସିଦ୍ଧାନ୍ତ ଦର୍ପଣ'ର ମଙ୍ଗଳାଚରଣରେ ଜଗନ୍ନାଥ ଦେବ ଓ ସପ୍ତାବରଣ ପୀଠର ଯେଉଁ ସ୍ତୁତିବାଦନ କରିଛନ୍ତି, ତାହା ଉଲ୍ଲେଖ କଲେ ଏଠାରେ ଅପ୍ରାସଙ୍ଗିକ ହେବ ନାହିଁ ।
ସେ ଲେଖିଛନ୍ତି—

"ଶ୍ରୀ ଭୂ ମାଧବ ଚକ୍ର ଚକ୍ରୀ ବଳଭୃତ—
ଭଦ୍ରାଭିରଭ୍ୟଞ୍ଚନମ୍
ଶ୍ରୀକଣ୍ଠ ପ୍ରମୁଖାଖିଳାମରଶିଖା—
ସୃଷ୍ଟାଙ୍ଘ୍ରି ପୀଠୋପଳମ୍
ଶ୍ରୀ ମନ୍ନୀଳାଧରା ଧରାନ୍ତର
ମହାନୀଳାଦ୍ରି ମାନଂ ମହଃ
ଶ୍ରୀ ଭୂମାଧରତ ସ୍ତରଂ ଭବତୁନଃ
ପ୍ରୀତ୍ୟ ହୃଦବ୍ଜୋଦୟନ୍ତଂ ।"

ଲକ୍ଷ୍ମୀ, ଭୂଦେବୀ, ମାଧବ, ସୁଦର୍ଶନ ଚକ୍ର, ଚକ୍ରୀ, ଅର୍ଥାତ୍ ବିଷ୍ଣୁ-ଜଗନ୍ନାଥ, ଅବନୀଭୃତ୍ ଅର୍ଥାତ୍ ବଳଭଦ୍ର ଏହି ସପ୍ତାବରଣ ପୀଠର ମୂର୍ତ୍ତି ଓ ମହାଦେବାଦି ଅମରମାନଙ୍କର ଶିଖା ଶିରୋଭାଗରେ ସେବିତ ପୀଠଭୂମିରୁ ଯେଉଁ ମହାନୀଳାଦ୍ରିମାନ ମହତ୍ ତେଜ ବିନିର୍ଗତ ହେଉଅଛି, ତାହା ଭକ୍ତମାନଙ୍କର ବିଘ୍ନରାଜିକୁ ଅପସାରଣ କରୁ । ଏହି ଜଗନ୍ନାଥ ଦେବଙ୍କ ସ୍ୱରୂପ, ଅବତାରବାଦ, ଧର୍ମ ଓ ଦର୍ଶନ ସମ୍ବନ୍ଧରେ ବହୁ ପଣ୍ଡିତ ଓ ମନୀଷୀ ସେମାନଙ୍କର ଚିନ୍ତାଧାରାକୁ ରୂପାୟିତ କରିଅଛନ୍ତି, ବହୁ ମତ, ବହୁ ଲେଖା ମଧ୍ୟ ପ୍ରକାଶିତ ହୋଇଅଛି । ମାତ୍ର ସେଥିରେ ଆମ ହିନ୍ଦୁ ଆର୍ଯ୍ୟ ସମାଜର

Digitized by srujanika@gmail.com

ଐକ୍ୟମତ ବା ଅବହୃନ୍ତପତ୍ତି ପରିଦୃଷ୍ଟ ହୁଏ ନାହିଁ । ପ୍ରକୃତ ଏ କ୍ଷେତ୍ରର ବା ଏ ଦେବତାଙ୍କର ସ୍ୱରୂପ ଅବଧାରଣା କରିବା ଅତ୍ୟନ୍ତ କଷ୍ଟସାଧ୍ୟ । ଏଥିରେ ମଧ୍ୟ ସକଳ ବ୍ୟକ୍ତିଙ୍କର ସାମର୍ଥ୍ୟ ସମ୍ଭବ ନୁହେ—କାରଣ, "ସୁଦୁର୍ଲ୍ଲଭ ସର୍ବ ମନୋରମା ଗିରଃ ।"

## ଜଗନ୍ନାଥ ଦେବଙ୍କ ସ୍ୱରୂପ

ଶ୍ରୀ ଜଗନ୍ନାଥ ଦେବ କୌଣସି ଅବତାର ନୁହନ୍ତି । ସେ ଅବତାରୀ ପରମ ବ୍ରହ୍ମ ଏବଂ ସର୍ବାବତାରର କାରଣ ଏକଦେବ ଅଟନ୍ତି । ଶ୍ୱେତାଶ୍ୱତର ଉପନିଷଦରେ ଉକ୍ତ ଅଛି—

"ଏକୋଦେବଃ, ସର୍ବଭୂତେଷୁ ଗୂଢ଼ଃ ସର୍ବବ୍ୟାପୀ, ସର୍ବଭୂତାନ୍ତରାତ୍ମା, କର୍ମାଧ୍ୟକ୍ଷଃ, ସର୍ବଭୂତାଧିବାସଃ, ସାକ୍ଷୀ, ଚେତା, କେବଳ ନିର୍ଗୁଣଶ୍ଚ ।"

ଏହି ଉପନିଷଦ ବର୍ଣ୍ଣିତ ନିର୍ଗୁଣ ନିରାକାର ବ୍ରହ୍ମରୂପରେ ଯେଉଁ ଦେବ କେବଳ ଅର୍ଥାତ୍ ଅଦ୍ୱିତୀୟ ରୂପେ ବର୍ଣ୍ଣିତ, ସେହି ଆମର ଶ୍ରୀ ଜଗନ୍ନାଥ ଦେବ ରୂପେ ବିରାଜମାନ । ଏହାଙ୍କ ଆବିର୍ଭାବ ଇତିହାସ ସମ୍ବନ୍ଧରେ ନାନା ମତ ପ୍ରଚଳିତ ଅଛି । କିନ୍ତୁ ସେଗୁଡ଼ିକ ନିଶ୍ଚିତ ମୂଳ ନୁହନ୍ତି । ଯେମନ୍ତ ପୁରୀ, ପୁରୁଷୋତ୍ତମଧାମ, ନୀଳାଚଳ ଜଗନ୍ନାଥ ଦେବ, ନାମର ପ୍ରକାଶ ସମୟ ସ୍କନ୍ଦପୁରାଣ, ପଦ୍ମପୁରାଣ ପ୍ରଭୃତିରେ ଯାହା ଲିଖିତ ଅଛି, ତାହା ଏ ଯୁଗୀୟ ନୁହେ ବୋଲି ବହୁ ପଣ୍ଡିତମାନଙ୍କର ମତ । ନୀଳମାଧବ ସୃଷ୍ଟି ଆରମ୍ଭରୁ ଏହି ଅଚଳରେ ଇନ୍ଦ୍ରନୀଳମଣି ବିଗ୍ରହ ଏକ ମୂର୍ତ୍ତିଧର ହୋଇ କେବଳ ଦେବପୂଜ୍ୟ, ଲୋକାବନ୍ଦିତ ଥିଲେ । କ୍ରମେ ବ୍ରହ୍ମାଙ୍କର ପ୍ରଥମ ପରାର୍ଦ୍ଧ ଶେଷରେ ଲୋକବନ୍ଦିତ ହେବାରୁ ଅନ୍ତର୍ହିତ ହେଲେ । ପରେ ମାଳବଦେଶୀୟ ଇନ୍ଦ୍ରଦ୍ୟୁମ୍ନ ଭକ୍ତାଗ୍ରଣୀ ମହାରାଜ ବିଷ୍ଣୁସମେତ ଏଠାକୁ ଆସିବା ସମୟରେ ନୀଳମାଧବଙ୍କର ଅନ୍ତର୍ଦ୍ଧାନ ଏବଂ ବ୍ରହ୍ମାଙ୍କର ପ୍ରଥମ ପରାର୍ଦ୍ଧ ଶେଷ । ପରେ ପ୍ରଭୁଙ୍କର ଅନ୍ତର୍ଦ୍ଧାନରେ ମୂର୍ଚ୍ଛିତ ହୋଇ, ଉତ୍ପାତ-ପଥ ମଧ୍ୟରେ ଦର୍ଶନ କରି ଅଚେତନ ଅବସ୍ଥାରେ ପତିତ ହୋଇଥିବା ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କୁ ବ୍ରହ୍ମାଙ୍କ ପ୍ରେରିତ ନାରଦ ସଚେତନ କରି ନିମ୍ନୋକ୍ତ ବାଣୀ ଶୁଣାଇଥିଲେ । "ଆପଣଙ୍କର କୀର୍ତ୍ତି ମହିମା ଦାରୁ ମୂର୍ତ୍ତିରେ ବା ଦାରୁବ୍ରହ୍ମରେ ସେହି ନୀଳମାଧବ ରୂପରେ ପ୍ରକଟିଇବେ ।" ଆପଣଙ୍କର ଅକ୍ଷୟ କୀର୍ତ୍ତି ଚିରକାଳ ଧରି ଭାସ୍ୱର ରହିବ । ଏଣୁ ଆପଣ ଉକ୍ତ ସ୍ଥାନକୁ ଯାଇ ବିଧିମତ ଅଶ୍ୱମେଧ ଯଜ୍ଞ ଆରମ୍ଭ କରନ୍ତୁ ।"

Digitized by srujanika@gmail.com

ଅଶ୍ୱମେଧ ଯଜ୍ଞ ଶେଷରେ ସ୍ୱପ୍ନରେ ଶ୍ୱେତଦ୍ୱୀପ ଦର୍ଶନ ଓ ଦିବ୍ୟଦାରୁ ଦର୍ଶନାତ୍ମକ ବୈକୁଣ୍ଠଲୋକ ଯଜ୍ୱା (ଯଜ୍ଞ କରିଥିବା) ଇନ୍ଦ୍ରଦ୍ୟୁମ୍ନ ନରପତିଙ୍କ ହୃଦୟରେ ନିଶାନ୍ତରେ ପ୍ରକାଶିତ ହେଲା । ପରେ ନାରଦଙ୍କ ସାହଚର୍ଯ୍ୟରେ ସ୍ୱପ୍ନଦୃଷ୍ଟ ବୈକୁଣ୍ଠାଗତ ଶଙ୍ଖଚକ୍ରାଙ୍କିତ ଦିବ୍ୟଦାରୁ ଆୟତନ କରି ଯଜ୍ଞ ଶାଳାରେ ରଖିଲେ । ଦାରୁମୂର୍ତ୍ତି କପରି ରୂପ ଧାରଣ କରିବେ, ଏହି ଚିନ୍ତା ସମ କାଳରେ ଜନୈକ ବୃଦ୍ଧ ଦୈବବର୍ଦ୍ଧକୀ ଉପସ୍ଥିତ ହୋଇ ମୂର୍ତ୍ତି ନିର୍ମାଣ କାର୍ଯ୍ୟରେ ଲଗିଲେ ଓ ରହସ୍ୟ ଭାବରେ ଦୀର୍ଘ ପନ୍ଦର ଦିନଯାଏ ରୁଦ୍ଧକପାଟ ଅବସ୍ଥାରେ ମୂର୍ତ୍ତି ନିର୍ମାଣ କାର୍ଯ୍ୟ ସମ୍ପନ୍ନ କଲେ । ତଦନୁସାରେ ପକ୍ଷାନ୍ତରେ ରୁଦ୍ଧକପାଟ ଉନ୍ମୁକ୍ତ କରି ବୈଷ୍ଣବୋତ୍ତମ ଇନ୍ଦ୍ରଦ୍ୟୁମ୍ନ ଏହି ଚତୁର୍ଦ୍ଧାମୂର୍ତ୍ତି ଦେଖି ସାଷ୍ଟାଙ୍ଗ ପ୍ରଣିପାତ କଲେ । ଏହାହିଁ ସଂକ୍ଷେପରେ ଶାସ୍ତ୍ର ସିଦ୍ଧାନ୍ତ, ଆମର ପୁରୀ ଓ ନୀଳାଚଳସ୍ଥ ଜଗନ୍ନାଥ ଦେବଙ୍କ ଇତିହାସ । ଏପରି ସ୍ଥଳରେ ଏହାଙ୍କୁ ଦଶାବତାର ମଧ୍ୟରେ ବୌଦ୍ଧ ବୋଲି ନିରୂପଣ ଓ କଳ୍ପନା କରିବା କେତେଦୂର ଅସଙ୍ଗତ, ତାହା ବିବେକୀ ମାନେ ହୃଦୟଙ୍ଗମ କରିବେ । ପୁନଶ୍ଚ 'ପଦ୍ମପୁରାଣ'ରେ ଦେଖାଯାଏ ଯେ, ରାମଚନ୍ଦ୍ରଙ୍କ ଅଶ୍ୱମେଧୀୟ ଅଶ୍ୱର ସେନାପତି ରୂପେ ଏହି ସୌରଗାମୀ ଯଜ୍ଞର (ଯଜ୍ଞାଶ୍ୱ) ସୈନ୍ୟାଧିଷ୍ଠାତା ଶତ୍ରୁଘ୍ନ ଥାଇ ନୀଳାଚଳାରଣ୍ୟରେ ପ୍ରବିଷ୍ଟ ଅଶ୍ୱର ଅନୁସରଣକ୍ରମେ ଉତ୍କଳରେ ନୀଳମାଧବଙ୍କୁ ଦର୍ଶନ କରି ସ୍ତୁତି କରିବା ପରିଦୃଷ୍ଟ ହୁଏ । ଅତଏବ ପୂର୍ବରୁ ପ୍ରକାଶିତ ବୌଦ୍ଧ ବା ଜୈନାବତାରର ମତାମତ ସମ୍ପ୍ରସନ୍ନ ନୁହେ । ଆଉ ମଧ୍ୟ ବୌଦ୍ଧାଦି ଅବତାର ଏ ଯୁଗର । ଏ ଅବତାର ଉତ୍ପତ୍ତିର କାଳାଦି ନିରୂପିତ ଅଛି । ମାତ୍ର ଜଗନ୍ନାଥ ଦେବ ପୁରାଣୋକ୍ତ ଯୁଗର ଦେବତା ବୋଲି ଖ୍ୟାତ । ନିତ୍ୟ ଓ ଗୋପ୍ୟସ୍ଥଳୀ ପୁରୀ ତଥା ନୀଳାଚଳର ଶ୍ରୀ ଜଗନ୍ନାଥ କେଉଁ ଅନାଦିକାଳର ଦେବତା । ବିଭିନ୍ନ ଅବତାରମାନଙ୍କର ଦେଶ, ସ୍ଥାନ, କାଳ ନିରୂପିତ ଅଛି ଓ ସୃଷ୍ଟିର ଉଦ୍ଦେଶ୍ୟକ କାର୍ଯ୍ୟ ମଧ୍ୟ ବର୍ଣ୍ଣିତ ଅଛି । ମାତ୍ର ପୁରୁଷୋତ୍ତମ ଜଗନ୍ନାଥଙ୍କ ନିକଟରେ ସେପରି କିଛି ଉଲ୍ଲିଖିତ ଥିବାର ବୋଧହୁଏ ନାହିଁ । ଅଥଚ ସର୍ବାବତାରଙ୍କ କାର୍ଯ୍ୟ ଉତ୍ସବ ଏ ସ୍ଥଳରେ ଶ୍ରୀ ଜଗନ୍ନାଥ ଦେବଙ୍କ ଆଜ୍ଞାରେ ଅନୁଷ୍ଠିତ ହୋଇଥାଏ । ଉଦାହରଣ ସ୍ୱରୂପ ଜଗନ୍ନାଥ ଦେବଙ୍କ ଆଜ୍ଞାମାଳ ଗଲେ ରାମ ନୃସିଂହାଦି ଅବତାର ମାନଙ୍କର ସମସ୍ତ ଜନ୍ମବିଧି ସମ୍ପାଦିତ ହୁଏ । ବିଶେଷତଃ ବୁଦ୍ଧଙ୍କର ଜନ୍ମକାଳ ଓ ତାଙ୍କ ଧର୍ମର ବିକାଶ କଳିକାଳରେ । ମାତ୍ର ଜଗନ୍ନାଥ ଦେବଙ୍କୁ କୌଣସି କାଳଦ୍ୱାରା କଳନା କରି ହେବ ନାହିଁ ।

Digitized by srujanika@gmail.com

ଭାଗବତରେ ଅଛି—

"ତତଃକଲୌଃ ସମ୍ପ୍ରବୃତ୍ତେଃ
ସମ୍ମୋହାୟ ସୁରଦ୍ୱିଷାମ୍
ବୁଦ୍ଧୋ ନାମ ଜନସୁତଃ
କୀକଟେଷୁ ଭବିଷ୍ୟତି ।"
(କୀକଟେଷୁ—ଗୟା ପ୍ରଦେଶରେ)

ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଯେତେବେଳେ ଦାରୁ ମୂର୍ତ୍ତିର ପ୍ରତିଷ୍ଠା ହୁଏ, ସେତେବେଳେ ଦେବବର୍ଦ୍ଧକୀ ନିର୍ମିତ ଦାରୁବ୍ରହ୍ମଙ୍କର ପ୍ରତିଷ୍ଠାର ଅଙ୍ଗ ଭାବରେ ରଥ ମଧ୍ୟ ନିର୍ମିତ ହୋଇଥିଲା । ଏବେ ବି ସବୁବି କୌଣସି ମନ୍ଦିର ବା ଦେବୀଙ୍କର ପ୍ରତିଷ୍ଠା ହେଲେ ସେହି ପ୍ରତିଷ୍ଠାର ଅଙ୍ଗ ସ୍ୱରୂପ ରଥ ବିହିତ ରହିଥାଏ । ସେହି ଯଜ୍ଞବେଦୀ ନିର୍ମିତ ରଥ ନୀଳାଚଳ ନିର୍ମିତ ମନ୍ଦିରକୁ ଆନୀତ ହୋଇଥିଲା । ସେହି ଆନୟନ କାଳରୁ ଓ ତାର ସ୍ମାରକୀ ସ୍ୱରୂପ ଏ ପର୍ଯ୍ୟନ୍ତ ରଥଯାତ୍ରା ପ୍ରଚଳିତ ।

ଯଜ୍ଞବେଦୀ ଅର୍ଥାତ୍ ଗୁଣ୍ଡିଚା ଘରଠାରୁ ନୀଳାଚଳ ମନ୍ଦିର ପର୍ଯ୍ୟନ୍ତ ଏ ଯେଉଁ ରଥୋତ୍ସବ ନବଦିନବ୍ୟାପୀ ସଂଘଟିତ ହୁଏ, ତାହାର ଇତିହାସ ଖୋଜିବାକୁ ହେଲେ ଯଜ୍ଞବେଦୀର ପ୍ରତିଷ୍ଠାର ସମୟ ଓ କାଳକୁ ଧରିବାକୁ ହେବ । ବାସ୍ତବିକ ପ୍ରତ୍ୟେକ ଦେବମୂର୍ତ୍ତି ପ୍ରତିଷ୍ଠାରେ ରଥନିର୍ମାଣ ଶାସ୍ତ୍ରସିଦ୍ଧ । ଏହି ରଥ ଦୃଷ୍ଟିରୁ ଜଗନ୍ନାଥଙ୍କୁ ବୌଦ୍ଧ ରୂପରେ ନିରୂପିତ କରିବା ସମୀଚୀନ ନୁହେଁ । ବେଦରେ ମଧ୍ୟ ଦେବତାମାନେ ଏହି ରଥରେ ବିଚରଣ କରୁଥିବାର ପ୍ରମାଣ ରହିଛି ।

ବୌଦ୍ଧୀୟ ରତ୍ନତ୍ରୟଯୁକ୍ତ ସମନ୍ୱୟ କରି ଜଗନ୍ନାଥ, ବଳଭଦ୍ର, ଓ ସୁଭଦ୍ରାଙ୍କୁ ତଦ୍ରୂପରେ ପ୍ରତିପାଦନ କରିବା ଅସଙ୍ଗତ ଯେହେତୁ ଚତୁର୍ଦ୍ଧାମୂର୍ତ୍ତି ରୂପେ ମୂଳତଃ ଜଗନ୍ନାଥ ପ୍ରକାଶିତ । ସୁତରାଂ ଏହା ସ୍ପଷ୍ଟ ଯେ, ଜଗନ୍ନାଥ ବୌଦ୍ଧରୂପୀ ନୁହଁନ୍ତି । ସେ କୌଣସି ଅବତାର ନୁହଁନ୍ତି—ସେ ଅବତାରୀ । ଭକ୍ତ ଦିବାକର ଦାସଙ୍କ ମତରେ—

"ଜଗନ୍ନାଥ ଯେ ପୋଳକଳା
ତହିଁରୁ କଳା ନନ୍ଦବଳା,
କଳାକୁ ଷୋଳକଳା କରି
ଗୋପେ ବିହରେ ନନ୍ଦ ହରି ।"

Digitized by srujanika@gmail.com

ପ୍ରସିଦ୍ଧ ଯୋଗୀପ୍ରବର ଭକ୍ତଶିରୋମଣି ଅଚ୍ୟୁତାନନ୍ଦ କହନ୍ତି—
"ଅବତାର ଦଶ ଏହି ଦାରୁ ରୂପ ଏହି ଦାରୁରେ ଦଶ ଲୀନ
ଈଶ୍ୱର ସାକ୍ଷାତେ ନିରାକାର ନିମନ୍ତେ ବିଜେ ରତ୍ନ ସିଂହାସନ।"
ଏହା ହିଁ ଶେଷ କଥା।

କେହି କେହି ନାଥ, ନନ୍ଦିବନ୍ଧ ଓ କୈବଲ୍ୟ ମୁକ୍ତିର ଦୋହାଇ ଦେଇ ଜଗନ୍ନାଥଙ୍କୁ ଜୈନ ବିଗ୍ରହ ବୋଲି ଅବଧାରଣା କରିବାକୁ ଯୁକ୍ତି ବାଢ଼ି ଥାନ୍ତି ଏବଂ ମନ୍ଦିରର ଶାଖାଚୂଡ଼ା ମିଥୁନମୂର୍ତ୍ତିଙ୍କୁ ମଧ୍ୟ ତାହାର ପୋଷକ ଭାବେ ନିର୍ଦ୍ଦେଶ କରିଥାନ୍ତି। ତାହା ମଧ୍ୟ ଯୁକ୍ତିଯୁକ୍ତ ନୁହେଁ।

ବର୍ତ୍ତମାନ 'ନାଥ' ଶବ୍ଦର ବିଚାର କରାଯାଉ। ନାଥ ଶବ୍ଦ କେବଳ ଜୈନ ବ୍ୟବହୃତ ନୁହେ; ଏହି 'ନାଥ' ଧାତୁ ଯାଚଞାର୍ଥକ ବୋଲି ପାଣିନୀଙ୍କ ଦ୍ୱାରା ଘୋଷିତ। ନାଥ ସ୍ୱାମୀ ଅର୍ଥରେ ମଧ୍ୟ ବ୍ୟବହୃତ। ପ୍ରକୃତ ନାଥ ଶବ୍ଦଟି ଉପାସ୍ୟପର—ଏହା ମଧ୍ୟ ପାଣିନୀଙ୍କ ମତ। ତେଣୁ ନାଥ ଶବ୍ଦ ପ୍ରାର୍ଥନୀୟ ପର ହେବାରୁ ଉପାସ୍ୟ ଦେବମାନଙ୍କଠାରେ ନାମତଃ ପ୍ରୟୋଗ ହୋଇଥାଏ। ଏହି ଶବ୍ଦଟି ଆମ ଧର୍ମଭୂମି ଭାରତରେ ପ୍ରାୟଶଃ ପ୍ରଚଳିତ। ଉତ୍ତରାଞ୍ଚଳର ହିମାଳୟ ନିକଟବର୍ତ୍ତୀ ବଦ୍ରିନାଥ, କେଦାରନାଥ, ଅମର-ନାଥ, ତୁଙ୍ଗନାଥ, କାଶୀ ବିଶ୍ୱନାଥ, ପ୍ରସିଦ୍ଧ ସୋମନାଥ, ଗୋପୀନାଥ, ଲୋକନାଥ ପ୍ରଭୃତି ପ୍ରସିଦ୍ଧ ବହୁ ନାମ ଦେବନାମାଙ୍କିତ ହୋଇ ରହିଅଛି। ଏମାନେ କଅଣ ଜୈନ ଦେବତା ?

ବସ୍ତୁତଃ ଜଗତର ପ୍ରାର୍ଥନୀୟ ରୂପେ ଜଗନ୍ନାଥ ଶବ୍ଦ ନିରୂଢ଼ ରହି-ଅଛି। ଏ ଜଗତରୂପୀ ନାଥ ନୁହନ୍ତି, ବରଂ ଜଗତର ନାଥ ଜଗତଃ ନାଥ। ଜଗତର ଉପାସ୍ୟ-ଦେବତା ଷଷ୍ଠୀ ତତ୍ପୁରୁଷ ନ ହୋଇ ଯଦି କେବଳ ରୂପକ କର୍ମଧାରୟ ରୂପେ ଧରାଯାଏ, ତେବେ ଜଗନ୍ନାଥ ଦେବଙ୍କର ନାମ ଓ ମହାତ୍ମ୍ୟର ପୁଷ୍ଟି ଖଣ୍ଡିତ ହେଉଅଛି। କାରଣ ଜଗତ ଶବ୍ଦର ଅର୍ଥ ଗତି-ଶୀଳ ସଂସାର। ଗଚ୍ଛତୀତି ଜଗତ। ଏହି ସଂସାର ଅନନ୍ତ ହେଲେ ମଧ୍ୟ **ଆଦ୍ୟନ୍ତ-ବିଶିଷ୍ଟ—କେବଳ ପ୍ରବାହ ରୂପରେ ଅନାଦି।** ଏ ତୁଳନାରେ ଏହାର ସାଦୃଶ୍ୟ ଅଖିଳ ବ୍ରହ୍ମାଣ୍ଡ ନାୟକ, ପ୍ରକୃତି ପୁରୁଷାଧୀଶ, ଗୀତୋକ୍ତ, କ୍ଷରକ୍ଷରାତୀତ, ପୁରୁଷୋତ୍ତମ ଜଗନ୍ନାଥ ଦେବଙ୍କଠାରେ କେତେ ଯେ ନ୍ୟୂନ ଓ ଅସଙ୍ଗତ, ତାହା କେବଳ ବିପଶ୍ଚିତବର୍ଗଙ୍କର ବିବେଚ୍ୟ। ଉକ୍ତ ରୂପକ ସମାସ ନିଷ୍ପନ୍ନ ଲୋକାୟତ ବା ତଥାଗତ ମତଟି ବହୁ ପ୍ରାଚୀନ। ଏହା ମଧ୍ୟ ବାଲ୍ମୀକି ରାମାୟଣର ଅଯୋଧ୍ୟାକାଣ୍ଡରେ ଉଲ୍ଲିଖିତ ରହିଅଛି। ସମ୍ୟକ୍ଦର୍ଶନ,

Digitized by srujanika@gmail.com

ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଚରିତ୍ର—ଏହି ରତ୍ନତ୍ରୟ ଯାହାଙ୍କ ପ୍ରସାଦରେ ବା ଯାହାଙ୍କ ଆଶ୍ରୟରେ ଏ ବିରାଟ ଜଗତରେ ଆଭାସିତ, ସେହି ଆମର ନୀଳାଚଳସ୍ଥ ଶ୍ରୀ ଜଗନ୍ନାଥ। ଅନାଦି ନିଗମାଗମ ସିଦ୍ଧ ଏହି ମୂର୍ତ୍ତି ଚତୁଷ୍ଟୟ ଚତୁର୍ବ୍ୟୂହ ଅଟନ୍ତି । ପାଞ୍ଚରାତ୍ର ମତ ଏହାଙ୍କର ପୂଜାପଦ୍ଧତି ଆବହମାନ-କାଳରୁ ପ୍ରଚଳିତ ହୋଇ ଆସୁଅଛି । ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ରୂପେ ଚତୁର୍ବ୍ୟୂହ ଏହି ଚତୁର୍ଦ୍ଧା ମୂର୍ତ୍ତି । ବାସୁଦେବ—ପରମାତ୍ମା ଜଗନ୍ନାଥ। ସଙ୍କର୍ଷଣ—ମହତତ୍ତ୍ୱ ବଳଭଦ୍ର । ପ୍ରଦ୍ୟୁମ୍ନ—ଅହଙ୍କାର ବା ସୁଭଦ୍ରା । ଅନିରୁଦ୍ଧ—ମନ ବା ସୁଦର୍ଶନଚକ୍ର । ଜଗନ୍ନାଥ—ସୂକ୍ଷ୍ମ ଜଗତର ଅଧୀଶ୍ୱର । ବଳଭଦ୍ର—ସ୍ଥୂଳ ବା ବିରାଟ ଜଗତର ଅଧୀଶ୍ୱର । ସୁଭଦ୍ରା—ଉଭୟ ଜଗତର ଶକ୍ତିରୂପା ବା ଶକ୍ତିର ଅଧିଷ୍ଠାତ୍ରୀ ଦେବୀ ; ତେଣୁ ମଧ୍ୟସ୍ଥିତା । ସୁଦର୍ଶନ—କାଳତତ୍ତ୍ୱ ବା ଶକ୍ତିର ପ୍ରଥମ ସ୍ଫୁରଣ । ସର୍ବ ପ୍ରବୃତ୍ତିର ମୂଳ କାରଣ ହେଉଛି କାଳ—ସେ ପ୍ରଥମ ସୃଷ୍ଟି, ତେଣୁ ସୁଦର୍ଶନଙ୍କୁ ପ୍ରଥମରେ ହିଁ ରଥକୁ ନିଆଯାଏ । ଆଉ ଏକ ଦୃଷ୍ଟିରୁ ବିଚାର କଲେ ଦେଖାଯାଏ—

ବଳଦେବ—ଶେଷ ଦେବ । ସର୍ବାଧାର ବା ସଦାଶିବ ।
ଜଗନ୍ନାଥ—ଜଗଦୀଶ୍ୱର ।
ସୁଭଦ୍ରା—ପରମାଶକ୍ତି ବିଶେଷ ।
ସୁଦର୍ଶନ—ଶକ୍ତିର ପ୍ରଥମ ତତ୍ତ୍ୱ ବା ପ୍ରାଥମିକ ବିକାଶ ।
ସୁଭଦ୍ରାଙ୍କ ସମ୍ବନ୍ଧରେ ନିମ୍ନୋକ୍ତ ଶ୍ଳୋକାଂଶଟି ପ୍ରଯୋଜ୍ୟ—
"ନାନାବିଧ ଶକ୍ତିମୟୀ ମା ଜନୟିତ୍ରୀ
କାଳତତ୍ତ୍ୱ ମେବାଦୌ ।" (ମନୁ) ।

ଦୁଇଟି ଅଜ୍ଞେୟ ଜ୍ଞାନାତୀତ ବସ୍ତୁର ପ୍ରକାଶିକା ଶକ୍ତି ହିଁ ସୁଭଦ୍ରା । ତେଣୁ ସେ ମଧ୍ୟସ୍ଥିତା । ଆତ୍ମା ବା ଜୀବ ବିନା ଶକ୍ତିରେ ପ୍ରକାଶିତ ହୁଅନ୍ତି ନାହିଁ । ପୁନଶ୍ଚ ତାତ୍ତ୍ୱିକ ଦୃଷ୍ଟିରୁ ଦେଖିଲେ ଜଗନ୍ନାଥ ଅବ୍ୟକ୍ତ ପୁରୁଷ । ସେହି ଅବ୍ୟକ୍ତ ସ୍ୱରୂପ ଶ୍ରୀ ଜଗନ୍ନାଥ ନିଜର ଇଚ୍ଛାରୂପିଣୀ ଶକ୍ତି ସୁଭଦ୍ରା ଓ ବିରାଟରୂପୀ ବଳଭଦ୍ର ରୂପେ ବ୍ୟକ୍ତ ହୋଇ ଅଛନ୍ତି ।

"ଏକୋଽହଂ ବହୁସ୍ୟାମ୍ ପ୍ରଜାୟେୟଃ"

ଅର୍ଥାତ୍ ସେହି ଅବ୍ୟକ୍ତ, ଅଜ୍ଞେୟ, ଅଦ୍ୱିତୀୟ ପୁରୁଷ ସୃଷ୍ଟି ଆରମ୍ଭରୁ ବିଶ୍ୱବ୍ୟକ୍ତ ପାଇଁ ଯେଉଁ ଏକୋଽହଂ ବହୁସ୍ୟାମ୍ ପ୍ରଜାୟେୟଃ ଇଚ୍ଛା ଦ୍ୱାରା ନିଜର ଅବ୍ୟକ୍ତ

Digitized by srujanika@gmail.com

ଅବସ୍ଥାକୁ ବ୍ୟକ୍ତ କରିବା ଇଚ୍ଛାରେ ଅର୍ଦ୍ଧେକ ନାରୀ ଓ ଅର୍ଦ୍ଧେକ ପୁରୁଷ ରୂପେ ବ୍ୟକ୍ତ ହେଲେ, ସେହି ଆମର ଜଗନ୍ନାଥ ଦେବ। ସେହି ବ୍ୟକ୍ତାବସ୍ଥାର ପ୍ରକାଶିକା ଶକ୍ତି ସୁଭଦ୍ରା ଓ ବିରାଟ ସ୍ଥୂଳଜଗତ ବଳଭଦ୍ର ଏବଂ ସୃଷ୍ଟିର କାଳଚକ୍ର ସୁଦର୍ଶନ ରୂପରେ ପ୍ରକାଶିତ। ମନୁ ଲେଖିଛନ୍ତି—

"ଦ୍ୱିଧା କୃତାତ୍ମନୋ ଦେହ ମର୍ଦ୍ଧେନ ପୁରୁଷୋଽଭବତ୍।
ଅର୍ଦ୍ଧେକ ନାରୀ ତସ୍ୟାଂମ ବିରାଜଂମ ସୃଜତ୍ ପ୍ରଭୁ।"

ଏହି ସ୍ଥୂଳ ବିରାଟ ବ୍ରହ୍ମାଣ୍ଡର ଶକ୍ତି ପାଇଁ ସେହି ଅବ୍ୟକ୍ତ ସ୍ୱୟମ୍ଭୂ ମିଥୁନ ଭବାପନ୍ନ ହୋଇ ବିଭିନ୍ନ ରୂପରେ ପ୍ରକଟିତ। ଏହାକୁ ଆହୁରି ସରଳ ଭାବରେ ପ୍ରକାଶ କରିବାକୁ ହେଲେ କୁହାଯାଇପାରେ ଯେ, ଏହି ସ୍ଥୂଳ ବିରାଟ ବିଶ୍ୱବ୍ରହ୍ମାଣ୍ଡର ପ୍ରକାଶ ପାଇଁ ଯେଉଁ ଅବ୍ୟକ୍ତ ସ୍ୱୟମ୍ଭୂ ନିଜ ସ୍ୱରୂପକୁ ଦ୍ୱିଧା ମିଥୁନାତ୍ମକ କରି ବିରାଟ ପୁରୁଷକୁ ନିର୍ମାଣ କଲେ, ସେହି ଆମର ପରମବ୍ରହ୍ମ ଜଗନ୍ନାଥ। ତାଙ୍କଠାରେ ହିଁ ସମସ୍ତ ଲୀନ। ମହାପ୍ରଳୟ ସମୟରେ ସେ ଅଦ୍ୱିତୀୟ ଥିଲେ। ଯେତେବେଳେ ସୃଷ୍ଟି ବିଷୟକ ଇଚ୍ଛା ଅର୍ଥାତ୍ ଅଭିନ୍ନ ମାୟା ଶକ୍ତିର ସ୍ପନ୍ଦନ ହେଲା, ସେତେବେଳେ ସ୍ଥୂଳ, ସୂକ୍ଷ୍ମ ସର୍ବ ଜଗନ୍ନିଦାନ ମହତ୍ ତତ୍ତ୍ୱ ଯେଉଁ ବଳଭଦ୍ର—ସେ ଆବିର୍ଭୂତ ହେଲେ। ସେ ବିଶୁଦ୍ଧ ସତ୍ତ୍ୱ-ମୟ, ସର୍ବଜଗତର ସ୍ଥିତିକର୍ତ୍ତା, ତେଣୁ ଶୁକ୍ଳବର୍ଣ୍ଣ।

ସମସ୍ତ ଜଗତର ସର୍ବ କ୍ରିୟାକାରିଣୀ ଶକ୍ତି ସୁଭଦ୍ରା ପୀତବର୍ଣ୍ଣାମୟୀ ହୋଇ ପ୍ରକଟିତ। ସେ ରଜୋଗୁଣମୟୀ।

ସର୍ବ ଜଗତର ମହାପ୍ରଳୟରେ ସ୍ୱୟଂ ଅଧିଷ୍ଠାନ ସେହି ସ୍ୱୟମ୍ଭୂ ଜଗନ୍ନାଥ କୃଷ୍ଣବର୍ଣ୍ଣ।

ସେ ଲୟାଧାର ହେତୁ କୃଷ୍ଣବର୍ଣ୍ଣ ବିଶିଷ୍ଟ।

"କୃଷ୍ଣଂ ଚ ବର୍ଣ୍ଣଂ ତମସା ଜନାତ୍ୟୟେ"

ସମସ୍ତ ବର୍ଣ୍ଣ କୃଷ୍ଣବର୍ଣ୍ଣରେ ହିଁ ଲୀନ ହୁଏ। ମହତ୍ତତ୍ତ୍ୱର ପରେ ଅହଙ୍କାରର ଉତ୍ପତ୍ତି ; ତେଣୁ ସୁଭଦ୍ରାଙ୍କୁ କେହି କେହି ବଳଭଦ୍ରଙ୍କ ଭଗ୍ନୀ ବୋଲି କହିଥାନ୍ତି। ଏହା ମଧ୍ୟ ଗ୍ରହଣୀୟ। କାରଣ ସୁଭଦ୍ରା ଅହଂତତ୍ତ୍ୱ ରୂପିଣୀ ପ୍ରଦ୍ୟୁମ୍ନ ବ୍ୟୁହ ଅଟନ୍ତି।

ଅନିରୁଦ୍ଧ ମନରୂପୀ, ତାହା ସୁଦର୍ଶନ ଚକ୍ର। ତାହା ସର୍ବଥା ଓ ସର୍ବଦା ଜଗନ୍ନାଥଙ୍କ ସଙ୍କଳ୍ପ ରୂପ ସିଦ୍ଧିକର୍ତ୍ତା। ସତତ ସନ୍ନିହିତ ହୋଇଥାନ୍ତି।

Digitized by srujanika@gmail.com

ତୃତୀୟ ବ୍ୟୁହ ଅଖିଳ ଶକ୍ତିମୟୀ ସୁଭଦ୍ରା । ଅହଂ ତତ୍ତ୍ୱ ରୂପିଣୀଙ୍କ-ଠାରୁ ଚତୁର୍ଥ ବ୍ୟୁହ ଭଗବାନଙ୍କ ମନ ବା କାଳତତ୍ତ୍ୱ ସୁଦର୍ଶନଙ୍କ ଆବିର୍ଭାବ । ଏକରୁ ବହୁ ହେବାର ଯେଉଁ ସରଣୀ, ତାହା ଏରୂପେ ପ୍ରକାଶ କରାଯାଇ-ପାରେ ଯେ, ଅବ୍ୟକ୍ତ ଜ୍ଞାନାତ୍ମକଙ୍କର ବହୁ ହେବାର ଇଚ୍ଛା; ମାତ୍ର ନିଜଠାରେ ମହାପ୍ରଳୟ ଦଶାରେ ଲୀନ ଥିବା ଅନନ୍ତ ଶକ୍ତିର ପ୍ରେରଣା ବା ଇଚ୍ଛା ହିଁ ପ୍ରକଟିତ ।

ପରମବ୍ରହ୍ମ ଭଗବାନଙ୍କ ଶକ୍ତି ତ୍ରିବିଧ । (୧) ଇଚ୍ଛା ଶକ୍ତି, (୨) ଜ୍ଞାନ ଶକ୍ତି, (୩) କ୍ରିୟା ଶକ୍ତି । ପରମାତ୍ମା ଅବ୍ୟକ୍ତରୂପୀ ଜଗନ୍ନାଥ-ଙ୍କର ତ୍ରିବିଧ ଶକ୍ତିର ପ୍ରକାଶ—ଏ ପବିତ୍ର ପୀଠରେ ସ୍ଫୁଟ ହୋଇଅଛି । ତାଙ୍କର ଜ୍ଞାନଶକ୍ତି—ମହତତତ୍ତ୍ୱରୂପୀ ସଙ୍କର୍ଷଣ ବଳଭଦ୍ର ।

ଇଚ୍ଛାଶକ୍ତି—ଅହଂ ତତ୍ତ୍ୱରୂପା ସୁଭଦ୍ରା ।
କ୍ରିୟାଶକ୍ତି—ମନସ୍ତତ୍ତ୍ୱାତ୍ମକ ସୁଦର୍ଶନ କାଳତତ୍ତ୍ୱ ଅଟନ୍ତି ।

ତେଣୁ ଏ ଶକ୍ତିପୀଠ ବୋଲି ପ୍ରସିଦ୍ଧ । ମୋଟ ଉପରେ ଏହା ଭଗବତ୍ ସୃଷ୍ଟିର ମୌଳିକ ବା ତାତ୍ତ୍ୱିକ ପ୍ରକାଶ । ପଣ୍ଡିତମାନେ ଏହାର ବିଚାର କରିବେ । ମନ୍ଦିର ନିର୍ମାଣ—ଶିଳ୍ପ ଶାସ୍ତ୍ରାନୁଯାୟୀ ଏ ମନ୍ଦିର ନିର୍ମିତ । ଏଥିରେ ମିଥୁନ ମୂର୍ତ୍ତିର ନିବେଶ ଶିଳ୍ପ ଶାସ୍ତ୍ରାନୁମୋଦିତ । ଏହି ରେଖ ମନ୍ଦିର ତିନୋଟି ସ୍ତର ବା ମୁଦରେ ମୁଦ୍ରିତ । ପ୍ରଥମ ସ୍ତର ବାଳମୁଦ, ୨ୟ ସ୍ତର ଧାନ୍ୟ ମୁଦ, ୩ୟ ରତ୍ନ ମୁଦ । ଯଥାକ୍ରମେ ତାମସ, ରାଜସ, ସାତ୍ତ୍ୱିକ ମୂର୍ତ୍ତି-ମାନଙ୍କର ନିବେଶ ପରିଦୃଷ୍ଟ । ପଞ୍ଚପର୍ବା ଅବିଦ୍ୟାରୁ ସମସ୍ତ ସୃଷ୍ଟି । ତାର ମୂଳ ତମ ପ୍ରଧାନ କ୍ରିୟା । ଅତଏବ ପ୍ରଥମ କକ୍ଷାରେ ତମ ପ୍ରଧାନ କାର୍ଯ୍ୟର ବ୍ୟଞ୍ଜନା ରହିଅଛି । ଏହାର ମୂଳ ମିଥୁନ ମୂର୍ତ୍ତି । ମୂଳ ମନ୍ଦିର ଓ ଗର୍ଭ ମନ୍ଦିରର ସନ୍ଧି ଶାଖାର ଅଧୋଭାଗରେ ମିଥୁନ ମୂର୍ତ୍ତିମାନଙ୍କର ନିବେଶ ଶିଳ୍ପ ଶାସ୍ତ୍ରାନୁମୋଦିତ ।

"ମିଥୁନୈ ରଥ ବଲ୍ଲଭୈଃ ଶାଖା ଶେଷମ୍ ବିଭୂଷୟେତ୍"

ଆଉ ମଧ୍ୟ ଶତପଥ ବ୍ରାହ୍ମଣ ଓ ଯାଜ୍ଞବଲ୍କ୍ୟାଦି ସ୍ମୃତି ଶାସ୍ତ୍ରରେ ମିଥୁନ ମୂର୍ତ୍ତି ନିବେଶରେ ବଜ୍ରପାତ ନିବାରଣ ହୁଏ ବୋଲି ଉଲ୍ଲିଖିତ ଅଛି । ବୃତ୍ରାସୁର ବଧ ପରେ ବ୍ରହ୍ମହତ୍ୟା ମୂର୍ତ୍ତିମତୀ ହୋଇ ଇନ୍ଦ୍ରଙ୍କୁ ନ ଛାଡ଼ିବାରୁ ସ୍ୱୟଂ ବ୍ରହ୍ମା ଉପସ୍ଥିତ ହୋଇ ବ୍ରହ୍ମହତ୍ୟାକୁ ଚତୁର୍ଦ୍ଧା ଭୂମି, ଜଳ, ଦ୍ରୁମ ଏବଂ ସ୍ତ୍ରୀଜାତିରେ ବିଭକ୍ତ କରି ପାଦେ ପାଦେ ନିହିତ କରିବାରୁ ସେହି

Digitized by srujanika@gmail.com

ଜଗତ୍‌ମାନଙ୍କ ମନ୍ଦିର ସୃଜଗତ୍ ପାଦବୃନ୍ଦ ଦର୍ଶ୍ୟାକୁ ରକ୍ଷା ଉପରେ ଗ୍ରହଣ କରିବାକୁ ବାଧ୍ୟ ହେଲେ ଏବଂ ଇନ୍ଦ୍ର ଦଞ୍ଜ ବର ଲାଭ କଲେ ।

"ଭବାନୀନାଂ କାମ ହ୍ରହନ୍ତା ପାତକଂ ସ୍ୟାତ୍ ।"

ମିଥୁନାବସ୍ଥାରେ ଶିବ ଭୂମିର କାମଦେବ ନାଶ କରିବ ସେ ପାତକୀ ହେବ । ଏପରିକି ବଜ୍ରଧାରୀ ଇନ୍ଦ୍ରଙ୍କ ବଜ୍ର ମଧ୍ୟ ଭୂମିର ଅନିଷ୍ଟ କରି ପାରିବ ନାହିଁ ।

ବାକି ଦ୍ୱିତୀୟ ସ୍ତରରେ ରଜପ୍ରଧାନ ମୂର୍ତ୍ତିର ନିବେଶ । ତୃତୀୟ ସ୍ତରରେ ସତ୍ତ୍ୱ ପ୍ରଧାନ ମୂର୍ତ୍ତି ; ତେଣୁ ସତ୍ତ୍ୱପ୍ରଧାନ ଦେବତ ମୂର୍ତ୍ତିମାନଙ୍କର ନିବେଶ ହୋଇଅଛି । ସୁତରାଂ ଏ ମନ୍ଦିର ଶାସ୍ତ୍ରୋକ୍ତ ନିୟମାନୁସାରେ ନିର୍ମିତ ହୋଇଥିବାରୁ ଏଥିରେ ଲଗ୍ନ ମିଥୁନ ମୂର୍ତ୍ତି ଦୃଷ୍ଟିରୁ ଜୈନ ମନ୍ଦିର ବା ବୌଦ୍ଧ ମନ୍ଦିର କଳ୍ପନା ସଙ୍ଗତ ନୁହେଁ ।

## ପୂଜା ପ୍ରଣାଳୀ :

ଜଗନ୍ନାଥଦେବଙ୍କ ମନ୍ଦିର ମଧ୍ୟ ଆଗମ ଶାସ୍ତ୍ରାନୁସାରୀ ଅଟେ । ଏହା ଭୈରବୀ ଚକ୍ର ନାମରେ ଖ୍ୟାତ । ଏହାଙ୍କ ପ୍ରସାଦରେ ଜାତିବର୍ଣ୍ଣ ଉଚ୍ଛିଷ୍ଟାଦି ଦୋଷ ନାହିଁ ।

"ବିମଳା ଭୈରବୀ ଶ୍ରୀଜଗନ୍ନାଥଃ
ସାକ୍ଷାତ୍ ଦକ୍ଷିଣ କାଳିକା ।" (ତନ୍ତ୍ର)

ଏହା ଏକ ତାନ୍ତ୍ରିକ ପୀଠ । ଏଠାରେ ପୂଜା ନୈବେଦ୍ୟ ପଦ୍ଧତିରେ ତାନ୍ତ୍ରିକ ନିୟମ ପୂର୍ଣ୍ଣଭାବରେ ନିହିତ । ଏପରିକି ଜଗନ୍ନାଥ ଦେବଙ୍କ ଧୂପରେ ପଞ୍ଚତତ୍ତ୍ୱ ନିଗୂଢ଼ ଭାବରେ ନିହିତ ଏବଂ ପୂଜାବିଧିରେ ଅନ୍ୟାନ୍ୟ ବୀଜମନ୍ତ୍ର ସଙ୍ଘଟିତ ରହିଅଛି ।

## ଅନବସରର କାରଣ :

ପ୍ରତିବର୍ଷ ରଥଯାତ୍ରାର ଅବ୍ୟବହିତ ପୂର୍ବରୁ ସ୍ନାନପୂର୍ଣ୍ଣିମା ପରେ ମହାପ୍ରଭୁଙ୍କର ଯେଉଁ ପନ୍ଦର ଦିନ ଅଦର୍ଶନ ବା ଅନବସର ବା ଅଣସର ପାଳିତ ହୁଏ, ତାର କିଛି ନିଗୂଢ଼ କାରଣ ଅଛି ।

କେହି କେହି କହନ୍ତି ଯେ, ପୁରାଣବର୍ଣ୍ଣିତ ଯେଉଁ ଦିବ୍ୟବର୍ଦ୍ଧକିଙ୍କ ଦ୍ୱାରା ମୂର୍ତ୍ତି ନିର୍ମାଣ କାର୍ଯ୍ୟ ପନ୍ଦର ଦିନ ବ୍ୟାପୀ ହୋଇଥିଲା, ତାହାହିଁ ଏହାର ସ୍ମାରକ । ସମ୍ଭବତଃ ସେହି ସୃଷ୍ଟି ପ୍ରକ୍ରିୟାର ନିଦର୍ଶନ ସ୍ୱରୂପ । ପୁନଶ୍ଚ ସ୍ୟମନ୍ତକ ମଣି ଆନୟନରେ କୃଷ୍ଣଙ୍କ ପାତାଳପୁରରେ ଜାମ୍ବବାନଙ୍କ ସହିତ

Digitized by srujanika@gmail.com

ଅନ୍ଧୋରାତ୍ର ଅନାହାରରେ ଯୁଦ୍ଧ ଘଟିଥିଲା ; ଯହିଁରେ କି 'ହତକୃଷ୍ଣ' ବୋଲି ଦ୍ୱାରକାପୁରରେ ଘୋଷିତ ହୋଇଥିଲା । ଯାହା ଫଳରେ ଯାଦବମାନେ ଫେରି ଦ୍ୱାରକାରେ କୃଷ୍ଣଙ୍କର ତିରୋଭାବ ସମ୍ବାଦ ଦେବାରୁ ପାରତ୍ରିକ କ୍ରିୟା ଅନୁଷ୍ଠିତ ହୋଇଥିଲା । ଏହା ବିଷ୍ଣୁ ପୁରାଣରେ ଅନୁସନ୍ଧେୟ । ଏହାକୁ ଏହି 'ଅନବସର'ର ସଙ୍କେତ ବୋଲି କହିଥାନ୍ତି । କାରଣ କୃଷ୍ଣ ପନ୍ଦର ଦିନ ବ୍ୟାପୀ ଅଦୃଶ୍ୟ ହୋଇ ରହିଥିଲେ ।

## ଜଗନ୍ନାଥଙ୍କ ବିଧି :

ଜଗନ୍ନାଥ ଧର୍ମ ବେଦ ଆଗମୋକ୍ତ ପ୍ରସିଦ୍ଧ ଧର୍ମ । ଏହାଙ୍କର ନୀତି, ପୂଜାପଦ୍ଧତି, ବେଦ, ତନ୍ତ୍ର, ପୁରାଣାଦି ବିଧି ସମ୍ମତ । ଏହି ମୂର୍ତ୍ତିଙ୍କର ପ୍ରତିଷ୍ଠାନ ଓ ପ୍ରତିଷ୍ଠା ଏବଂ ପ୍ରତିଷ୍ଠାବିଧି ଲୋକୋତ୍ତର ଏବଂ ଭାରତରେ ଅନନ୍ୟ ଦେବାଳୟ ପ୍ରଚଳିତ ଅଟେ । ଏହାଙ୍କର ପୂଜାପ୍ରଣାଳୀ ଦେବଦ୍ୱାର କପାଟଫେଟନଠାରୁ ଆରମ୍ଭ କରି ଶୟନ ବିଧି ପର୍ଯ୍ୟନ୍ତ ଯାହା ବିଧିବଦ୍ଧ ଓ ପ୍ରଚଳିତ ତାହାର ବିବରଣ, ସମ୍ପୂର୍ଣ୍ଣ କରି ଦେଖିବା ସମ୍ଭବପର ନୁହେଁ ।

ତେଣୁ ସଂକ୍ଷେପରେ ଲିପିବଦ୍ଧ କରାଯାଇ ପାରେ । ମହାପ୍ରଭୁଙ୍କର ଶଙ୍ଖଧ୍ୱନି, ସ୍ତୁତି, ପୁରଶ୍ଚରଣ, ଦ୍ୱାର ଫିଟିବା ପରେ ମଙ୍ଗଳାରତ୍ରିକ, ଅବକାଶ, ସାଧାରଣ ଦର୍ଶନ (ସାହାଣମେଲା), ତତ୍‌ପର ମହାସ୍ନାନ ପୂର୍ବକ ମୂର୍ତ୍ତିପୂଜା, ଦ୍ୱାରପାଳପୂଜା, ବୈନତେୟ ପୂଜା ସ୍ନାନାନନ୍ତର ପାକଶାଳାରେ ବୈଷ୍ଣବାଗ୍ନି, ହୋମ ଓ ତଦ୍‌ଗ୍ନିରେ ପାକାରମ୍ଭ ଅର୍ଥାତ୍ ଲକ୍ଷ୍ମୀପାକ ହୋଇଥାଏ ।

ପାକ ଜଳ ବାପୀରେ ଧାତୁପାନ ସଂଶ୍ଳିଷ୍ଟ ହୁଏ ନାହିଁ । କେବଳ ନବଘଣ୍ଟ ଉତ୍ତୋଳିତ ଜଳ ପାକଶାଳାରେ ବ୍ୟବହୃତ ହୁଏ । ସେ ପୁଣି ତନ୍ମାତ୍ର କାର୍ଯ୍ୟରେ ସ୍ୱତନ୍ତ୍ର । ତାପରେ ବୈଶ୍ୱଦେବ ପୂର୍ବକ ପାକସିଦ୍ଧି ଆରମ୍ଭ ହୁଏ । ଉକ୍ତ ପାଚନୈବେଦ୍ୟ (ହବ୍ୟ) ମେଧ ଦ୍ରବ୍ୟ ଛଡ଼ା ଅନ୍ୟ ଦ୍ରବ୍ୟାନ୍ତର ପାକଶାଳାକୁ ଯାଏ ନାହିଁ । ପ୍ରଥମ ବାଲଭୋଗ-ଅର୍ଥାତ୍ ବଲ୍ଲଭ ଘରେ ଷୋଡ଼ଶ ଉପଚାରରେ ପ୍ରଥମ ଧୂପ ଏବଂ ସଂଧ୍ୟାଧୂପ ଏହି ନିକାଳଧୂପ ବିହିତ ହୁଏ ଏବଂ ଶେଷରେ ମହାଶୃଙ୍ଗାର ଅର୍ଥାତ୍ ବଡ଼ସିଂହାର ଫୁଲବେଶ ହୋଇ ବଡ଼ସିଂହାର ଭୋଗ ହୁଏ । ପହୁଡ଼ ପୂର୍ବରୁ ଉମ୍ବରୁ ଆସନାରୁଢ଼ ଅର୍ଦ୍ଧନାରୀଶ୍ୱର ମୂର୍ତ୍ତିରେ ପୁଷ୍ପାଞ୍ଜଳି ପଯୁଃଫେଟି ନୈବେଦ୍ୟ ପୂର୍ବକ ସେଉଁ ବିଧି ହୁଏ, ଏହା ଅନ୍ୟ ସ୍ଥାନରେ ଦୁର୍ଲଭ ଏବଂ ରାଜ-ରାଜୋପଚାରରେ

Digitized by srujanika@gmail.com

ଆଦର୍ଶ ଛତ୍ର, ଚାମର, ବାସ, ମୟୂରପିଞ୍ଛ, ତାଳବୃନ୍ତ ଭୃଙ୍ଗାର, ଆଲଟ, ପତଦ୍‌ଗ୍ରାହ (ପିକଦାନୀ), କାହାଳ, ଆଳଧ୍ୱନି, ବାଦ୍ୟ, ଗୀତ ନୃତ୍ୟ, ଜୟଜୟ ଧ୍ୱନି, ସ୍ୱସ୍ତିବଚନ, ପତାକା, ପଲ୍ୟଙ୍କ, ବନ୍ଦୀବାକ୍ୟ ପ୍ରଭୃତି ଯାହା ପ୍ରତ୍ୟହ ଅନୁଷ୍ଠିତ ହୁଏ ତାହା ବିସ୍ତାର କରି ଲେଖିବା ଆୟାସସାଧ୍ୟ । ଏ ନିତ୍ୟବିଧି ଛଡ଼ା ନୈମିତ୍ତିକ ବିଧି ଏବଂ ଦ୍ୱାଦଶଯାତ୍ରା ବିଧି ଯାହା ସବୁ ପ୍ରଚଳିତ ଅଛି, ତାହା ବର୍ଣ୍ଣନା କରିବା ସମୟସାପେକ୍ଷ । ସ୍ଥୂଳତଃ ଏହି ଅଖିଳ ବ୍ରହ୍ମାଣ୍ଡ ଦେବାଧିଦେବଙ୍କର ଯେଉଁ ପ୍ରଣାଳୀରେ ପିଣ୍ଡି ଓ ପ୍ରତିମା ସଂଯୋଗ ସ୍ଥଳରେ ଯେଉଁ ପ୍ରସାଦ ହୁଏ, ତାହା ମହାପ୍ରସାଦ ବୋଲି ଖ୍ୟାତ । ଏହା ମଧ୍ୟ ଅନ୍ୟତ୍ର ଦୁର୍ଲ୍ଲଭ—ଅନ୍ନ ହିଁ ବ୍ରହ୍ମ—ଏ ଦୃଷ୍ଟିରୁ ଏ ମହାପ୍ରସାଦ ।

## ଉପସଂହାର :

ଏହି ଦୁର୍ଗମ ଚିରନ୍ତନ ତଥା ପ୍ରଚଳିତ ଜଗନ୍ନାଥ ଦେବଙ୍କର ମୂର୍ତ୍ତି, ମନ୍ଦିରର ଉପାସନା ପ୍ରଣାଳୀ ସମ୍ପର୍କରେ ଦୁରୂହତତ୍ତ୍ୱ ନେଇ ନାନାବିଧ ମତ, ଇତିହାସ ଚାଲି ଆସୁଅଛି । ମୂର୍ତ୍ତିଙ୍କ ସମ୍ବନ୍ଧରେ ପ୍ରମାଣସିଦ୍ଧ ଦିବ୍ୟ-ଦାରୁରେ ବୁଦ୍ଧଙ୍କ ଦନ୍ତ, ଶ୍ରୀକୃଷ୍ଣଙ୍କ ଦଗ୍ଧାବଶେଷ ଅସ୍ଥି ଅଛି ବୋଲି ମତ-ପୋଷଣ କରିଥାନ୍ତି ; ମାତ୍ର ସେ ସବୁ ପୂର୍ବ ଲିଖିତ ପ୍ରମାଣ ଦୃଷ୍ଟିରୁ ଅପ୍ରମାଣ ଅଟେ । ତେଣୁ ଦାରୁ ବ୍ରହ୍ମଙ୍କର ଆବିର୍ଭାବ କାଳର ବହୁ ପୂର୍ବରୁ ଅନ୍ତତଃ ବୁଦ୍ଧଙ୍କ ଜନ୍ମ ଓ ଶ୍ରୀକୃଷ୍ଣଙ୍କ ଆବିର୍ଭାବର ବହୁ ପୂର୍ବରୁ । ତେଣୁ ଏହି ଅଖିଳ ବିଶ୍ୱବ୍ରହ୍ମାଣ୍ଡେଶ୍ୱର ଅନାଦ୍ୟନନ୍ତ ଶକ୍ତିମୟ ଦାରୁବ୍ରହ୍ମଙ୍କୁ ଜୈନାବତାର ବା ବୌଦ୍ଧାବତାର ବା ଖାରବେଳଙ୍କ ଜିନାସନ ବା ଯେ କୌଣସି ଅବତାରର ରୂପ ବୋଲି ନାମିତ କଲେ ଅନ୍ୟାୟ ହେବ ।

ଋକ୍ ବେଦରେ ଅଛି—

"ଅଦୋ ଯଦ୍ଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୁରୁଷମ୍
ତଦା 'ରଭସ୍ୱ ଦୁର୍ହଣୋ ତେନ' ଗଚ୍ଛ ପରସ୍ତରମ୍ ।

ସିନ୍ଧୁପାରେ ଅପୂରୁଷମ୍, ଅର୍ଥାତ୍ କୌଣସି ପୁରୁଷ ଦ୍ୱାରା ନିର୍ମିତ ହୋଇ ନାହିଁ ଯେ ସ୍ୱୟଂ ନିର୍ମିତ, ଅବିନାଶୀ ଦାରୁ ଭସମାନ ସେହି ଦାରୁକୁ ପୂଜା କରି ସଦ୍‌ଗତି ବା ବିଷ୍ଣୁଲୋକ ପ୍ରାପ୍ତ ହୁଅ ।

ଉପରୋକ୍ତ ଦାରୁ ପୁରୁଷୋତ୍ତମ ଜଗନ୍ନାଥଙ୍କ ବ୍ୟତୀତ ଆଉ କିଛି ନୁହେଁ ।

Digitized by srujanika@gmail.com

# ଶ୍ରୀ ଜଗନ୍ନାଥଦେବଙ୍କ ଘୋଷ ଯାତ୍ରା

ଅଦୃଷ୍ଟ୍ୱା ଶ୍ରୀ ଜଗନ୍ନାଥଂ ସୁଭଦ୍ରାଞ୍ଚ ବଳଂ ତଥା
ମୋକ୍ଷଂ ନ ଲଭତେ ମର୍ତ୍ତ୍ୟଃ କୃତ୍ୱାନ ପୁଣ୍ୟ ଶତାନ୍ୟପି ।

(ପଦ୍ମପୁରାଣ

ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଏବଂ ଶ୍ରୀ ଜଗନ୍ନାଥ ଦେବଙ୍କ ପ୍ରଶସ୍ତି ବିଭିନ୍ନ ପୁରାଣ ଓ ସଂହିତାଦି ଶାସ୍ତ୍ରରେ ବିଶଦ ଭାବରେ ଲିପିବଦ୍ଧ ହୋଇଅଛି । ପୁନଶ୍ଚ କ୍ଷେତ୍ର ମାହାତ୍ମ୍ୟ, ରୁଦ୍ରଯାମଳ, ମୁକ୍ତିଚିନ୍ତାମଣି, ସୌଭାଗ୍ୟ ସଂହିତା ପ୍ରଭୃତି ଗ୍ରନ୍ଥରେ ଜଗନ୍ନାଥ ଦେବଙ୍କ ମାହାତ୍ମ୍ୟ ସମ୍ବନ୍ଧରେ ଭୂରି ଭୂରି ପ୍ରମାଣ ରହିଅଛି ।

ଜଗନ୍ନାଥ ଦେବଙ୍କ ବିଭିନ୍ନ ନୀତି, ପୂଜାପ୍ରଣାଳୀ, ସେବକ ନିଯୋଗ ସର୍ବୋପରି ଦ୍ୱାଦଶ ଯାତ୍ରାବିଧି ଯେପରି ଶାସ୍ତ୍ରୀୟ ମତରେ ଅନୁସୃତ ହୋଇ ଆସୁଅଛି, ତାହା ଅନନ୍ୟ ସାଧାରଣ । ରଥଯାତ୍ରା ଏହି ଦ୍ୱାଦଶ ଯାତ୍ରା ମଧ୍ୟରୁ ଅନ୍ୟତମ ପ୍ରସିଦ୍ଧ ଯାତ୍ରା । ଏହା ପତିତପାବନ ଯାତ୍ରା ବା ଘୋଷ-ଯାତ୍ରା ନାମରେ ନାମିତ । ସାଧାରଣରେ ଏ ଯାତ୍ରା ଶ୍ରୀଗୁଣ୍ଡିଚା ଓ ବାହୁଡ଼ା ନାମରେ ମଧ୍ୟ କଥିତ ।

ରଥ ନିର୍ମାଣ ଓ ରଥ ପ୍ରତିଷ୍ଠା କାର୍ଯ୍ୟରେ ନୈତିକ ବିଧି ଅନୁସୃତ ହେବା କାହାରି ଅବିଦିତ ନୁହେଁ । ବିଶେଷତଃ ବନଯାଗ ବିଧି ମତେ ଅକ୍ଷୟ ତୃତୀୟାଠାରୁ ରଥ ନିର୍ମାଣ ଆରମ୍ଭ ହୁଏ । ଅକ୍ଷୟ ତୃତୀୟା ଦିନ ବନଯାଗ ପୁରଃସରପୂର୍ବକ ଅକ୍ଷତ କାଷ୍ଠରେ ରଥ ନିର୍ମାଣ କାର୍ଯ୍ୟ ଓ ତିନି ରଥର ବିଶ୍ୱକର୍ମାଙ୍କର ବରଣଯୁକ୍ତ ବ୍ରହ୍ମଚାରୀ ବହୁ ବ୍ରାହ୍ମଣଙ୍କ ଦ୍ୱାରା କାର୍ଯ୍ୟ ସମ୍ପାଦିତ ହୁଏ ।

ପୂର୍ବରୁ କଥିତ ହୋଇଛି ଯେ, ଏହି ନୀଳାଚଳସ୍ଥ ପୁଣ୍ୟପୀଠର ରୀତିନୀତି ଅନନ୍ୟସାଧାରଣ ଏବଂ ପ୍ରତ୍ୟେକ କାର୍ଯ୍ୟ ପ୍ରମାଣସିଦ୍ଧ ସାର୍ଥକତା ପୂର୍ଣ୍ଣ ଓ ଶାସ୍ତ୍ରୀୟ ମତରେ ସମାହିତ ।

Digitized by srujanika@gmail.com

ଅକ୍ଷୟ ତୃତୀୟାରେ ରଥାରମ୍ଭ, ତ୍ରିବିଧ ରଥର ନାମକରଣ, ରଥର ବିଭିନ୍ନ ଚକ ଓ ଅଶ୍ୱାଦିର ସଂଖ୍ୟା ନିର୍ଣ୍ଣୟ ପ୍ରଭୃତିର କିଛି ନା କିଛି ତାତ୍ତ୍ୱିକ ବ୍ୟାଖ୍ୟା ପ୍ରଦତ୍ତ ହୋଇପାରେ ।

ଅକ୍ଷୟ ତୃତୀୟାରେ ସତ୍ୟଯୁଗ ଆରମ୍ଭ । ତେଣୁ ଏହି ପବିତ୍ର ଦିବସ ସତ୍ୟଯୁଗାଦି ହେତୁ ଏହି ଦିବସରେ ରଥ ପ୍ରସ୍ତୁତ ହେବା ଅତି ରହସ୍ୟଜନକ ।

## ରଥ ନାମ ଶରୀର :

"ଆତ୍ମାନାମ୍ ରଥୀନଂ ବିଦ୍ଧି
ଶରୀରଂ ରଥମେବତ୍ତୁ ।" (ଶ୍ରୁତି)

ଜୀବଜଗତ ଅନାଦି ଅନନ୍ତ ବୋଲି ସକଳ ବେଦ, ତନ୍ତ୍ର ପୁରାଣାଦିରେ ନିରୂପିତ । ଶ୍ରୀମଦ୍ ଭାଗବତରେ ମଧ୍ୟ ଚତୁର୍ବିଂଶତି ଅବତାର ଉପକ୍ରମରେ ଭଗବାନଙ୍କର ପ୍ରଥମାବତାରକୁ ଜୀବସ୍ୱରୂପ ନିର୍ଦ୍ଦେଶ କରା-ଯାଇଅଛି । ଏହା ଅନାଦି ନାରାୟଣଙ୍କ ପ୍ରଥମ ଅମୂର୍ତ୍ତାବତାର, ଯାହାକି ଜୀବ ବା ପୁରୁଷ ବୋଲି ନିର୍ଦ୍ଦିଷ୍ଟ । ଏହାପରେ ଉକ୍ତ ଜଗତର ରକ୍ଷଣାର୍ଥ ଭଗବାନଙ୍କର ବହୁବିଧ ଯୁଗାବତାର ହୋଇଅଛି । ଏହା କେବଳ ଭାଗବତ ନୁହେଁ; ବେଦ, ତନ୍ତ୍ର, ପୁରାଣାଦିରେ ମଧ୍ୟ ସ୍ପଷ୍ଟ ମୁଦ୍ରିତ ।

ପ୍ରୋକ୍ତ ରଥର ବିରାଟ ରୂପ ଜୀବଜଗତର ସ୍ଥୂଳ ଶରୀର । ପରମାତ୍ମା ଯେ କି ଚତୁର୍ବ୍ୟୂହ ରୂପରେ ବାସୁଦେବ, ସଂକର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧା-ତ୍ମକ—ସେହି (ପରମାତ୍ମା) ରଥାରୂଢ଼ ହୁଅନ୍ତି । ମହାପ୍ରଳୟାନନ୍ତର ଜୀବକୁଳର ସୃଷ୍ଟ୍ୟାରମ୍ଭ ବୋଲି ଅନୁମାନ କରାଯାଏ । ନିର୍ଦ୍ଦିଷ୍ଟକାଳ ନ ଥିଲେହେଁ ମହାପ୍ରଳୟ ପରେ ସୃଷ୍ଟି ଆରମ୍ଭ ବେଦାଦିରେ ଉକ୍ତ । ସୁତରାଂ ଜୀବକୁଳର ଶରୀରରୂପୀ ରଥ ଆରମ୍ଭ ଦିନକୁ ସତ୍ୟଯୁଗାଦିକୁହିଁ ଏହି ଅକ୍ଷୟତୃତୀୟା ଦିବସ ବ୍ୟଞ୍ଜିତ କରୁଅଛି । ଏବେ ବି ଓଡ଼ିଶାରେ ବୀଜବପନର ଦିନ ସେହି ଅକ୍ଷୟ ତୃତୀୟା ବୋଲି ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ଥିବା ବିଷୟ କିଏ ନ ଜାଣେ ?

ତେଣୁ ଜୀବର ଶରୀରାରମ୍ଭ ଦିବସ ହିଁ ଅକ୍ଷୟ ତୃତୀୟା ଦିନ ବୋଲି ଉକ୍ତ ଥିବାରୁ ବହୁକାଳରୁ ଭଗବାନଙ୍କର ରଥ ନିର୍ମାଣ କ୍ରିୟା ସେହିଦିନୁ ଯେ ଆରମ୍ଭ ହେଉଅଛି, ଏଥିରେ ଆଉ ସନ୍ଦେହ ନାହିଁ ।

Digitized by srujanika@gmail.com

ଜାତି-ଧର୍ମ-ନିର୍ବିଶେଷରେ ରଥସ୍ଥ ପରମାତ୍ମାଙ୍କର ଦର୍ଶନ-ସ୍ପର୍ଶନାଦି ସର୍ବାଂଶରେ ସମସ୍ତେ ସୁବିଧା ଓ ସୁଯୋଗ ପାଇଥାନ୍ତି । ଏଥିରେ ସ୍ପର୍ଶାସ୍ପର୍ଶ ଦୋଷ ନାହିଁ ।

ଗୁଣ୍ଡିଚା ଓ ବାହୁଡ଼ା ଦିନ ରଥରେ ମୂଳାଦି ନିଃସଙ୍ଗୃହ ଦ୍ରବ୍ୟରେ ଅର୍ଥାତ୍ ପାକସିଦ୍ଧ ଅନ୍ନ ଛଡ଼ା ଅନ୍ୟବିଧ ପଦାର୍ଥ ଦୁଗ୍ଧ ଘୃତାଦିରେ ସମାହିତ ହୁଏ । ଅବଶିଷ୍ଟ ସପ୍ତାହବ୍ୟାପୀ ଗୁଣ୍ଡିଚା ମଣ୍ଡପରେ ମାଳାଦି ବତ୍ ସକଳ ପ୍ରକାର ପୂଜା ହୋମାଦି ପାକାନ୍ନରେ ହୋଇଥାଏ ।

ଉକ୍ତ ରଥଯାତ୍ରା ମନ୍ତ୍ରଧର୍ମରେ ସମର୍ଥିତ । ଏ ଯେଉଁ ଅଧମତାରଣ ଯାତ୍ରା ନବଦିନ ବ୍ୟାପୀ ଅନୁଷ୍ଠିତ ହେଉଅଛି, ଏହାର କାରଣ ଅନୁସନ୍ଧାନ କଲେ ମନେହୁଏ ଯେ, ଭଗବାନଙ୍କ ପାଦରେ ଯେଉଁ ଅଷ୍ଟାଦଶ ଚିହ୍ନ ନବ ନବ ସଂଖ୍ୟକ ଭାବରେ ଅଛି, ଏହା ସମସ୍ତ ସଂସାରର ବୀଜଭୂତ ପଦାର୍ଥ । "ପାଦେସ୍ୟ ବିଶ୍ୱାଭୂତାନି ଇତି ।" (ଶ୍ରୁତି)

ଉତ୍ତରାୟଣ ସ୍ୟନ୍ଦନ ଜଗନ୍ନାଥଦେବଙ୍କର ନବାଙ୍କ ଯାତ୍ରା ଯାହା ନିର୍ଦ୍ଧାରିତ ଅଛି, ତାହା ଏହି ସୃଷ୍ଟିବୀଜ ପଦଗତ ନବ ସଂଖ୍ୟାର ସ୍ମାରକ । ଏହା ମନ୍ଦିରର ଚତୁଃପାର୍ଶ୍ୱରେ ନବଧା ଭ୍ରମଣ ରୂପ ଅଟେ । (ନବାଙ୍କବେଢ଼ା)

ଦକ୍ଷିଣାୟନ ଶେଷରେ ଏହି ଯାତ୍ରା ବିହିତ ଥିବାରୁ ଓ ଉତ୍ତରାୟଣ ଆରମ୍ଭରେ ମକର ସଂକ୍ରାନ୍ତି ଭୋଗପର୍ବକ ମକର ଯାତ୍ରା ଆରମ୍ଭ ହେବାଯୋଗୁଁ ଉକ୍ତ ଯାତ୍ରାଦ୍ୱୟ ପିତୃଯାନ ଓ ଦେବଯାନର ନିର୍ଦ୍ଦେଶକ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଅଷ୍ଟାଦଶାନି ଚିହ୍ନାନି ନବସନ୍ତି ନବଂନବଂ
ତସ୍ମାନ୍ନବାଙ୍କଂ ନାମ୍ନାୟୁଂ ଯାତ୍ରା ତତ୍‌ଗଦିତା ନୃତା ।
(ମାଳାଦି ମହୋଦଧି-ପୃ ୨୪୧)

ପୁରୁଷୋତ୍ତମ ଧେତ୍ରସ୍ଥ ଜଗନ୍ନାଥଙ୍କ ବିବିଧ ରଥର ଅଙ୍ଗାଦି ବର୍ତ୍ତମାନ ଆଲୋଚ୍ୟ । ଶ୍ରୀଜଗନ୍ନାଥଙ୍କ ରଥର ନାମ ନନ୍ଦିଘୋଷ । ରଥାଙ୍ଗ ଷୋଡ଼ଶ ଚକ୍ର (ଷୋଳଟି ଚକ) । ଉକ୍ତ ଷୋଡ଼ଶ ଚକ୍ର ଷୋଡ଼ଶ କଳାତ୍ମକ । ଏହା ଭଗବାନଙ୍କର ପୌରୁଷାବତାର ଅର୍ଥାତ୍ ଜୀବ ସ୍ୱରୂପାବିର୍ଭାବର ଉଦ୍‌ଘାଟକ ଓ ପ୍ରଥମାବତାରର ସୂଚକ । ଏହା ପଞ୍ଚକୋଷାତ୍ମକ ।

Digitized by srujanika@gmail.com

ଜଗୃହେ ପୌରୁଷଂ ରୂପଂ ଭଗବାନାତ୍ମ ମାୟେୟାଃ
ସମ୍ଭୂତଂ ଷୋଡ଼ଶକଳମାଦୌ ଲୋକ ସିସୃକ୍ଷୟା । (ଭାଗବତ)

ପଞ୍ଚତନ୍ମାତ୍ର ଓ ଏକାଦଶ ଇନ୍ଦ୍ରିୟ ନେଇ ଜୀବର ସୃଷ୍ଟି ଓ ପ୍ରକାଶ । ଅର୍ଥାତ୍ ଅନନ୍ତାବତାରଧାରୀ ଭଗବାନ ପ୍ରଥମେ ଜୀବ-ରୂପ ଧାରଣ କଲେ । ସେହିଁ ସ୍ୱରୂପରେ ଭଗବାନ ନିଜ **ମାୟା** ସମ୍ପାଦିତ ପଞ୍ଚତନ୍ମାତ୍ର ଏକାଦଶ ଇନ୍ଦ୍ରିୟରୂପେ ଷୋଡ଼ଶ କଳାରେ **ଆବିଷ୍କୃତ**, ଏହା ଅବତାର ସୃଷ୍ଟି କରିବାର ଇଚ୍ଛାରେ ହିଁ ପ୍ରଥମେ ପ୍ରକାଶିତ ।

ଏ ରଥର ନାମ—ନନ୍ଦିଘୋଷ ।

ସାରଥି—ମାତଳି ।

ଅଶ୍ୱ—ଶଙ୍ଖ, ରୋଚିକା, ମୋଚିକା, ଜ୍ୱାଳିନୀ ।

ଚକ୍ର—୧୬ (କଳା) ।

ଅର—୧୬ ।

ଋଷି—ପଣ୍ଡୁ ।

ସୁଭଦ୍ରାଙ୍କର ରଥର ନାମ—ଦେବୀରଥ ବା ଦେବଦଳନ ।

ଚକ୍ର—ଦ୍ୱାଦଶ (୧୨ଟି ଚକ୍ର) ।

ଏହି ଦ୍ୱାଦଶ ଚକ୍ର ଦ୍ୱାଦଶ ମାସାତ୍ମକ ସମ୍ବତ୍ସରରୂପୀ କାଳଚକ୍ର । ସୃଷ୍ଟି ଇଚ୍ଛା ପରେ ହିଁ କାଳତତ୍ତ୍ୱର ସୃଷ୍ଟି ।

"ନାନାବିଧ ଶକ୍ତିମୟୀ ସା
ଜନୟନ୍ତି କାଳତତ୍ତ୍ୱମେବାଦୌ ।"

ପ୍ରଥମେ କାଳ ସୃଷ୍ଟି—ପରେ ଅନ୍ୟାନ୍ୟ । ଏହି ସୁଭଦ୍ରା ମହାମାୟା ଭୁବନେଶ୍ୱରୀ କାଳୀ ବା ଜଗତକାଳରୂପିଣୀ ଅଟନ୍ତି ।

ଏହାର ସାରଥି—ଦେବଦତ୍ତ ।

ଅଶ୍ୱ—ପ୍ରଜ୍ଞା, ଅନୁଜ୍ଞା, ଘୋରା, ଅଘୋରା ।

ଚକ୍ର—୧୨ (ସିଦ୍ଧ) ।

ଅର—୧୨ ।

ଋଷି – ଯାଜ୍ଞବଳ୍କ୍ୟ ।

ବଳଭଦ୍ର ରଥଙ୍କ ନାମ ତାଳଧ୍ୱଜ । ଚତୁର୍ଦ୍ଦଶ ଚକ୍ରଘଟିତ । ଏହା ଚତୁର୍ଦ୍ଦଶ ମନ୍ୱନ୍ତର ରୂପ ବ୍ରହ୍ମାଙ୍କର ପରମାୟୁ କାଳର ବ୍ୟଞ୍ଜକ ।

ଏହି ବଳଭଦ୍ର ବିରାଟ ରୂପ ଅର୍ଥାତ୍ ସ୍ଥୂଳ ଜଗତର ଅଧୀଶ୍ୱର । ତେଣୁ ଏହାଙ୍କର ଚକ୍ର ଚଉଦସଂଖ୍ୟକ ଅଟେ । ଜଗନ୍ନାଥଦେବ ସୂକ୍ଷ୍ମର

Digitized by srujanika@gmail.com

ଶବ୍ଦବାଦରହିତ ନିଖିଳ ଚରାଚର ସୃଷ୍ଟି ଇଚ୍ଛାରେ ପ୍ରଥମେ ପୁରୁଷବତାର ହେଲେ । ଯେଉଁ ଅବତାର ସ୍ୱରୂପ ପ୍ରଦର୍ଶିତ ହେଉଅଛି, ତାହା ଭାଗବତ ପ୍ରମାଣ ବଳରେ ଷୋଡ଼ଶକଳା ପୌରୁଷ ରୂପ ଧାରଣରେ ନିର୍ଦ୍ଦିଷ୍ଟ ।

ଅନନ୍ତର ପ୍ରଥମ କାଳତତ୍ତ୍ୱ ସୃଷ୍ଟିରେ ସୁଭଦ୍ରା ଦେବୀ ବିଶ୍ୱକର୍ତ୍ତ୍ରୀ, ବିଶ୍ୱଜନୟିତ୍ରୀ—ବିଶ୍ୱମଙ୍ଗଳକାରିଣୀ ରୂପେ ପ୍ରକାଶିତ, ସେ ବିଶ୍ୱ-ଦ୍ୱାଦଶ-ମାସାତ୍ମକ । ତତ୍ପରେ ସ୍ଥୂଳ ବିଶ୍ୱବିରାଟ ଅର୍ଥାତ୍ ତ୍ରୈଲୋକ୍ୟ । ଚନ୍ଦ୍ର, ସୂର୍ଯ୍ୟ, ନକ୍ଷତ୍ର, ଗ୍ରହ, ଆକାଶ, ଭୂ, ମହୋଦଧି, ବିରାଟ ସ୍ଥୂଳଜଗତ ରୂପେ ପ୍ରକାଶିତ ।

ବଳଭଦ୍ରଙ୍କର ରଥ ମନୁସଂଖ୍ୟା ସଂକେତିତ ଚତୁର୍ଦ୍ଦଶ ଅଟେ ।

ଏହାଙ୍କ ସାରଥି—ତାଳଧ୍ୱଜ ।

ଅଶ୍ୱ—ଋକ, ଯଜୁ, ସାମ, ଅଥର୍ବ ।

ଚକ—୧୪ (ଭୁବନ)

ଅର—୧୪ ।

ଋଷି—ଅଙ୍ଗିରା ।

ଏହିପରି ରଥୋତ୍ସବ ଅନ୍ୟତ୍ର ଦୁର୍ଲ୍ଲଭ କହିଲେ ଅତିରଞ୍ଜନ ହେବ ନାହିଁ ।

Digitized by srujanika@gmail.com

—

# ଉତ୍କଳର ଭକ୍ତି ସାହିତ୍ୟ

ଓଡ଼ିଆ ଭାଷା ଭାରତୀୟ ପ୍ରାଚୀନ ଆର୍ଯ୍ୟଭାଷାରୁ ଉଦ୍ଭବ । ଏହା ବହୁତ ପ୍ରାଚୀନ ଏବଂ ତତ୍ ସହିତ ଏହାର ସାହିତ୍ୟ ମଧ୍ୟ ସେହିପରି ପ୍ରାଚୀନ । ସାଧାରଣତଃ ଆମେ କହିପାରିବା ଯେ ମନୁଷ୍ୟର କାର୍ଯ୍ୟକଳାପ ଓ ଲଳିତ ବିବରଣୀର ସରସ ପ୍ରକାଶ ହେଉଛି ସାହିତ୍ୟ । ଏହାର ଏକ ବ୍ୟାପକ ଅର୍ଥ ଅଛି । ଏହି ସାହିତ୍ୟରୁ ମାନବ ସଭ୍ୟତାର ପରିଚୟ ମିଳେ । କାବ୍ୟ ମଧ୍ୟ ସାହିତ୍ୟ ଅଟେ ; କିନ୍ତୁ ବ୍ୟାପକ ଅର୍ଥରେ ଏହାର ବ୍ୟବହାର ହୋଇଥାଏ ; କାରଣ ରାମାୟଣ, ମହାଭାରତ, ଇତିହାସ ରୂପେ ପରିଗଣିତ ହେଲେ ମଧ୍ୟ କାବ୍ୟପଦବାଚ୍ୟ । ପ୍ରତ୍ୟେକ ସାହିତ୍ୟର ସୃଷ୍ଟି, ଧର୍ମରୁ ହିଁ ସମ୍ଭବପର ହୋଇଛି । ପୃଥିବୀରେ ପ୍ରାଚୀନତମ ସାହିତ୍ୟ ତଥା ଧର୍ମଗ୍ରନ୍ଥ ହେଉଛି ଆର୍ଯ୍ୟମାନଙ୍କର ବେଦ । ବେଦରେ ତିନୋଟି କାଣ୍ଡ ଅଛି—କର୍ମ, ଜ୍ଞାନ ଏବଂ ଉପାସନା । ଉପାସନା ଭକ୍ତିମୂଳକ । ବେଦରେ ଅଗ୍ନି, ଇନ୍ଦ୍ର, ସୂର୍ଯ୍ୟ, ବରୁଣ, ରୁଦ୍ର ଏବଂ ବିଷ୍ଣୁଙ୍କର ସୂକ୍ତି ଅଛି । ସେଥିରେ ଏମାନଙ୍କର ସ୍ତୁତି, ଦେବତାମାନଙ୍କ ରୂପରେ ହୋଇଛି । ଏହି ସ୍ତୁତି ସମୂହ ଭୟ ତଥା ଭକ୍ତି-ମୂଳକ । ମାନବ-ଜୀବନରେ ଜ୍ଞାନ, ଇଚ୍ଛା ଏବଂ କାର୍ଯ୍ୟ ପର୍ଯ୍ୟାୟ କ୍ରମରେ ବିଦ୍ୟମାନ । ମନୁଷ୍ୟ ଶ୍ରବଣ, ଦର୍ଶନ, ସ୍ୱପ୍ନ ଆଦି କାରଣ ଦ୍ୱାରା ଅନୁଭବ କରେ, ଅର୍ଥାତ୍ କୌଣସି ବିଷୟରେ ତାହାର ସାଧାରଣ ଭାବ ବା ଜ୍ଞାନ ଜାତ ହୁଏ, ତାହାପରେ ସେ ତା ପ୍ରତି ଅନୁରକ୍ତ ବା ବିରକ୍ତ ହୁଏ । ସେ ତାକୁ ପାଇବା ବା ତ୍ୟାଗ କରିବା ଲାଗି ତଦନୁସାର କର୍ମ କରେ । ଏହି କାର୍ଯ୍ୟତତ୍ପରତା ତାକୁ ନୂତନ ଜ୍ଞାନ ପ୍ରଦାନ କରେ ଏବଂ ବିଷୟ ପ୍ରତି ଆସକ୍ତି ଜାତ କରାଏ । ପୁଣି ତାହାର କ୍ରିୟାଶକ୍ତି ବଳବତୀ ହୋଇଉଠେ । ଜୀବନରେ ଏହି ତ୍ରିବିଧ କ୍ରିୟା ଚକ୍ରବତ୍ ଘୂର୍ଣ୍ଣାୟମାନ । ଏ ସକଳ ଅବିଯୋଜ୍ୟ, ପୁଣି ମଧ୍ୟ ଭିନ୍ନ ରୂପରେ ଗଣ୍ୟ । ଏହି ତିନୋଟି ବିଷୟ ପୃଥକ୍ ପୃଥକ୍ ହେଲେ ମଧ୍ୟ ଧର୍ମର ହେଉଛନ୍ତି ଅବିଚ୍ଛେଦ୍ୟ ଅଙ୍ଗ । ଗୀତାରେ କର୍ମ, ଭକ୍ତି ଏବଂ

Digitized by srujanika@gmail.com

ଜ୍ଞାନଯୋଗ ସମ୍ବନ୍ଧରେ କୁହାଯାଇଛି । ଭାଗବତର ଏକାଦଶସ୍କନ୍ଧର ବିଂଶ ଅଧ୍ୟାୟରେ ଜ୍ଞାନ, କର୍ମ ଏବଂ ଭକ୍ତିଯୋଗ ବିଷୟରେ ଆଲୋଚନା କରାଯାଇଛି । ସେହି ଅଧ୍ୟାୟରେ ଭକ୍ତି, ପରମେଶ୍ୱରଙ୍କ ଅର୍ଚ୍ଚନା ତଥା ଉପାସନା ରୂପେ ଗୃହୀତ ।

ପୁରାଣରେ କର୍ମ, ଜ୍ଞାନ ଏବଂ ଭକ୍ତିର ପ୍ରଧାନତା ବର୍ଣ୍ଣିତ । ବ୍ରହ୍ମପୁରାଣର ୧୪୫ ଅଧ୍ୟାୟରେ କର୍ମର ପ୍ରାଧାନ୍ୟ ଏହି ଶବ୍ଦ ସମୂହରେ ସୂଚିତ—କର୍ମହୀନ ପ୍ରାଣୀ କୌଣସିଠାରେ ନାହାଁ, ଏଥିଲାଗି କର୍ମ ହିଁ ପ୍ରକୃତ ମୁକ୍ତିର କାରଣ ବୋଲି କଥିତ ହୋଇଅଛି । କର୍ମ ବିନା ଜ୍ଞାନର ପ୍ରାଧାନ୍ୟ ପ୍ରତିଷ୍ଠିତ କରିବା ଉନ୍ମତ୍ତର ପ୍ରଳାପ ସଦୃଶ । (୧)

ଗୀତାରେ ଜ୍ଞାନର ପ୍ରଶଂସା ଅଛି । ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି ଯେ, "ଚାରି ଭକ୍ତ ମଧ୍ୟରେ ଅର୍ଥାତ୍—ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ ଏବଂ ଜ୍ଞାନୀ ମଧ୍ୟରେ ଜ୍ଞାନୀହିଁ ଏକନିଷ୍ଠ ଭକ୍ତ । ମୋର ଜ୍ଞାନୀ ଅତି ପ୍ରିୟ । ଜ୍ଞାନୀ ମୋର ଆତ୍ମା । (୨)

ଏହା ଭାଗବତର ପ୍ରଥମ ସ୍କନ୍ଧର ଦ୍ୱିତୀୟ ଅଧ୍ୟାୟରେ ସମର୍ଥିତ । ଏଥିରେ କୁହାଯାଇଛି, ଯେଉଁ ମୁନି ବିଷୟାସକ୍ତ ନୁହନ୍ତି ଏବଂ ଆତ୍ମାରେ ପରମାତ୍ମାଙ୍କୁ ଦେଖେ ସେ ମଧ୍ୟ ଅପ୍ରୟୋଜନରେ ବିଷ୍ଣୁଙ୍କର ଭକ୍ତି କରେ । ପୁନଶ୍ଚ ଗୀତାର ତ୍ରୟୋଦଶ ଅଧ୍ୟାୟରେ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି, ମୋଠାରେ ସର୍ବାତ୍ମ-ଦୃଷ୍ଟି ହେଉଛି ଏକାନ୍ତ ଭକ୍ତି । ଅନ୍ୟ ସମସ୍ତ ସହିତ ଜ୍ଞାନର ସାଧନା ଅଛି । ଭାଗବତରେ ଭକ୍ତିର ପ୍ରାଧାନ୍ୟ କୁହାଯାଇଛି । ଭାଗବତର ଏକାଦଶ ସ୍କନ୍ଧର ଚତୁର୍ଦ୍ଦଶ ତଥା ବିଂଶ ଅଧ୍ୟାୟରେ ଭଗବାନ କହିଛନ୍ତି, ଯେଉଁପରି ମୋତେ ବିଶୁଦ୍ଧ ଭକ୍ତି ବଶ କରେ ସେହିପରି ଯୋଗ, ସାଂଖ୍ୟ, ବର୍ଣ୍ଣାଶ୍ରମ ଧର୍ମ, ବେଦପାଠ, ତପସ୍ୟା ଏବଂ ଦାନ ବଶୀଭୂତ କରିପାରେ ନାହିଁ । ଗୀତାରେ ମଧ୍ୟ ଏହା ଉକ୍ତ ଅଛି । ଭଗବାନ ଅର୍ଜୁନଙ୍କୁ କହନ୍ତି, "ଯତ୍ କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍ । ଯତ୍ ତପସ୍ୟସି କୌନ୍ତେୟ ତତ୍ କୁରୁଷ୍ୱ ମଦର୍ପଣମ୍ ।" ଭକ୍ତିର ସ୍ୱରୂପ

(୧) ସର୍ବ କର୍ମୈବ ନାକର୍ମୀ ପ୍ରାଣି କ୍ୱାପ୍ୟତ୍ର ବିଦ୍ୟତେ ।
କର୍ମୈବ କାରଣଂ ତସ୍ମାଦନ୍ୟଦୁନ୍ମତ୍ତ ଚେଷ୍ଟିତମ୍ ।
ବ୍ରହ୍ମପୁରାଣ ଅ. ୧୪୫ ।

(୨) ଗୀତା, ସପ୍ତମ ଅଧ୍ୟାୟ, ଶ୍ଲୋକ ୧୬-୧୭

Digitized by srujanika@gmail.com

ବ୍ୟାଖ୍ୟା କରି ଯୋଗସୂତ୍ରରେ କୁହାଯାଇଛି ଯେ ପରାନୁରକ୍ତି ହିଁ ଈଶ୍ୱର ଭକ୍ତି । (୧) ଏଠାରେ ପରା ଶବ୍ଦର ଅର୍ଥ ଅନନ୍ୟ ବିଷୟକ ଅନୁରାଗ ବା ପ୍ରେମ । ନାରଦ--ପଞ୍ଚରାତ୍ରରେ କୁହାଯାଇଛି ଯେ, ଇନ୍ଦ୍ରିୟମାନଙ୍କଦ୍ୱାରା ହୃଷୀକେଶଙ୍କର ନିଷ୍ଠାପୂର୍ବକ ଭଜନକୁ ଭକ୍ତି କହନ୍ତି । ଏହି ସେବା ସମସ୍ତ ପ୍ରକାର ଛଳନା ରହିତ । (୨) ଏହି "ନାରଦ-ପଞ୍ଚରାତ୍ର"ରେ ଏହା ମଧ୍ୟ ଲିଖିତ ହୋଇଛି ଯେ ଏହି ଭକ୍ତି ବିନା ପଞ୍ଚବିଧ ମୁକ୍ତି କଦାପି ସମ୍ଭବପର ନୁହେଁ ।

ବସ୍ତୁତଃ ଭକ୍ତି ହେଉଛି ତିନି ପ୍ରକାର—କାୟିକ, ବାଚିକ ଏବଂ ମାନସିକ । ପୁନଶ୍ଚ ରଜ, ତମ ଏବଂ ସତ୍ତ୍ୱ ଗୁଣ—ଭେଦ କାରଣରୁ ଏହା ତ୍ରିବିଧ । ଏଥର ଅନ୍ତରାଳ ଭଗବତରେ ନିର୍ଗୁଣ ଭକ୍ତି କଥା ମଧ୍ୟ ବର୍ଣ୍ଣିତ କରାଯାଇଛି ।

ସତ୍ୟଯୁଗରେ ତପସ୍ୟାର ପ୍ରାଧାନ୍ୟ ସ୍ୱୀକୃତ । ତ୍ରେତାଯୁଗରେ ଯଜ୍ଞର ପ୍ରବର୍ତ୍ତନ ହେଲା । ଯଜ୍ଞ କରିବା ହେଉଛି ରାଜସ ଭକ୍ତି ଜନିତ । ଯଜ୍ଞର ପତ୍ନୀ ଶ୍ରଦ୍ଧା । ଭକ୍ତି ହେଉଛି ଶ୍ରଦ୍ଧାମୂଳକ । ପ୍ରଥମେ ଯଜ୍ଞାନୁଷ୍ଠାନରେ ପଶୁବଳିର ପ୍ରଚଳନ ନ ଥିଲା । ତ୍ରେତାଯୁଗରେ ପଶୁବଳିର ପ୍ରବର୍ତ୍ତନ ହେଲା । ଯଜ୍ଞରେ ପଶୁବଳିର କାର୍ଯ୍ୟ ବଢ଼ିଯିବାରୁ ଲୋକମାନେ ଜ୍ଞାନର ଅନୁସରଣ କଲେ । ତା'ପରେ ଉପନିଷଦର ସୃଷ୍ଟି ହେଲା ଏବଂ କର୍ମ ସ୍ଥାନରେ ଜ୍ଞାନର ପ୍ରାଧାନ୍ୟ ହେଲା । ଉପନିଷଦ ଯୁଗରେ ଭକ୍ତିର ଅନୁଶୀଳନର ସ୍ପଷ୍ଟ ସଙ୍କେତ ଶ୍ୱେତାଶ୍ୱେତ ଉପନିଷଦରେ ମିଳେ । ଉପନିଷଦ ଯୁଗରେ ବୈଦିକ ଦେବତା ବ୍ରହ୍ମା ପରମାତ୍ମା ରୂପରେ ପୂଜିତ ହେଲେ । ଏହି ଯୁଗର ଶେଷ ଭାଗରେ ଏବଂ ପୌରାଣିକ ଯୁଗର ଆରମ୍ଭରେ ବୈଦିକ ଦେବତାମାନଙ୍କ ମଧ୍ୟରେ ପଞ୍ଚଦେବତାଙ୍କ ମଧ୍ୟ ପ୍ରାଧାନ୍ୟ ସ୍ୱୀକୃତ ହେଲା । ବ୍ରହ୍ମା ଏବଂ ଭଗବାନଙ୍କର ନିର୍ଗୁଣ ଭକ୍ତି ପଞ୍ଚଦେବତାଙ୍କ ସଗୁଣ ରୂପରେ ଅର୍ପିତ ହେଲା । ଏମାନେ ବିଷ୍ଣୁ, ଶିବ, ଶକ୍ତି, ଗଣେଶ ଓ ସୂର୍ଯ୍ୟ ରୂପରେ ପଞ୍ଚଦେବତା ବେଦରେ ବିଷ୍ଣୁ, ରୁଦ୍ର ଏବଂ ସୂର୍ଯ୍ୟଙ୍କର ସୂକ୍ତ ଅଛି । ଗଣେଶ ଏବଂ ଶକ୍ତିଙ୍କର ସୂକ୍ତ ମୁଖ୍ୟ ନୁହେଁ ।

---

(୧) 'ଈଶ୍ୱରେ ପରାନୁରକ୍ତିଃ ଭକ୍ତି' (ଯୋଗସୂତ୍ର)

(୨) "ସର୍ବୋପାଧିବିନିର୍ମୁକ୍ତଂ ତତ୍ପରତ୍ୱେନ ନିର୍ମଳମ୍ ।
ହୃଷୀକେଣ ହୃଷୀକେଶ ସେବନଂ ଭକ୍ତିରୁଚ୍ୟତେ ।"

Digitized by srujanika@gmail.com

"ଗଣାନାଂ ତ୍ୱା ଗଣପତିଂ ହବାମହେ"—

ଏହି ବୈଦିକ ମନ୍ତ୍ରାଂଶକୁ ନେଇକରି ଗାଣପତ୍ୟମାନେ ଗଣପତି ଗଣେଶଙ୍କୁ ପରମାତ୍ମା ରୂପରେ ଗ୍ରହଣ କଲେ ଏବଂ ବେଦର ବାକ୍‌ସୂକ୍ତକୁ ଦେବୀସୂକ୍ତ ରୂପରେ ଗ୍ରହଣ କରାଗଲା । ଗଣେଶଙ୍କ ଲାଗି ଗଣପତି ଉପନିଷଦ, ଗଣେଶ ପଦ ଏବଂ ଉତ୍ତରତାପିନୀ ଉପନିଷଦ ରହିଛି । ଶକ୍ତି ଏବଂ ଦୁର୍ଗାଙ୍କ ବିଷୟରେ ଦେବୀ ଉପନିଷଦ ମଧ୍ୟ ରହିଛି । ବୈଦିକ ଯୁଗର ପ୍ରଧାନ ଦେବତା ଅଗ୍ନି, ଇନ୍ଦ୍ର, ବରୁଣାଦି ସେମାନେ ପୌରାଣିକ ଯୁଗରେ ଅପ୍ରଧାନ ଦେବତା ରୂପେ ପରିଗଣିତ ହେବାକୁ ଲାଗିଲେ ଏବଂ ଏହି ପଞ୍ଚ ଦେବତା ପରମବ୍ରହ୍ମ-ରୂପେ ସ୍ୱୀକୃତ ହେଲେ ।

ପଞ୍ଚଦେବତାଙ୍କର ଉପାସକ ଅର୍ଥାତ୍ ବିଷ୍ଣୁଙ୍କର ବୈଷ୍ଣବ, ଶିବଙ୍କର ଶୈବ, ସୂର୍ଯ୍ୟଙ୍କର ସୌର, ଗଣପତିଙ୍କର ଗାଣପତ୍ୟ ଏବଂ ଶକ୍ତିଙ୍କର ଶାକ୍ତ ଉପାସକ ରୂପେ ପରିଚିତ । ପୁରାଣ ଯୁଗରେ ପଞ୍ଚଦେବଙ୍କ ସହିତ ଅଗ୍ନି ମଧ୍ୟ ଷଷ୍ଠ ଦେବତା ରୂପେ ପୂଜ୍ୟ । ଯେ ଯେଉଁ ଦେବତାଙ୍କର ଉପାସକ ସେମାନେ ତାଙ୍କୁ ପରମା ଦେବତା ରୂପେ ପୂଜା କରନ୍ତି ।(୧) ପୂର୍ବରୁ କୁହାଯାଇଛି ଯେ ବୈଦିକ ଯୁଗରେ ପ୍ରାୟ ପ୍ରତ୍ୟେକ ଦେବତା ପରମେଶ୍ୱର ରୂପରେ ସ୍ତୁତ । ଭଗବାନ ଏକ ; କିନ୍ତୁ ତାଙ୍କୁ ପଣ୍ଡିତମାନେ ଅନେକ ପ୍ରକାରରେ ଦେଖିଛନ୍ତି(୨) । ଏହି ଦେବତାଙ୍କର ପ୍ରତୀକ ହେଉଛନ୍ତି ଜଗନ୍ନାଥ, ଅର୍ଥାତ୍ ଏହି ଦେବତାଙ୍କର ଉପାସକ ନିଜର ଉପାସ୍ୟ ଦେବତାଙ୍କୁ ଜଗନ୍ନାଥଙ୍କ ବିଗ୍ରହରେ ଦେଖନ୍ତି ।

ପ୍ରଥମେ କୁହାଯାଇଛି ଯେ ଯଜ୍ଞର ପତ୍ନୀ ହେଉଛି ଶ୍ରଦ୍ଧା ଏବଂ ଯଜ୍ଞର ଅନ୍ୟ କେତେକ କ୍ରିୟା ହେଉଛି ତାମସ ତଥା ରାଜସ ଭକ୍ତିମୂଳକ ।

---

(୧) ଗଣେଶଞ୍ଚ ଦିନେଶଞ୍ଚ ବହ୍ନିଂ ବିଷ୍ଣୁଂ ଶିବଂ ଶିବାମ୍ ।
ସମଭ୍ୟର୍ଚ୍ଚ ଦେବାଂଷ୍ଟ କମିଷ୍ଟ ଦେବଞ୍ଚ ପୂଜୟେତ୍ ॥
ଗଣେଶଂ ବିଘ୍ନନାଶାୟ ବ୍ୟାଧିନାଶାୟ ଭାସ୍କରମ୍ ।
ଆତ୍ମନଃ ଶୁଦ୍ଧୟେ ବହ୍ନିଂ ଶ୍ରୀବିଷ୍ଣୁଂ ମୁକ୍ତିହେତବେ ॥
ଜ୍ଞାନାୟ ଶଙ୍କରଂ ଦୁର୍ଗାଂ ପରମୈଶ୍ୱର୍ଯ୍ୟହେତବେ ।
ସମ୍ପୂଜନେ ଫଳମିଦଂ ବିପରୀତମପୂଜନେ ।
— ବ୍ରହ୍ମବୈବର୍ତ୍ତ ପୁରାଣ, ଗଣେଶ ଖଣ୍ଡ ।

(୨) ଏକମ୍ ସଦ୍‌ବିପ୍ରା ବହୁଧା ବଦନ୍ତି — ଋଗ୍‌ବେଦ ।

Digitized by srujanika@gmail.com

ଯଜ୍ଞ ହେଉଛି ପ୍ରବୃତ୍ତି ମାର୍ଗର କ୍ରିୟା । ଉତ୍କଳର ବହୁତ ପ୍ରାଚୀନ ପରମ୍ପରା ଅଛି ; କାରଣ ବ୍ରହ୍ମା ଏବଂ ଦେବତାମାନେ ଗୟୁର (ହସ୍ତୀର) ପବିତ୍ର ଶରୀର ଉପରେ ଯଜ୍ଞ କରିଥିଲେ । ଗୟୁର (ହସ୍ତୀର) ଶିର ଗୟାରେ, ନାଭି ଯାଜପୁରରେ ଏବଂ ପାଦ ମହେନ୍ଦ୍ରଗିରି ନିକଟସ୍ଥ ପୀଠାପୁରରେ ଅଛି । ମହାଭାରତ ଏବଂ ବାୟୁପୁରାଣରେ ଏହି ଯଜ୍ଞ ସ୍ଥାନର ଉଲ୍ଲେଖ ଅଛି । ଏହି ରାଜ୍ୟ ମଧ୍ୟ ନିବୃତ୍ତି ଧର୍ମ ବା ନିଷ୍କାମ ଧର୍ମର ପ୍ରଧାନ ପୀଠ ରୂପେ ପୂଜିତ । ପ୍ରବଳ ପ୍ରବୃତ୍ତି ମାର୍ଗର ଅନୁଷ୍ଠାତା ପର୍ଶୁରାମ ନିଜ ଜୀବନର ଅନ୍ତିମ ସମୟ କଳିଙ୍ଗର ମହେନ୍ଦ୍ର ଅଞ୍ଚଳରେ ଅତିବାହିତ କରିଥିଲେ ଏବଂ ବ୍ରହ୍ମାନୁଧ୍ୟାନରେ ନିଜକୁ ନିମଗ୍ନ କରିଥିଲେ । କଳିଙ୍ଗରେ ତାଙ୍କର ଅବସ୍ଥିତି ହେତୁ ଭାରତୀୟ ମୁନି, ଋଷି, ରାଜା ଏବଂ ଦେବତା ତାଙ୍କ ଦର୍ଶନ ନିମିତ୍ତ ଏହିଠାକୁ ଆସିଥିଲେ । ପର୍ଶୁରାମଙ୍କ ଅବସ୍ଥିତି ତଥା ଦେବତାମାନଙ୍କର ସମାଗମ ସହିତ ଅନ୍ୟ ଲୋକମାନଙ୍କର ସଂପୃକ୍ତି ଥିବାରୁ ଏହା ନିବୃତ୍ତି ମାର୍ଗର ପରମ ପୀଠ ରୂପେ ପୂଜିତ ହେଲା । ଅନ୍ୟ ଧର୍ମମାନଙ୍କର ପ୍ରସାର ହେଲା ପରେ ମଧ୍ୟ ଭାରତରେ ବିଷ୍ଣୁ, ଶିବ ଏବଂ ସୂର୍ଯ୍ୟଙ୍କର ପୂଜା ବୈଦିକ ଯୁଗରୁ ପ୍ରଚଳିତ । ଉତ୍କଳରେ ମଧ୍ୟ ଏହାର ପ୍ରଚଳନ ଥିଲା । ବୌଦ୍ଧଧର୍ମ ଏବଂ ଜୈନଧର୍ମର ପ୍ରବର୍ତ୍ତନ ତଥା ପ୍ରଚଳନ ହୋଇ ମଧ୍ୟ ତାହାର ପ୍ରସାର ହୋଇଥିଲା । ବୈଦିକ ଧର୍ମାନୁମୋଦିତ ଖାରବେଳଙ୍କର ଅଭିଷେକର ଉଲ୍ଲେଖ ରହିଛି । ଏହି ପ୍ରକାର ଓଡ଼ିଶାରେ ଜୈନ ଏବଂ ବୌଦ୍ଧଧର୍ମର ପ୍ରସାର ସହିତ ବୈଦିକ ସନାତନ ଧର୍ମର ମଧ୍ୟ ଅସ୍ତିତ୍ୱ ବଜାୟ ରହିଥିଲା ।

ବୈଦିକ ଧର୍ମ ପରେ ଉତ୍କଳରେ ଜୈନଧର୍ମ ଓ ବୌଦ୍ଧଧର୍ମର ଉତ୍ଥାନ ହେଲା । ବୌଦ୍ଧଧର୍ମର ମହାଯାନ ଶାଖାରେ ହିନ୍ଦୁ ଦେବତା ଅପ୍ରଧାନ ଏବଂ ବୁଦ୍ଧ ପ୍ରଧାନ ଦେବତା ରୂପେ ପୂଜିତ ହେଲେ । ଜ୍ଞାନପ୍ରଧାନ ବୌଦ୍ଧଧର୍ମ ପରେ ମହାଯାନ ଶାଖା ଅନ୍ତର୍ଗତ ପୂଜା, ଅର୍ଚ୍ଚନାଦି ରୂପରେ ଭକ୍ତିର ଆଶ୍ରୟ ନେଲା ।

'ବୌଦ୍ଧଗାନ ଓ ଦୋହା' ଜ୍ଞାନାଶ୍ରିତ ହେଲେ ମଧ୍ୟ ଭକ୍ତିହୀନ ନୁହେଁ; କାରଣ ଶ୍ରଦ୍ଧା ବା ଭକ୍ତିର ଆଶ୍ରୟ ବିନା ଜ୍ଞାନର ପରିପୁଷ୍ଟି ହୋଇପାରେ ନାହିଁ । କାହ୍ନୁପାଦ, ଲୁଇପାଦ, ଶବର ପାଦ ଆଦି ସିଦ୍ଧାଚାର୍ଯ୍ୟ ଉତ୍କଳର ଥିଲେ ଏବଂ ସେମାନଙ୍କର ଦୋହା ବା ଗୀତ ସକଳ ଓଡ଼ିଆ ଭାଷା ଏବଂ ସାହିତ୍ୟର ପ୍ରାଚୀନତମ ନିଦର୍ଶନ । ପଣ୍ଡିତମାନଙ୍କ ମତ ଅନୁସାରେ ଏହାର ସମୟ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀଠାରୁ ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ଥିଲା । ବୌଦ୍ଧ

Digitized by srujanika@gmail.com

ଧର୍ମର ପତନ ପରେ ଉତ୍କଳରେ ଶୈବ ଧର୍ମର ପ୍ରାଧାନ୍ୟ ଦେଖିବାକୁ ମିଳେ । ମୁଖଲିଙ୍ଗେଶ୍ୱର, ମହାଲିଙ୍ଗେଶ୍ୱର ଏବଂ ଭୁବନେଶ୍ୱରର ଶିଳାଲେଖରେ ଶିବଙ୍କର ଅର୍ଚ୍ଚନା ବର୍ଣ୍ଣନା କରାଯାଇଛି । "ରୁଦ୍ରସୁଧାନିଧି" ଏବଂ "ସୋମନାଥ ବ୍ରତ"ରେ ଶିବ ଭକ୍ତିର ମହିମା ବର୍ଣ୍ଣିତ । ଏତଦ୍‌ବ୍ୟତୀତ ଶିବ ପୂଜାର ଅଧିଷ୍ଠାନ ଅର୍ଥାତ୍ ଶିବ ଲିଙ୍ଗର ସ୍ଥାପନା ଯେତେ ଉତ୍କଳରେ ଦେଖିବାକୁ ମିଳେ ସେତେ ଭାରତର ଅନ୍ୟ କୌଣସି ସ୍ଥାନରେ ନାହିଁ । ଏଥିରୁ ଜଣାଯାଏ ଯେ କୌଣସି ସମୟରେ ଉତ୍କଳରେ ଶିବ ପୂଜାର ପ୍ରବଳ ପ୍ରସାର ଥିଲା ।

ଏହା ନିଶ୍ଚିତ ଯେ ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ବିଶୁଦ୍ଧ ଶୈବ ଧର୍ମର ପ୍ରବର୍ତ୍ତନ ହୋଇଥିଲା ଏବଂ ଏହି ଧର୍ମର ଅନେକ କଥିତ୍ତାଭୃଷତା ମାର୍ଜିତ ହୋଇଥିଲା । ଉତ୍କଳରେ ଏହି ମାର୍ଜିତ ଶୈବ ଧର୍ମର ପ୍ରସାର ହୋଇଥିଲା । ସେହି ସମୟରେ ଶାକ୍ତ ଧର୍ମର ମଧ୍ୟ ପ୍ରସାର ଘଟିଥିଲା ଓ ଏହା କ୍ରମଶଃ ବହୁଳଭାବେ ପ୍ରଚଳିତ ହୋଇଥିଲା । ଏହି ଶାକ୍ତ ଧର୍ମର ସାହିତ୍ୟ ଗ୍ରନ୍ଥମାନଙ୍କ ମଧ୍ୟରେ ଶାରଳା ଦାସଙ୍କ ମହାଭାରତ, ଚଣ୍ଡୀପୁରାଣ ଏବଂ ବିଲଙ୍କା ରାମାୟଣ ଆଦି ପ୍ରଧାନ । ଶାରଳା ଦାସ ତାଙ୍କ ମହାଭାରତରେ ସମସ୍ତ ଦେବତାଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କରିଥିଲେ ମଧ୍ୟ ଦୁର୍ଗା ରୂପିଣୀ ସାରଳା ଦେବୀଙ୍କୁ ନିଜର ଇଷ୍ଟଦେବୀ ରୂପେ ମାନି ଉପାସନା କରିଛନ୍ତି । ସେ ତାଙ୍କ କୃପାରୁ ଏହି ଶ୍ରେଷ୍ଠ ଗ୍ରନ୍ଥକୁ ଲେଖିବାକୁ ସମର୍ଥ ହୋଇଥିଲେ । ଉତ୍କଳରେ ଦୁର୍ଗାଙ୍କର ଅନେକ ନାମ ଅନୁସାରେ ଭିନ୍ନ ଭିନ୍ନ ସ୍ଥଳରେ ଭିନ୍ନ ଭିନ୍ନ ପ୍ରକାରର ମୂର୍ତ୍ତି ପ୍ରତିଷ୍ଠିତ । ଏମାନଙ୍କ ମଧ୍ୟରେ ଭଗଳା, ବିରଜା, ଶାରଳା, ଚର୍ଚ୍ଚିକା, ତାରା, ଚଣ୍ଡୀ, ଭଗାରିକା, କଟକେଶ୍ୱରୀ, ସମଲେଶ୍ୱରୀ, ମଙ୍ଗଳା ଆଦି ଉଲ୍ଲେଖଯୋଗ୍ୟ । ଏହା ବ୍ୟତୀତ ଉତ୍କଳର ପ୍ରତ୍ୟେକ ଗ୍ରାମରେ ଗ୍ରାମଦେବୀ ମଧ୍ୟ ବିଦ୍ୟମାନ । ପ୍ରତ୍ୟେକ ଗୃହରେ ବୃନ୍ଦାବତୀ ରୂପେ ଶକ୍ତି ହିଁ ପୂଜିତ ହେଉଛନ୍ତି ।

ଉତ୍କଳରେ ଦୁର୍ଗାପୂଜାର ଯେପରି ପ୍ରସାର ଅଛି ସେହିପରି କାଳୀ ପୂଜା ଆଦର ନାହିଁ । କାଳୀଙ୍କର ପ୍ରତିଷ୍ଠାପିତ ମୂର୍ତ୍ତି ସ୍ୱଳ୍ପ । ଗବେଷକମାନଙ୍କର ମତ ହେଉଛି ଯେ ବୌଦ୍ଧ ଧର୍ମର ପ୍ରଭାବ ଯୋଗୁ କାଳୀ ତଥା ଅନ୍ୟ ଦେବୀମାନଙ୍କର ପୂଜା ପ୍ରଚଳିତ ହେଲା । ଆବଶ୍ୟକ ହେଲେ ମଧ୍ୟ ଏଠାରେ ଏହି **ବିଷୟ** ବିଚାରଣୀୟ ନୁହେଁ; କିନ୍ତୁ ଉତ୍କଳରେ ଦୁର୍ଗାଙ୍କର

Digitized by srujanika@gmail.com

ମୃଣ୍ମୟ ବିଗ୍ରହର ପୂଜା ଅନୁଷ୍ଠାନର ଏବଂ ବହୁତ କମ ଦେଖାଯାଏ, ଆଜିକି ମଧ୍ୟ ଦୁର୍ଗାଙ୍କ ଉତ୍ସବ ସମୟରେ ଘରେ ଘରେ କେବଳ କଳସୀକୁ ପ୍ରତିମା ରୂପେ ଗ୍ରହଣ କରି ପୂଜା କରାଯାଇଥାଏ ।

ବୈଦିକ ଯୁଗରୁ ବିଷ୍ଣୁଙ୍କର ପୂଜା ଚଳି ଆସୁଅଛି । ଏହା କହିବା ଭ୍ରମ ଯେ ବୁଦ୍ଧଦେବଙ୍କ ପରେ ସେମାନଙ୍କର ମାହାତ୍ମ୍ୟ ବୃଦ୍ଧିପ୍ରାପ୍ତ ହେଲା; କାରଣ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ବେଦର ଟୀକାକାର ଯାସ୍କାଚାର୍ଯ୍ୟ ତାଙ୍କ ପୂର୍ବବର୍ତ୍ତୀ ଟୀକାକାର "ସାକପୂଣି"ଙ୍କର ବଚନ ଉଦ୍ଧାର କରିଥିଲେ । ସେଥିରେ ସେ "ବିଷ୍ଣୁଶିରଶ୍ରୀ" କହିଛନ୍ତି । ବିଷ୍ଣୁଙ୍କର ପୂଜା ଓ ପ୍ରତିପତ୍ତି ବୌଦ୍ଧଧର୍ମର ବହୁ ପୂର୍ବରୁ ପ୍ରଚଳିତ ଥିଲା ଏବଂ ଉତ୍କଳରେ "ବିଷ୍ଣୁ ପଦ୍ମ ପ୍ରଭୁ"ଙ୍କ ଆରାଧନା ଖ୍ରୀଷ୍ଟପୂର୍ବାବଧିରୁ ପ୍ରଚଳିତ ହେଲା । ଜଗନ୍ନାଥଙ୍କର ପ୍ରତିଷ୍ଠା ନାନା ଧର୍ମ ବିପର୍ଯ୍ୟୟରେ ପ୍ରମାଣ ପ୍ରଦାନ କରେ । ପ୍ରାଚୀନ କାଳରୁ ଜଗନ୍ନାଥ ବିଷ୍ଣୁରୂପେ ପୂଜିତ । ଉତ୍କଳର ପ୍ରାଚୀନ ରାଜବଂଶମାନଙ୍କ ମଧ୍ୟରୁ ବହୁତ ବୈଷ୍ଣବ ଥିଲେ । ବୌଦ୍ଧ ଏବଂ ଜୈନ ଧର୍ମର ପ୍ରଚଳନ ପରେ ଶୈବ ଏବଂ ବୈଷ୍ଣବ ଧର୍ମର ପୁନରୁତ୍ଥାନ ହୋଇଥିଲା । ଏହାପରେ ଶକ ଓ କୁଶାଣ ରାଜା ଶୈବ ବା ବୌଦ୍ଧଧର୍ମାବଲମ୍ବୀ ହେଲେ ଏବଂ ସେହି କାରଣରୁ ବୈଷ୍ଣବ ବା ବାସୁଦେବ ଧର୍ମ ପ୍ରତି ଅନୁରକ୍ତ ନ ଥିଲେ । ଗୁପ୍ତ ରାଜାଙ୍କ ସମୟରେ ବୈଷ୍ଣବ ଅଥବା ବ୍ରାହ୍ମଣ ଧର୍ମର ପୁନରୁତ୍ଥାନ ହେଲା । ହର୍ଷବର୍ଦ୍ଧନଙ୍କ ସମୟ ପର୍ଯ୍ୟନ୍ତ ବ୍ରାହ୍ମଣ ଧର୍ମରେ ଶିବ, ବିଷ୍ଣୁ ଆଦିଙ୍କର ପୂଜା ଭକ୍ତି-ସମନ୍ୱିତ ଥିଲା । ପରେ ରାଜନୈତିକ ବିଶୃଙ୍ଖଳା, ଧର୍ମରେ ବ୍ୟଭିଚାର ଏବଂ ମୁସଲମାନମାନଙ୍କର ଆକ୍ରମଣ ଯୋଗୁ ଧର୍ମର ଗତ୍ୟବରୋଧ ଆସିଗଲା ଏବଂ ଦକ୍ଷିଣରେ ଉତ୍ତରାଞ୍ଚଳର ବୈଷ୍ଣବମାନଙ୍କର ଅବସ୍ଥିତି ତଥା ଧର୍ମ-ପ୍ରଚାର ହେତୁ ତାମିଲ ଦେଶରେ ବୈଷ୍ଣବ ଧର୍ମର ବାସ୍ତବିକ ଉତ୍କର୍ଷ ସାଧିତ ହେଲା । ଭାଗବତରେ ଏ ବିଷୟରେ ସଙ୍କେତ ଦିଆଯାଇଛି—

"ଏହି କଳିଯୁଗରେ କୌଣସି କୌଣସି ଠାରେ କମ ଏବଂ ବିଶେଷ ରୂପରେ ଦ୍ରାବିଡ଼ ଦେଶରେ ବୈଷ୍ଣବ ଭଗବତ-ଭକ୍ତ ଅଧିକ ସଂଖ୍ୟାରେ ଜନ୍ମଗ୍ରହଣ କରିବେ । ଏହି ଦେଶରେ ତାମ୍ରପର୍ଣ୍ଣୀ, କୃତମାଳା, କାବେରୀ, ପ୍ରତୀଚୀ ନାମ ବିଶିଷ୍ଟ ମହାନଦୀଗଣ ପ୍ରବାହିତ ହେଉଛନ୍ତି । ଯେଉଁମାନେ ଏହି ନଦୀମାନଙ୍କର ଜଳ ପାନ କରନ୍ତି ସେମାନେ ଶୁଦ୍ଧଚିତ୍ତ

Digitized by srujanika@gmail.com

ହୋଇକରି ଭଗବତ-ଭକ୍ତି ପ୍ରାପ୍ତ ହୁଅନ୍ତି ।(୧) ଦକ୍ଷିଣରେ ଏହି ଭକ୍ତ-ମାନଙ୍କୁ ଆଲବାର ବୋଲି କୁହା ଯାଉଥିଲା । ଏମାନଙ୍କ ମଧ୍ୟରେ ନାଥମୁନି, ଯାମୁନାଚାର୍ଯ୍ୟ ଏବଂ ରାମାନୁଜ ପ୍ରସିଦ୍ଧ । ଏହି ରାମାନୁଜାଚାର୍ଯ୍ୟଙ୍କ ଦ୍ୱାରା ପ୍ରଚଳିତ ବୈଷ୍ଣବ ଧର୍ମ ଉତ୍କଳରେ ପରିପୁଷ୍ଟ ହେଲା । ଶଙ୍କରାଚାର୍ଯ୍ୟ ଶୈବ ହେଲାପରେ ମଧ୍ୟ ପଞ୍ଚଦେବତା ଉପାସନାର ପକ୍ଷପାତୀ ଥିଲେ । କାହାରି କାହାରି ମତରେ ସେ କୃଷ୍ଣଭକ୍ତ ମଧ୍ୟ ଥିଲେ । ରାମାନୁଜାଚାର୍ଯ୍ୟ ଏକାଦଶ ଶତାବ୍ଦୀରେ ଆବିର୍ଭୂତ ହୋଇଥିଲେ ।

ଜୟଦେବଙ୍କର ରାଧାକୃଷ୍ଣ ପ୍ରେମଲୀଳା ବର୍ଣ୍ଣନରେ ଯେଉଁ ପରକୀୟା ଭକ୍ତି ବର୍ଣ୍ଣିତ ତାହା ସହଜିୟା ଧର୍ମର ଶୁଦ୍ଧ ସଂସ୍କାର ରୂପେ ଗ୍ରହଣୀୟ । ଭାଗବତର ରାସପଞ୍ଚାଧ୍ୟାୟୀ ବର୍ଣ୍ଣନାରୁ ସହଜରେ ଜଣାଯାଏ ଯେ ସହଜିୟା ଧର୍ମର ମାନସିକ କ୍ଲାନ୍ତତା ଦୂର କରିବା ଲାଗି ଭଗବାନଙ୍କ ଦ୍ୱାରା ପରକୀୟା-ପ୍ରୀତି ଅର୍ଥାତ୍ ଜୀବ-ବ୍ରହ୍ମର ପରସ୍ପର ମିଳନଲୀଳା ଉଦ୍ଭାବିତ ହେଲା ।

ଉତ୍କଳରେ ମଧ୍ୱାଚାର୍ଯ୍ୟ, ନରହରି ତୀର୍ଥ ଆଦିଙ୍କ ଆଗମନ ହେତୁ ବୈଷ୍ଣବ ଧର୍ମ ଦୃଢ଼ ହେଲା । ଏହି ମହାପୁରୁଷମାନଙ୍କର ଆବିର୍ଭାବ ତଥା ଭାଗବତ ମୁଦ୍ରଣର ପ୍ରଚାର ହେତୁ ଚୈତନ୍ୟଦେବଙ୍କ ଆଗମନ ପୂର୍ବରୁ ଓଡ଼ିଶାରେ ବୈଷ୍ଣବ ଧର୍ମର ଶୁଦ୍ଧାଭକ୍ତି ଏବଂ ଜ୍ଞାନମିଶ୍ରା ଭକ୍ତିର ପ୍ରଚୁର ତଥା ପ୍ରସାର ହୋଇ ସାରିଥିଲା । କାରଣ ଭାଗବତରେ ଏ ଉଭୟର ବର୍ଣ୍ଣନା ଅଛି । ଚୈତନ୍ୟଙ୍କ ଉପସ୍ଥିତି ସମୟରେ ଏଠାରେ ପଞ୍ଚସଖା ଜ୍ଞାନମିଶ୍ରା ଭକ୍ତିର ଉପାସକ ଥିଲେ ଓ ରାୟରାମାନନ୍ଦ ଶୁଦ୍ଧାଭକ୍ତିର ପ୍ରଧାନ ଉପାସକ ଥିଲେ । ଚୈତନ୍ୟ ଉଭୟ ମତବାଦୀଙ୍କୁ ନିଜର ସଖା ରୂପେ ଗ୍ରହଣ କଲେ; କାରଣ ସେ ଅଚିନ୍ତ୍ୟ ଭେଦାଭେଦବାଦୀ ଥିଲେ । ଏହି ମତ ରାୟରାମାନନ୍ଦଙ୍କ ଦ୍ୱାରା ମଧ୍ୟ ସ୍ୱୀକୃତ ହୋଇଥିଲା । ଏହାର ଉଲ୍ଲେଖ କୃଷ୍ଣଦାସ କବିରାଜ ତାଙ୍କର "ଚୈତନ୍ୟ ଚରିତାମୃତ"ରେ ସ୍ପଷ୍ଟ ରୂପେ

(୧) କ୍ୱଚିତ୍ କ୍ୱଚିନ୍ମହାରାଜ ଦ୍ରାବିଡେଷୁ ଚ ଭୂରିଶଃ ।
ତାମ୍ରପର୍ଣ୍ଣୀ ନଦୀ ଯତ୍ର କୃତମାଲା ପୟସ୍ୱିନୀ ।
କାବେରୀ ଚ ମହାପୁଣ୍ୟା ପ୍ରତୀଚୀ ଚ ମହାନଦୀ ।
ଯେ ପିବନ୍ତି ଜଳଂ ତାସାଂ ମନୁଜା ମନୁଜେଶ୍ୱର ।
ପ୍ରାୟୋଭକ୍ତା ଭଗବତି ବାସୁଦେବେଽମଲାଶୟାଃ ।
—ଭାଗବତ, ଏକାଦଶସ୍କନ୍ଧ, ଅଧ୍ୟାୟ ୫, ଶ୍ଳୋକ ୩୯-୪୦

Digitized by srujanika@gmail.com

କରିଛନ୍ତି । ଜ୍ଞାନମିଶ୍ରା ଭକ୍ତମାନେ ପୁରୁଷୋତ୍ତମ ଧାମକୁ ନିତ୍ୟଧାମ ଏବଂ ଶ୍ରୀକୃଷ୍ଣଙ୍କୁ ଅବତାରୀ ପରିବର୍ତ୍ତେ ଅବତାର ରୂପେ ଗ୍ରହଣ କରିଛନ୍ତି । ଏମାନଙ୍କର ଭଜନ ହେଉଛି "ହରେ ରାମକୃଷ୍ଣ" । ଶ୍ରଦ୍ଧାଭକ୍ତିର ଉପାସକ ବୃନ୍ଦାବନକୁ ନିତ୍ୟଧାମ ଏବଂ ଶ୍ରୀକୃଷ୍ଣଙ୍କୁ ଅବତାରୀ ବୋଲି ମାନନ୍ତି ତଥା ସେମାନଙ୍କର ଭଜନ ହେଉଛି "ହରେ କୃଷ୍ଣ ରାମ" । କଳି ସନ୍ତରଣୋପନିଷଦରେ "ହରେ ରାମ କୃଷ୍ଣ" ଭଜନର ଉଲ୍ଲେଖ ଅଛି । ଅଧିକାରୀ ଭେଦରେ ଭଜନର ପ୍ରଭେଦ ନିର୍ଦ୍ଦେଶିତ ହୋଇଛି । ଶୁଦ୍ଧଭକ୍ତିବାଦୀ ସାଯୁଜ୍ୟ ଭକ୍ତିର ପକ୍ଷପାତୀ ନ ଥିଲେ । ସେମାନେ ରାଧାମାଧବ ଉପାସନାରେ ଅନୁପ୍ରାଣିତ ହୋଇ କୃଷ୍ଣଙ୍କର ସେବା କରୁଥିଲେ । ଏହି କାରଣରୁ ସେମାନଙ୍କର ଭଜନର ଧ୍ୱନି ମଧ୍ୟ ଭିନ୍ନ । ଜ୍ଞାନମିଶ୍ରା ଭକ୍ତ ସାଯୁଜ୍ୟ ମୁକ୍ତିର ପକ୍ଷପାତୀ ହୋଇଥିବାରୁ ତାଙ୍କର ଭଜନ ହେଉଛି "ହରେ ରାମ କୃଷ୍ଣ" । ଏହି ଭକ୍ତମାନେ ମୁକ୍ତିପରେ ଭଗବାନଙ୍କଠାରେ ଅହୈତୁକୀ ଭକ୍ତି କରନ୍ତି ।

ଶାରଳା ଦାସଙ୍କ ପରେ ମାର୍କଣ୍ଡ ଦାସଙ୍କର "ମହାଭାଷ" ଏବଂ "କେଶବ କୋଇଲି" ନାମକ ଦୁଇଟି ଦେବ୍ୟଗ୍ରନ୍ଥ ପରିଦୃଷ୍ଟ ହୁଏ । ମହାଭାଷରେ ଶିବଙ୍କ ମୁଖରେ ରାମଙ୍କର ପ୍ରଶସ୍ତି ଏବଂ "କେଶବ କୋଇଲି"ରେ ବାତ୍ସଲ୍ୟ ରସଦ୍ୱାରା କୃଷ୍ଣଙ୍କର ମହତ୍ତ୍ୱ ବର୍ଣ୍ଣିତ । ଏଥିରୁ ଜଣାଯାଇଛି ଯେ ଶାକ୍ତ ଧର୍ମ ପରେ ବୈଷ୍ଣବ ଧର୍ମର ପ୍ରବଳ ପ୍ରଚାର ହୋଇଥିଲା । ବଳରାମ ଦାସଙ୍କର "ରାମାୟଣ" ଏବଂ ଅର୍ଜୁନ ଦାସଙ୍କର "ରାମବିଭା" କାବ୍ୟରେ ରାମଲୀଳା ବର୍ଣ୍ଣିତ । ଜଗନ୍ନାଥ ଦାସଙ୍କ "ଭାଗବତ" ଅଚ୍ୟୁତାନନ୍ଦ ଦାସଙ୍କ "ହରିବଂଶ" ଏବଂ ଦ୍ୱିଜ ନାରାୟଣ ଦାସଙ୍କ "ହରିବଂଶ" ହେଉଛି ପରବର୍ତ୍ତୀ ରଚନା । ଅନ୍ୟାନ୍ୟ ସଖାଗଣ ତଥା ଅନନ୍ତ, ଅଚ୍ୟୁତ, ଯଶୋବନ୍ତଙ୍କ କୃତି ଶ୍ରୀକୃଷ୍ଣଙ୍କର ମହିମା ଗାନରେ ପୂର୍ଣ୍ଣ । ସେଥିରେ କୃଷ୍ଣ ନିରାକାର ତଥା ସାକାର ଉଭୟ ଭାବରେ ବର୍ଣ୍ଣିତ । ପଞ୍ଚସଖା ଜଗନ୍ନାଥଙ୍କର ସଖା ଏବଂ ଶାଖା ରୂପେ ବର୍ଣ୍ଣିତ ତଥା ଚୈତନ୍ୟଙ୍କ ସଖା ରୂପରେ ମଧ୍ୟ ସେମାନଙ୍କର ଗଣନା ହୁଏ । ପଞ୍ଚ ସଖାଙ୍କ ବ୍ୟତୀତ ଶ୍ରୀକୃଷ୍ଣଙ୍କୁ ଆଶ୍ରୟ କରି କେତେକ ବ୍ରହ୍ମତତ୍ତ୍ୱାତ୍ମକ ଗ୍ରନ୍ଥ ଲେଖା ଯାଇଅଛି । କପିଳେନ୍ଦ୍ର ବା ପୁରୁଷୋତ୍ତମ ଦେବଙ୍କ ସମସାମୟିକ ଦାମୋଦର ଦାସଙ୍କ "ରସ କୋଇଲି ଚଉତିଶା"ରେ ବିଷ୍ଣୁ ଭକ୍ତିର ପରିଚୟ ମିଳେ । ପଞ୍ଚସଖା

Digitized by srujanika@gmail.com

ଯୁଗ ପରେ କାବ୍ୟ ଯୁଗର ଆରମ୍ଭ । ଏହି ଯୁଗର ବିଭିନ୍ନ କାବ୍ୟରେ କବି-ମାନଙ୍କର ଭକ୍ତିଭାବ ମଧ୍ୟ ପ୍ରକଟିତ ହୋଇଛି ।

ପୁରାଣ, କାବ୍ୟ ଆଦିରୁ ଭକ୍ତି-ସାହିତ୍ୟର ଅନେକ ନିଦର୍ଶନ ଦିଆଯାଇ ପାରିବ । ଏହା ବ୍ୟତୀତ ଅନୁସନ୍ଧାନ କଲେ ଜଣାଯାଏ ଯେ, ଅନେକ ପ୍ରସିଦ୍ଧ ପୀଠର ଅବସ୍ଥିତି ହେତୁ ଓଡ଼ିଶାରେ ଭକ୍ତି ଧର୍ମ ଏବଂ ଭକ୍ତି ସାହିତ୍ୟର ସୃଷ୍ଟି ହୋଇଛି । ଉଦାହରଣ ନିମିତ୍ତ କଟକର ପରମହଂସ ପୀଠ, ଚଣ୍ଡୀ ପୀଠ, ଅଲକ୍ଷିତ ଦାସଙ୍କ ପୀଠ ଏବଂ ମହିମା ଗୋସାଇଁଙ୍କ ପୀଠ; ସମ୍ବଲପୁରରେ ସମଲେଶ୍ୱରୀ, ସୋନପୁରରେ ସୁରେଶ୍ୱରୀ, ଲଙ୍କେଶ୍ୱରୀ ଏବଂ ସମଲାଇ, ବଡ଼ମ୍ବାରେ ଭଟ୍ଟାରିକା, ବାଙ୍କିରେ ଚର୍ଚ୍ଚିକା, ଗଞ୍ଜାମରେ ତାରାତାରିଣୀ, ବାଣପୁରରେ ଭଗବତୀ ଏବଂ ଉଗ୍ରତାରା, ନୀଳାଚଳରେ ବିମଳା, ଯାଜପୁରରେ ବିରଜା, ଝଙ୍କଡ଼ରେ ଶାରଳା ଆଦି ପୀଠ ଅବସ୍ଥିତ ।

ଉତ୍କଳର ଧର୍ମାୟତନରେ ଦୁର୍ଗାମାଧବ-ଉପାସନା ଏକ ଅଭିନବ କଳ୍ପନା । ଅନ୍ୟ କୌଣସିଠାରୁ ଏହି ଉପାସନାର ସୂଚନା ମିଳେ ନାହିଁ । ଦୁର୍ଗାଙ୍କ ସହିତ ମାଧବଙ୍କର ପୂଜା ତଥା ପୁରୁଷୋତ୍ତମ, ବନଦୁର୍ଗା ପ୍ରଭୃତି ସହିତ ନୀଳମାଧବ ବା ଜଗନ୍ନାଥଙ୍କ ଉପାସନା ଭାରତୀୟ ଧର୍ମ-ଜଗତ ଏବଂ ଉପାସନା କ୍ଷେତ୍ରକୁ ଉତ୍କଳୀୟମାନଙ୍କର ଅନବଦ୍ୟ ଦାନ । ବହୁ ପ୍ରାଚୀନ କାଳରୁ ତନ୍ତ୍ର ସାଧନାର ଉତ୍କୃଷ୍ଟ କ୍ଷେତ୍ର ରୂପେ ସମ୍ମାନିତ ହେବା ଯୋଗୁ ଏହି ଭୂମି ନାନା ଶକ୍ତି ପୀଠରେ ପରିପୂର୍ଣ୍ଣ । ଭୁବନେଶ୍ୱର ସମୀପବର୍ତ୍ତୀ ଚଉଷଠି ଯୋଗିନୀ ପୀଠ, ବିରଜାପୀଠ ଏବଂ ନୀଳାଚଳର ଭୈରବ ପୀଠ ଜନସାଧାରଣଙ୍କ ହୃଦୟରେ ଭକ୍ତିଭାବ ସୃଷ୍ଟି କରେ । ଯାହା ହେଉନା କାହିଁକି ବିଭିନ୍ନ ଶାସ୍ତ୍ର, ପୁରାଣ ଏବଂ କାବ୍ୟାଦିରୁ ଉଦାହରଣ ନ ଦେଲେ ଉତ୍କଳର ଭକ୍ତି ସାହିତ୍ୟର ରୂପରେଖ ସ୍ପଷ୍ଟ ହୋଇ ପାରିବ ନାହିଁ ।

ପ୍ରଥମେ କୁହାଯାଇଛି ଯେ, "ବୌଦ୍ଧଗାନ ଓ ଦୋହା" ହେଉଛି ଉତ୍କଳ ସାହିତ୍ୟର ଆଦି ନିଦର୍ଶନ । ବୌଦ୍ଧଧର୍ମର ବଜ୍ରଯାନ ଶାଖାର ବିଭିନ୍ନ ଦୋହା ଏଥିରେ ସନ୍ନିବିଷ୍ଟ । କାହ୍ନୁପାଦ, ଲୁଇପାଦ, ଶବରୀପାଦ, ଡାଙ୍ଗପାଦ ଆଦି ଉତ୍କଳୀୟ ସାଧକ ବୌଦ୍ଧ ସହଜିୟା ଧର୍ମର ସିଦ୍ଧ ଥିଲେ । ଏମାନେ ଜ୍ଞାନବିଳାସୀ ଥିଲେ ତଥା ନିର୍ବାଣ-ପ୍ରାପ୍ତି ନିମିତ୍ତ ସଦା ଉନ୍ମୁଖ ରହୁଥିଲେ । ଶବରୀପାଦ ତାଙ୍କର ଏକ ଦୋହାରେ କହିଛନ୍ତି,

Digitized by srujanika@gmail.com

"ଗୁରୁ ବାକ୍ୟକୁ ଧନୁ ଏବଂ ନିଜର ମନକୁ ବାଣ କର । ଏକ ଶର ସନ୍ଧାନ କରି ପରମ ନିର୍ବାଣକୁ ଭେଦ କର ।"(୧)

କୃଷ୍ଣପାଦ କହନ୍ତି, "ଯାହାର ବର୍ଣ୍ଣ, ଚିହ୍ନ ରୂପ କିଛି ମଧ୍ୟ ଜଣାନାହିଁ; ତାହାର ବ୍ୟାଖ୍ୟା ଉକ୍ତି, ବାଣୀ, ଆଗମ ଏବଂ ବେଦ ଦ୍ୱାରା କିପରି କରାଯାଇ ପାରିବ ।(୨)

ରୁଦ୍ରସୁଧାନିଧି ଗ୍ରନ୍ଥରେ ଶିବଙ୍କର ମହିମା ବର୍ଣ୍ଣିତ । ଏହି ଗ୍ରନ୍ଥର ନାୟକ ହେଉଛନ୍ତି ଅଭିନବ ଚଇତନ ବା ଚନ୍ଦ୍ରଶେଖର ଯୋଗୀଶ୍ୱର । ସେ ଭକ୍ତିପୂତ ହୃଦୟରେ ଶିବଙ୍କର ପ୍ରାର୍ଥନା କରିଛନ୍ତି । ଏଥିରୁ ଶିବଭକ୍ତିର ନିଦର୍ଶନ ମିଳେ । ପ୍ରାର୍ଥନାରେ କୁହାଯାଇଛି—"ଚନ୍ଦ୍ରଶେଖର ଶେଷରେ ସ୍ୱପ୍ନରେ ଭୟ ହୋଇ ମହାଭୟ ପାଇ କରପଦ ଯୋଡ଼ି ସ୍ଥିର କରି କହିଲେ—ବ୍ୟଗ୍ରଚିତ୍ତ ଚିତ୍ତ ଭ୍ରାନ୍ତ ହେ ସ୍ୱାମି ତୋର ପଦାରବିନ୍ଦକୁ ଆଶ୍ରୟ କରି ମୁଁ ଭ୍ରମ ହୋଇଲି ଯନ୍ତ୍ରୀ ମୋତେ ମହା ଘୋର ନର୍କକୁ ନେଉଅଛୁ ସମ୍ପ୍ରତି । ହେ ଦେବ କେବଣ ସେ ଦାରୁଣ ବଚନ ଦେଲୁଁ ଆଜ୍ଞା । ତାହା ଚତୁର୍ଦ୍ଦଶ ଭୁବନ କେ କରିପାରିବ ଅବଜ୍ଞା ।" ଏହି ରୁଦ୍ର ସୁଧାନିଧିର ରଚନାକାଳ ହେଉଛି ଦ୍ୱାଦଶ ଶତାବ୍ଦୀ ।

ଶୂଦ୍ରମୁନି ଶାରଳା ଦାସ ବୁଦ୍ଧରୂପୀ ଜଗନ୍ନାଥଙ୍କର ବନ୍ଦନା କରିଛନ୍ତି; ମାତ୍ର ସେ ସୂର୍ଯ୍ୟ, ଗଣେଶ, ଶିବ, ଅଗ୍ନି, ବିଷ୍ଣୁ ଆଦିଙ୍କୁ ଭକ୍ତିପୂର୍ଣ୍ଣ ହୃଦୟରେ ନିଜର ଭକ୍ତି ଅର୍ଘ ଅର୍ପିତ କରିଛନ୍ତି । ଉତ୍କଳର ଅଧିକାଂଶ ଭକ୍ତ ହେଉଛନ୍ତି ପଞ୍ଚ ଦେବତାଙ୍କର ଉପାସକ । ଏହା କହିଲେ ଅତ୍ୟୁକ୍ତି ହେବନାହିଁ ଯେ ଶାରଳା ଦାସ ମା ଶାରଳା ଚଣ୍ଡୀଙ୍କର ବରପୁତ୍ର ଥିଲେ । ଦେବୀଙ୍କର ପ୍ରସନ୍ନତାରୁ ସେ ମହାଭାରତ, ରାମାୟଣ ରଚନାରେ ନିଜର ସ୍ୱତନ୍ତ୍ର ପ୍ରତିଭାର ପରିଚୟ ଦେଇଛନ୍ତି । ସେ ଲେଖିଛନ୍ତି—ଶାରଳା ଦାସ ଅନ୍ତରରେ ଶାକ୍ତ ଥିଲେ. ଏବଂ ତାଙ୍କ ରଚନାରେ ସେ ଲେଖିଛନ୍ତି ଯେ ଶାରଳା ଚଣ୍ଡୀ ସାକ୍ଷାତ ଭୈରବୀ । ମୁଁ (କବି ଶାରଳା ଦାସ) ତାଙ୍କର

---

(୧) "ଗୁରୁବାକ ପୁଆଁ ବନ୍ଧ ପିଅମଣବାଣେ
ଏକେ ସର ସନ୍ଧାନେ ବନ୍ଧ ବନ୍ଧ ପରମ ନିବାଣେ ।"
—ବୌଦ୍ଧଗାନ ଓ ଦୋହା

(୨) ଜାହେର ବାଣ ଚିହ୍ନ ରୁବ ନ ଜାଣୀ
ସୋ କୈସେ ଆଗମବେଂ ବଖାଣି—ବଖା

Digitized by srujanika@gmail.com

ସ୍ତୁତି । ସର୍ବମଙ୍ଗଳା ରୂପିଣୀ ମାତା କୁତୁହଳ ପୂର୍ବକ (ମୋର) ଗ୍ରନ୍ଥର ରସ ଗ୍ରହଣ କରନ୍ତୁ । (୧) ଶାରଳା ଦାସଙ୍କ ପୂର୍ବରୁ ଶୃଙ୍ଗାର, ହାସ୍ୟ ରମାଦିର ସମ୍ମିଶ୍ରଣରେ ବତ୍ସାଦାସ କଳସା ଚଉତିଶା ନାମକ ଏକ ସୁନ୍ଦର ଚଉତିଶା ଲେଖିଥିଲେ । ଏଥିରେ ଶିବଙ୍କ ବିବାହ ବର୍ଣ୍ଣିତ ହୋଇଅଛି । ଏହା ତ୍ରୟୋଦଶ ଶତାବ୍ଦୀର ପ୍ରଥମ ପାଦରେ ରଚିତ ହୋଇଥିଲା । ଏଥିରେ ବତ୍ସା ଦାସ ଲେଖିଛନ୍ତି, "ଜଗତର ଠାକୁର କପିଳାସରେ ଅଛନ୍ତି । କ୍ଷୁଦ୍ରବୁଦ୍ଧି ବତ୍ସା ଦାସ ସେଥିନିମନ୍ତେ କଳସା ପାଠ କରୁଛନ୍ତି । (୨)

ମାର୍କଣ୍ଡ ଦାସ ଶ୍ରୀକୃଷ୍ଣ ଏବଂ ଶ୍ରୀରାମଚନ୍ଦ୍ରଙ୍କର ମାହାତ୍ମ୍ୟ ଗାନ କରିଛନ୍ତି । "କେଶବ କୋଇଲି"ରେ କୃଷ୍ଣ ଏବଂ "ମହାଭାବ"ରେ ରାମଙ୍କ ସ୍ତୁତି ବର୍ଣ୍ଣିତ ହୋଇଛି । "କେଶବ କୋଇଲି" ତ ହେଉଛି ବାତ୍ସଲ୍ୟ ରସର ଏକ ମହାକାବ୍ୟ । ଯଶୋଦା କହୁଛନ୍ତି—"ହେ କୋଇଲି, ମୋର ପୁତ୍ର କେଶବ କାହା ବୋଲରେ ମଥୁରା ଗଲେ ଆଉ ଲେଉଟିଲେ ନାହିଁ ।" (୩) ମାତୃ ହୃଦୟର ବାତ୍ସଲ୍ୟ ଭାବର ଏକ ଅନବଦ୍ୟ ପ୍ରକାଶ ଏଥିରେ ସନ୍ନିବେଶିତ ହୋଇଅଛି ।

ଚୈତନ୍ୟଙ୍କ ବହୁତ ପୂର୍ବେ ଉତ୍କଳ ବୈଷ୍ଣବ ଧର୍ମର ଲୀଳାଭୂମି ରୂପେ ପ୍ରସିଦ୍ଧି ଲାଭ କରିଥିଲା । ଚୈତନ୍ୟଙ୍କର ଆଗମନର ପ୍ରାୟ ୫୦ ବର୍ଷ ପୂର୍ବେ ବୃନ୍ଦାବନ ଚମ୍ପୂ ରାୟ ଦାମୋଦର ଦାସ ଅତ୍ୟନ୍ତ ଲଳିତ ଏବଂ ମଧୁର

---

(୧) ସର୍ବମଙ୍ଗଳା ରୂପିଣୀ ମାତ ମଉହ୍ୱେଳା,
ଗ୍ରନ୍ଥର ରସ ଘେନଇ ହୋଇ କୁତୁହଳା ।
ଶାରଳା ଚଣ୍ଡୀ ସାକ୍ଷାତେ ଅଛଇ ଭୈରବୀ,
ତାହାର ପୁତ୍ର ଶାରଳା ଦାସ ମୁଁ କବି ।
ସୁପ୍ରସନ୍ନେ ଆଜ୍ଞା ମୋତେ ଦେଲେ ଶାକମ୍ଭରୀ,
ଲଭ ତୁ ବିଳାସ ମହାଭାରତ ବିସ୍ତାରି ।

(୨) କ୍ଷିତିପତି ଠାକୁର ଯେ କପିଳାସେ ସ୍ଥିତ,
କ୍ଷୁଦ୍ର ବୁଦ୍ଧି ବତ୍ସାଦାସ କଳସା ପଠନ୍ତି ।

(୩) କୋଇଲି, କେଶବ ଯେ ମଥୁରାକୁ ଗଲା,
କାହା ବୋଲେ ଗଲା ପୁତ୍ର ବାହୁଡ଼ି ନଇଲା ଲୋ କୋଇଲି
କୋଇଲି, ଖଣ୍ଡୁଷୀର ଦେବି ମୁଁ କାହାକୁ,
ଖାଇବାର ପୁତ୍ର ଗଲା ମଥୁରା ପୁରକୁ ଲୋ କୋଇଲି ।

Digitized by srujanika@gmail.com

ଭାବରେ ହୃଦୟର ଅଚଳାଭକ୍ତି ସହିତ "ରସକୁଲ୍ୟା ଚଉତିଶା" ରଚନା କରିଥିଲେ । ପ୍ରକୃତରେ ଏହା ରସର କୁଲ୍ୟା ।

ଭକ୍ତ ଗୋପୀଭାବରେ ଅନୁପ୍ରାଣିତ ହୋଇ ମହାଭାବରେ କହିଛନ୍ତି:—

"ନୟନେ ତା ରୂପ ଦେଖିଲି ଯାହା,
ନ ପାରଇ କହି ବଚନେ ତାହା ।
ନ ରୁଚଇ ମୋତେ ସଦନର ସୁଖ,
ନ ଦେଖି ଦେଖିଲି କଳାଶ୍ରୀମୁଖ ରେ ।
ନିବେଦନ ମୋର ଶୁଣ ଗୋ—
ନିଚେ ପ୍ରାଣବନ୍ଧୁ ଦେଇ ମୋତେ ରଖ ଆଜହୁଁ
ମୋର ଅଧିନ ଗୋ ।"

× ×

ଚତୁରାନନ ଯା ଦାସ ଗୋ
ଚନ୍ଦ୍ର ଶେଖର ପଲକ ନ ଟଳଇ ଗୃହିଁ
ଚକ୍ରଧର ବେଶ ଗୋ ।

ପଞ୍ଚସଖାମାନଙ୍କ ମଧ୍ୟରେ ବଳରାମ ବଡ଼ । ସେ ଯେପରି କୃଷ୍ଣଭକ୍ତ ସେହିପରି ମଧ୍ୟ ବ୍ରହ୍ମବାଦୀ । ସେ "ରାମାୟଣ" ଏବଂ "ଭାବ ସମୁଦ୍ର"ରେ ମଧ୍ୟ ଭକ୍ତିର ମହତ୍ତ୍ୱ ଦେଖାଇଛନ୍ତି । ରାମାୟଣରେ ତାଡ଼କାବଧ ପ୍ରସଙ୍ଗରେ କବି କହିଛନ୍ତି—

ପରଂବ୍ରହ୍ମ ଅବତାର ଧରେ ଜଙ୍ଗମ ରୂପ,
କେବଣ ଭାଗ୍ୟେ ନିଶାଚରେ ଖଣ୍ଡିଲା ସକଳପାପ ।

ଜଗନ୍ନାଥ ଦାସଙ୍କ "ଭାଗବତ" ଏବଂ "ଅଷ୍ଟ ଗୁଜ୍ଝରୀ"ରେ ତାଙ୍କ ଭକ୍ତିଭାବ ସ୍ପଷ୍ଟ ରୂପେ ପ୍ରତିଫଳିତ । ଏହିପରି ଭକ୍ତିଭାବ ଦେଖି ଚୈତନ୍ୟ ତାଙ୍କୁ "ଅତିବଡ଼ୀ" ଉପାଧି ଦେଇଥିଲେ । ଅଚ୍ୟୁତାନନ୍ଦ, ଅନନ୍ତ, ଯଶୋବନ୍ତ ଆଦି ସଖା ଜ୍ଞାନମିଶ୍ରା ଭକ୍ତ ଥିଲେ ।

– ପୂର୍ବରୁ ସୂଚିତ ହୋଇଛି ଯେ ପଞ୍ଚସଖା ଯୁଗ ପରେ କାବ୍ୟ ଯୁଗ ଆରମ୍ଭ । ଏହି ଯୁଗର ସ୍ମାରକ ସ୍ୱରୂପ ଅର୍ଜ୍ଜୁନ ଦାସଙ୍କ "ରାମ ବିଭା" କାବ୍ୟ ଓଡ଼ିଶାରେ ଆଜ ପର୍ଯ୍ୟନ୍ତ ପ୍ରାପ୍ତ କାବ୍ୟମାନଙ୍କ ମଧ୍ୟରେ ସର୍ବପ୍ରଥମ ବୋଲି ଗୃହୀତ ହୋଇଛି । ସେଥିରେ ରାମ ଭକ୍ତିର ନିଦର୍ଶନ ମିଳେ । ପରେ ବହୁ କବି ପୁରାଣ ଆଧାରରେ କୃଷ୍ଣ ମହିମା ଏବଂ ଲୀଳା-କୀର୍ତ୍ତନ ସମନ୍ୱିତ କାବ୍ୟ

Digitized by srujanika@gmail.com

ରଚନା କରିଅଛନ୍ତି । ସେମାନଙ୍କ ମଧ୍ୟରେ ଶିଶୁ ଶଙ୍କରଙ୍କ "ଉଷାଭିଳାଷ" ଏବଂ ଦେବଦୁର୍ଲ୍ଲଭ ଦାସଙ୍କ "ରହସ୍ୟ ମଞ୍ଜରୀ" ହେଉଛି ଅପୂର୍ବ ଲଳିତ, ମଧୁର ଏବଂ ସଙ୍ଗୀତମୟ କାବ୍ୟ । "ରହସ୍ୟ ମଞ୍ଜରୀ" କାବ୍ୟରେ କୃଷ୍ଣଙ୍କର ଅପୂର୍ବ ମହିମା ବର୍ଣ୍ଣିତ । ଗୋପୀରାସ ପ୍ରସଙ୍ଗରେ ଶିଶୁ ଶଙ୍କର ଏକ ସ୍ଥାନରେ ଲେଖିଛନ୍ତି—

"ଗାବନ୍ତି ବାବନ୍ତି ବା ନୃତ୍ୟନ୍ତି ବାଳା
ଉନ୍ମାଦ ମଦନ ସରବେ ଭେଳା ।
ଝଲମଲ ଝଟକତ ତାଟଙ୍କ ଗଣ୍ଡେ,
ବିଦ୍ୟୁତ୍ ଖେଳେ କି ଜମ୍ବୁତ ଖଣ୍ଡେ
ରଙ୍ଗିମା ଅଧରେ ଭଙ୍ଗିମା ଗୀତ୍,
ଲୋଚନ ବନ୍ଧେ କୃଷ୍ଣ ମୁଖ ଚନ୍ଦେ ।

କବି ଦେବଦୁର୍ଲ୍ଲଭ ରାଧାଭାବରେ ଅନୁପ୍ରାଣିତ ହୋଇ କହିଛନ୍ତି—

"ଦୂତୀ ତୁ କହିଲି ପାଖକୁ ଯାଉ କିନା,
ବସନ କଙ୍କଣ ଯାହା ମାଗୁ ତାହା ନଉ କିନା ।"

ଅନ୍ୟ ଏକ ସ୍ଥାନରେ—

"ଚଉର ଭକ୍ତି ମଧ୍ୟେ ପ୍ରେମ ଭକ୍ତି ଅଟେ ସାର,
ସେ ଭକ୍ତି ଅଟଇ କୋଟି ଗୋପୀମାନଙ୍କର ଯେ,
ଗୋପୀଙ୍କି ଭଜିଲି ଭକ୍ତି ପ୍ରେମ ଭକ୍ତି ପାଇ,
ବିନା ପ୍ରେମ ଭକ୍ତିରେ ଦର୍ଶନ ମୋତେ ନାହିଁ ।"

ଭକ୍ତ ଜଗନ୍ନାଥ ଦାସଙ୍କ ଜୀବନ-ଚରିତ ଅବଲମ୍ବନରେ ଦିବାକର ଦାସ "ଜଗନ୍ନାଥ ଚରିତାମୃତ" ଲେଖିଛନ୍ତି । ଭକ୍ତ ଜୀବନୀ ଲେଖିବାରେ ସେ ସର୍ବଶ୍ରେଷ୍ଠ ଥିଲେ ।

ଯବନ ହୋଇ ମଧ୍ୟ ସାଲବେଗ ନୀଳାଚଳ ଜଗନ୍ନାଥଙ୍କର ଉପାସକ ତଥା ଶ୍ରେଷ୍ଠ ପୂଜାରୀ ଥିଲେ । ତାଙ୍କର ବହୁତ ଭଜନ ଏବଂ ଜଣାଣରୁ ଏହା ସ୍ପଷ୍ଟ । ସେ ଏକ ସ୍ଥାନରେ ଲେଖିଛନ୍ତି—

"ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ,
ମୋର ଆରତ ନଳିନୀ ବନ କର ଦଳନ ।"

× × ×

ଜଗବନ୍ଧୁ, ହେ ଗୋସାଇଁ,
ମୋହ ଥିବା ଯାକେ ନନ୍ଦଘୋଷେ ଥିବ ରହି ।

Digitized by srujanika@gmail.com

ଧନଞ୍ଜୟ ଭଞ୍ଜଙ୍କ "ରାମ ବିଳାସ" (ସପ୍ତଦଶ ଶତାବ୍ଦୀ) ମହାକାବ୍ୟରେ ରାମଚନ୍ଦ୍ରଙ୍କ ଲୀଳା ବର୍ଣ୍ଣିତ । ଏଥିରେ ତାଙ୍କର ରାମଭକ୍ତି ପ୍ରଦର୍ଶିତ ହୋଇଛି ।

ଦୀନକୃଷ୍ଣ ଦାସ ଭକ୍ତକବି ଥିଲେ । ଭକ୍ତି ରସାତ୍ମକ କାବ୍ୟ ଲେଖିକରି ସେ କାବ୍ୟ-ଜଗତରେ ବିଶେଷ ଯଶ ଅର୍ଜନ କରିଛନ୍ତି । ସେ କହିଛନ୍ତି—

"କାହିଁକି ମୋତେ ସଂସାର ଲଟ ମଧ୍ୟରେ ପ୍ରଭୁ କଲ ସଂଘଟ,
କି କେ ନକଲ ଚରଣ ପଦ୍ମ କୁସୁମ ଲିଟ ହେ,
କାହୁଁ ଛୁଡ଼ନ୍ତି ଭଗତବାଟ ଆନନ୍ଦେ ହୋଇ କରନ୍ତି ନାଟ
ଏବେ ଅନେକ ରୂପ କଳନା ଏ ପୋଡ଼ା ପେଟ ହେ ।"

ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ଉତ୍କଳର କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଏକ ପ୍ରସିଦ୍ଧ ରାଜପରିବାରରେ ଆବିର୍ଭାବ ହୋଇଥିଲା । କଥିତ ଅଛି ଯେ, ସେ ରାମତାରକ ମନ୍ତ୍ରଦ୍ୱାରା ସିଦ୍ଧିପ୍ରାପ୍ତ ହୋଇଥିଲେ ଓ ଦେବୀଙ୍କର ବର ମଧ୍ୟ ଲାଭ କରିଥିଲେ । ଆହୁରି ମଧ୍ୟ ସେ ରାମୋପାସକ ରୂପେ ପ୍ରସିଦ୍ଧ ହେବାପରେ ମଧ୍ୟ କୃଷ୍ଣ ଲୀଳାତ୍ମକ କାବ୍ୟ ରଚନା କରିଛନ୍ତି । ତାଙ୍କର ଇଷ୍ଟଦେବୀ ଦୁର୍ଗା ଥିଲେ । ସେ ଦେବୀଙ୍କର ସ୍ତୁତି ସହିତ ଶିବଙ୍କୁ ପରମଗୁରୁ ରୂପେ ଗ୍ରହଣ କରି ସ୍ୱୀୟ ଶକ୍ତି ପ୍ରଦର୍ଶନ କରିଛନ୍ତି । ସୂର୍ଯ୍ୟବଂଶୀ ହୋଇଥିବାରୁ ସେ ବୈଦେହୀଶ ବିଳାସରେ ସୂର୍ଯ୍ୟଙ୍କର ସ୍ତୁତି ଓ "କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ"ରେ ଜଗନ୍ନାଥଙ୍କୁ ସ୍ତୁତି କରିଅଛନ୍ତି । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ସେ କହିଛନ୍ତି—

"ମହିମା ଅନନ୍ତ ପ୍ରଭୋ ! ମହିମା ଅନନ୍ତ,
ମନୋବାଣୀ ସହୋଦର ହୋଇଥାଇ ଖ୍ୟାତ ।
ଅଗୋଚର କରି ବିଭୋ ଅଗୋଚର କରି,
ଯୁଗେ ଯୁଗେ ଧରି ନାନା ବିଧି ଅବତାର ।"

ଉପେନ୍ଦ୍ରଭଞ୍ଜ ଶୁଦ୍ଧାଭକ୍ତିର ଉପାସକ ନ ଥିଲେ । ସେ ପଞ୍ଚଦେବତାଙ୍କର ଉପାସକ ତଥା ସ୍ମାର୍ତ୍ତବୈଷ୍ଣବ ଥିଲେ । ଉତ୍କଳରେ ଚୈତନ୍ୟଙ୍କ ଆଗମନ ପୂର୍ବରୁ ରାୟରାମାନନ୍ଦ ବ୍ରଜ ଭାଷାରେ ଭକ୍ତି ରସାତ୍ମକ ପଦ୍ୟାବଳୀ ରଚନା କରିଥିଲେ । ତାଙ୍କର ସଂସ୍କୃତ ନାଟକ "ଜଗନ୍ନାଥ ବଲ୍ଲଭ"ରେ ତାଙ୍କ ଭକ୍ତିଭାବ ପ୍ରଦର୍ଶିତ ହୋଇଛି ।

Digitized by srujanika@gmail.com

ଉପେନ୍ଦ୍ର ଭଞ୍ଜଙ୍କ ସମସାମୟିକ ବୃନ୍ଦାବତୀ ଦାସୀ ଶୁଦ୍ଧାଭକ୍ତିର ଉପାସିକା ଥିଲେ । ସେ ଏବଂ ତାଙ୍କ ସ୍ୱାମୀ ଚନ୍ଦ୍ରଶେଖର, ଶ୍ୱଶୁର ଜଗନ୍ନାଥ, ପୁତ୍ର ଶ୍ୟାମଦାସ, ପୌତ୍ର କୃପାସିନ୍ଧୁ ଦାସ ଆଦି ସମସ୍ତେ କୃଷ୍ଣ ଭକ୍ତ ଥିଲେ । ସେ କୃଷ୍ଣ ଲୀଳାତ୍ମକ ଗ୍ରନ୍ଥ ରଚନା କରି ନିଜ ଜୀବନକୁ ସାର୍ଥକ କରିଛନ୍ତି । ବୃନ୍ଦାବତୀ ଦାସୀଙ୍କ "ପୂର୍ଣ୍ଣତମ ଚନ୍ଦ୍ରୋଦୟ" ଶୁଦ୍ଧାଭକ୍ତି ମାର୍ଗର ତତ୍ତ୍ୱମୟ ଗ୍ରନ୍ଥ । ଏହି ସମୟରେ ଅଦ୍ଭୁତକର୍ମା ଭୂପତି ପଣ୍ଡିତ ନାମରେ ଏକ ସାରସ୍ୱତ ବ୍ରାହ୍ମଣ ଉତ୍କଳକୁ ଆସିଥିଲେ । ସେ ଉତ୍କଳୀୟ ଭାଷା ଶିକ୍ଷା କଲେ ଓ ଜ୍ଞାନ-ମିଶ୍ରା ଭକ୍ତିର ଉପାସକ ଚୈତନ୍ୟ ଦାସଙ୍କଠାରୁ ଦୀକ୍ଷା ନେଇଥିଲେ । ପୁନଶ୍ଚ ଜଗନ୍ନାଥ ଦାସଙ୍କର ପଞ୍ଚଶିଷ୍ୟ ରୂପେ ତାଙ୍କ "ପ୍ରେମ ପଞ୍ଚାମୃତ"କୁ ସୁନ୍ଦର, ଲଳିତ, ମଧୁର ତଥା ଲୋକପ୍ରିୟ ଭାଷାରେ ଲେଖିଯାଇ ଅଛନ୍ତି । ଦୀନକୃଷ୍ଣଙ୍କ ସଦୃଶ ସେ ମଧ୍ୟ ଜ୍ଞାନମିଶ୍ରା ଭକ୍ତମାନଙ୍କ ମଧ୍ୟରେ ପରିଗଣିତ ହୁଅନ୍ତି । କାରଣ କୃଷ୍ଣଙ୍କୁ ଇଷ୍ଟଦେବ ରୂପେ ସ୍ୱୀକାର କରି ମଧ୍ୟ ସେ ପରମବ୍ରହ୍ମ ଜଗନ୍ନାଥଙ୍କୁ ଅବତାରୀ ଭାବେ ଗ୍ରହଣ କରିଛନ୍ତି ।

ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମ କିଶୋରଦାସଙ୍କର ଶିଷ୍ୟ ଓ ଶୁଦ୍ଧଭକ୍ତି ମାର୍ଗର ଉପାସକ ଥିଲେ । ତାଙ୍କଦ୍ୱାରା ରଚିତ "ଯୁଗଳ-ରସାମୃତ-ଲହରୀ" "ଯୁଗଳ-ରସାମୃତ-ଭଉଁରୀ", "ଚଉଁରୀ" ଏବଂ "ଚୌର ଚିନ୍ତାମଣି", "ପ୍ରେମ ତରଙ୍ଗିଣୀ", "ବ୍ରଜମଧୁର ବିଳାସ" ଆଦି କୃଷ୍ଣ ଲୀଳାତ୍ମକ କାବ୍ୟ । ତାଙ୍କର ପଞ୍ଚଶିଷ୍ୟ ଥିଲେ ଭକ୍ତକବି ଅଭିମନ୍ୟୁ । ଦିବ୍ୟ କୋକିଳ ସଦୃଶ ସେ କୃଷ୍ଣଲୀଳା ମଧ୍ୟ ଗାନ କରିଛନ୍ତି । ତାଙ୍କର ରଚନାବଳୀ ଶବ୍ଦାଳଙ୍କାର ତଥା ଅର୍ଥାଳଙ୍କାରରେ ପରିପୂର୍ଣ୍ଣ । ସ୍ୱରଚିତ "ବିଦଗ୍ଧ ଚିନ୍ତାମଣି" କାବ୍ୟ ପ୍ରୀତିଭକ୍ତିର ଶ୍ରେଷ୍ଠ ନିଦର୍ଶନ । ଏହା ଏକ ଅପୂର୍ବ ଭକ୍ତିମୂଳକ କାବ୍ୟ । ଓଡ଼ିଶାରେ ନୁହେଁ, ଭାରତୀୟ ଭାଷା ଓ ବୈଷ୍ଣବ ଦର୍ଶନମାନଙ୍କ ମଧ୍ୟରେ ଏପରି ରସାତ୍ମକ ଦାର୍ଶନିକ ଅଳଙ୍କାର ପୂର୍ଣ୍ଣ, ଭକ୍ତି ରସାତ୍ମକ ବିରାଟ କାବ୍ୟ ଆଉ ନାହିଁ ।

"ଶ୍ରୀ ବୃନ୍ଦାବନେ ଶ୍ରୀ ରାସମଣ୍ଡଳେ
ପ୍ରେମ ତନ୍ମୟ ଶୁଦ୍ଧଭାବ ଭୋଳେ,
ହା ରାଧାମୋହନ ଉଚ୍ଚେ ଉଚ୍ଚାରି,
ସତେ କି ଏ ଜୀବ ଯିବ ବାହାରି ।
ଅଭିମନ୍ୟୁ କବି, ବାଞ୍ଛା ପୂରିଅ ବ୍ରଜ ଦେବଦେବୀ

(ବିଦଗ୍ଧ ଚିନ୍ତାମଣି)

Digitized by srujanika@gmail.com

ସପ୍ତଦଶ ଶତାବ୍ଦୀର ଶେଷ ଭାଗରେ ଭକ୍ତିମାର୍ଗର କବି ବନମାଳୀଙ୍କର ଜନ୍ମ ହୋଇଥିଲା । ତାଙ୍କର "ବୈଷ୍ଣବ ପଦ୍ୟାବଳୀ" ଭକ୍ତି ଭାବର ରସ ତରଙ୍ଗିଣୀ ।

"ଦୀନବନ୍ଧୁ, ଡାଇତାରି, ଦୁଃଖ ନ ଗଲା ମୋହର,
ହେଲି କି ନିଷ୍ଠୁର ଚିତ୍ତ ମିଳାଗଲେ କିଜେ ହରି ।"

× × ×

ଦୀନବନ୍ଧୁ ପ୍ରଭୁ ବୋଲି ବଳେ ମୁଁ ଆଶ୍ରୟ କଲି,
ଦେଖୁ ଦେଖୁ ଭାସିଗଲି କେ ଆଉ କରିବ ପାର ।
ରଖ ବା ନ ରଖ ମୋତେ ଶରଣ ତୋ ପାଦ ଗତେ,
କହେ ବନମାଳୀ ଗୀତେ, ବସିଅଛି ଧ୍ୟାନ କରି ।

ଉପର୍ଯ୍ୟୁକ୍ତ ଛନ୍ଦ ତାଙ୍କର ବିଶୁଦ୍ଧ ଭକ୍ତି ଭାବର ପରିଚୟ ଦିଏ ।

ଭକ୍ତଚରଣ ମଧ୍ୟ ଜଣେ ରସିକ କବି ଥିଲେ । ବୈଷ୍ଣବ କାବ୍ୟ ସାହିତ୍ୟକୁ ତାଙ୍କର ଦାନ ଅତୁଳନୀୟ । ତାଙ୍କର "ମନବୋଧ ଚଉତିଶା" ଏବଂ "କଳାକଳେବର ଚଉତିଶା"ରେ ଭକ୍ତି ପ୍ରବଣତା ପୂର୍ଣ୍ଣ ଭାବରେ ବିଦ୍ୟମାନ । କୃଷ୍ଣଙ୍କର ଐଶ୍ୱର୍ଯ୍ୟ-ମାଧୁର୍ଯ୍ୟ ଲୀଳା-ମିଶ୍ରିତ "ମଥୁରା ମଙ୍ଗଳ" କାବ୍ୟରେ କବି ସ୍ୱୀୟ ଭକ୍ତି ଭାବର ନିଦର୍ଶନ ଦେଇଛନ୍ତି—

"ସର୍ବ ଜୀବେ ଦୟା ବହି, ମୁଖେ ହରେ କୃଷ୍ଣ କହି,
କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ,
ସହିତେ କରି ତେଜ ଏ ଷଡ଼ ଅରି
ସଦାକାଳେ କରନ୍ତି ଏ ବାଧ ହେ ନରମାନେ ।

× × ×

ମନବୋଧ ଚଉତିଶାରେ ମଧ୍ୟ ସେ ଲେଖିଛନ୍ତି—

"କହଇ ମନ ଆରେ ମୋ ବୋଲ କର,
କଳା ଶ୍ରୀମୁଖ ବାରେ ଦେଖିବା ପାଇଁ ରେ ।
ଖଣ୍ଡି କି ଖଣ୍ଡି ତୋର ପିଞ୍ଜରା କାଟି,
ଖାଉଥିବେ ଶ୍ୱାନ ଶୃଗାଳ ବାଣ୍ଟି ରେ ।
ଗଣ୍ଠିରେ ବାନ୍ଧିନେଲେ କେତେ କେ ଧନ ରେ ।"

କବିସୂର୍ଯ୍ୟ ବଳଦେବ ଅଦ୍ଭୁତକର୍ମା ପ୍ରତିଭାବନ୍ତ କବି ଥିଲେ । ସେ "ଜଗନ୍ନାଥ ଜଣାଣ" ଲେଖିଛନ୍ତି । ଯାହାର ବାସ୍ତବିକ ନାମ ହେଉଛି

Digitized by srujanika@gmail.com

"ସର୍ପ ଜଣାଣ" । ସେଥିରେ ସେ ବ୍ୟାଜସ୍ତୁତିଦ୍ୱାରା ଜଗନ୍ନାଥଙ୍କର ପ୍ରାର୍ଥନା କରିଛନ୍ତି ଏବଂ ଜଗନ୍ନାଥଙ୍କୁ ସର୍ପ ରୂପେ ବର୍ଣ୍ଣନା କରିବାରେ ସଙ୍କୋଚ କରି ନାହାନ୍ତି ।

"ବାଧିଲି ଜାଣି କ୍ଷମା କର ନୋହିଲେ ରମା ରମଣ ଦଣ୍ଡେ ଦିଅ ଟାଳି
ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ ଭରଣା କରିଦେବ ଗାଳି,
ହେ କୃପାନିଧି, କରୁଣା ସିନ୍ଧୁ ବୋଲି କରି,
କହନ୍ତି ବୁଧେ ତରମରି,
କାଳସର୍ପ ଆପଣ କବଳ କର ପ୍ରାଣ ପବନ ମାନଙ୍କ ସବୁରି ।"

କବିସୂର୍ଯ୍ୟଙ୍କର 'କିଶୋର ଚନ୍ଦ୍ରାନନ ଚମ୍ପୂ'ରେ କୃଷ୍ଣଙ୍କର ମାଧୁର୍ଯ୍ୟ ଲୀଳା ବର୍ଣ୍ଣିତ ହୋଇଛି । ସଙ୍ଗୀତର ଚମତ୍କାରିତା ଯୋଗୁ ଏହା ଉତ୍କଳରେ ଘରେ ଘରେ ଆଦୃତ ତଥା ପଠିତ ।

ଓଡ଼ିଶାର ଲୋକପ୍ରିୟ ଭକ୍ତକବି, କବି କଳହଂସ ଗୋପାଳକୃଷ୍ଣ ଭକ୍ତିମୂଳକ କବିତା ରଚନା କରିଥିଲେ । ସେ ଲେଖିଛନ୍ତି—

"ଭ୍ରମନା ଭବ ଭୋଗ ଲୋଭରେ ଲଭି ଧନ ପ୍ରମଦାରେ,
ଭବ ସରସିଜ ଭବ ଦୁର୍ଲଭ ପ୍ରେମଭକ୍ତି ଦାରେ ।"

× × ×

ମୋକ୍ଷ ପଦକୁ ଲକ୍ଷ୍ୟ ନ କରି ରହିଯା ଅଳିଗାରେ,
ରାସେଶ୍ୱରୀଙ୍କ କିଙ୍କର ହୋଇ ଘରକର ବ୍ରଜ ଗାଁରେ ।"

ଉପର୍ଯ୍ୟୁକ୍ତ କବିମାନଙ୍କ ବ୍ୟତୀତ ଉତ୍କଳର ଅନ୍ୟ କେତେକ ଭକ୍ତକବି ଭକ୍ତିରସାତ୍ମକ କବିତା ଲେଖିକରି ଭକ୍ତିର ମନ୍ଦାକିନୀ ପ୍ରବାହିତ କରିଛନ୍ତି । ସେମାନଙ୍କ ମଧ୍ୟରେ ହନୁମାନ ରାଯ୍‌ଗୁରୁ, ଗୋବିନ୍ଦ ରାଯ୍‌ଗୁରୁ, ଗୌର ଚରଣ ଅଧିକାରୀ, ଗୌରହରି ପରିଚ୍ଛା, ଦିନାଇ ଦାସ, ପୀତାମ୍ବର ଦାସ, କୃଷ୍ଣ ସିଂହ, ସୂର୍ଯ୍ୟମଣି ଚ୍ୟାଉ ପଟ୍ଟନାୟକ, ବିଶ୍ୱନାଥ ଖୁଣ୍ଟିଆ, କୃପାସିନ୍ଧୁ ସାମନ୍ତ, ଯଦୁମଣି ମହାପାତ୍ର, ନିତ୍ୟାନନ୍ଦ, ବ୍ରଜନାଥ ବଡ଼ଜେନା, ହରିବନ୍ଧୁ ପଟ୍ଟନାୟକ, ଭରତ ଶେଣ, ଈଶ୍ୱର ଦାସ ଆଦି ଉଲ୍ଲେଖନୀୟ ।

ଏହି ପବିତ୍ର ପୀଠରେ ସକଳ ପ୍ରକାର ଜାତି, ଧର୍ମ ଏବଂ ବର୍ଣ୍ଣର ଲୋକ ସାହିତ୍ୟ ସୃଷ୍ଟି ଦିଗରେ ଧ୍ୟାନ ଦେଇଛନ୍ତି ।

ଉତ୍କଳରେ ପ୍ରାଚୀନ କାଳରୁ ସୂର୍ଯ୍ୟଙ୍କର ଉପାସନା ଚଳି ଆସୁ-ଅଛି । ଜଗତ-ବିଖ୍ୟାତ କୋଣାର୍କର ସୂର୍ଯ୍ୟ ମନ୍ଦିର ଏବଂ କନକାର ଶିଳା-ଚତୁର୍ସ୍ଥିତ ମୂର୍ଯ୍ୟମୂର୍ତ୍ତି ଏହାର ଜ୍ୱଳନ୍ତ ପ୍ରମାଣ । ଏହା ବ୍ୟତୀତ

Digitized by srujanika@gmail.com

ମହାବିନାୟକରେ ଗଣେଶ ମୂର୍ତ୍ତିର ଅବସ୍ଥିତି ମଧ୍ୟ ଗାଣପତ୍ୟ ପୂଜାର ପ୍ରାମାଣିକ ନିଦର୍ଶନ । ପୁନଶ୍ଚ ଅରକ୍ଷିତ ଦାସଙ୍କ ଆଜ୍ଞା ଧର୍ମ, ତାଙ୍କର ମହି-ମଣ୍ଡଳ ଗୀତା ତଥା ଭଜନ, ଜ୍ଞାନମିଶ୍ରା ଭକ୍ତିର ପରିଚୟସୂଚକ । ମହିମା ଗୋସାଇଁଙ୍କ ଦ୍ୱାରା ପ୍ରଚାରିତ ଅଲେଖ ଧର୍ମର ଅନ୍ଧ ପ୍ରଚାରକ କବି ଭୀମା ଭୋଇଙ୍କଦ୍ୱାରା ରଚିତ ସ୍ତୁତିଗ୍ରନ୍ଥ—ଚିନ୍ତାମଣି, ବ୍ରହ୍ମନିରୂପଣ ଗୀତା, ଭଜନ, ଚୌପଦୀ ଆଦିରେ ଭକ୍ତିର ପରାକାଷ୍ଠା ପ୍ରଦର୍ଶିତ । ସତ୍ୟନାରାୟଣ ବା ସତ୍ୟପୀର ପୂଜା ମଧ୍ୟରେ ଉତ୍କଳୀୟ ଜନସାଧାରଣଙ୍କର ଭକ୍ତିର ସୁନ୍ଦର ପରିଚୟ ମିଳେ ।

ଆଧୁନିକ ଯୁଗରେ ମଧ୍ୟ କେତେକ ଭକ୍ତକବି ଓଡ଼ିଆ ଭକ୍ତି ସାହିତ୍ୟର ଅଭିବୃଦ୍ଧି କରିଛନ୍ତି । ସେମାନଙ୍କ ମଧ୍ୟରେ ଭକ୍ତକବି ମଧୁସୂଦନ, ଉତ୍କଳ ଭାରତୀ କୁନ୍ତଳା କୁମାରୀ, କାନ୍ତକବି ଲକ୍ଷ୍ମୀକାନ୍ତ ଆଦି ମୁଖ୍ୟ ସ୍ଥାନ ଗ୍ରହଣ କରନ୍ତି ।

Digitized by srujanika@gmail.com

# ଜଗନ୍ନାଥ ଦର୍ଶନ

ପୁଣ୍ୟଭୂମି ଭାରତବର୍ଷରେ ପ୍ରସିଦ୍ଧ ~~ଚତୁର୍ଦ୍ଧାମ ମାନ୍ୟତମ~~ ଚତୁର୍ଦ୍ଧାମର ଅନ୍ୟତମ ଏହି ପୁରୁଷୋତ୍ତମ ଧାମ ଅନାଦି ନିତ୍ୟ ଲୀଳାମୟ ଶ୍ରୀ ବୈକୁଣ୍ଠନାଥଙ୍କର ନିତ୍ୟ ଲୀଳାକ୍ଷେତ୍ର । ଏ କ୍ଷେତ୍ରର ପବିତ୍ରତା, ଏହାର ମାହାତ୍ମ୍ୟ, ଏହାର ପ୍ରାଚୀନତା, ସର୍ବୋପରି ଏହି କ୍ଷେତ୍ରରେ ଅଧିଷ୍ଠିତ ଦେବତା ଶ୍ରୀ ଜଗନ୍ନାଥଙ୍କର ଦର୍ଶନ ଅନୁଧ୍ୟାନ କଲେ, ଏହାର ଏକ ଅପୂର୍ବ ବିଶେଷତ୍ୱ ପରିଲକ୍ଷିତ ହୁଏ । ଜଗନ୍ନାଥ ଦେବ ଓ ଜଗନ୍ନାଥ ଧାମ ଯେପରି ବିଶ୍ୱ-ପ୍ରସିଦ୍ଧ ସେହିପରି ଜଗନ୍ନାଥ ଧର୍ମ ଓ ଦର୍ଶନ ମଧ୍ୟ ବ୍ୟାପକ ତଥା ଅସଂକୁଚିତ । ମହୋଦଧିର ଉତ୍ତାଳ ତରଙ୍ଗ ପରି ଏହା ଯେପରି ଗମ୍ଭୀର, ସେହିପରି ଉଦାର । ସୌର, ଶୈବ, ଶାକ୍ତ, ଗାଣପତ୍ୟ ତଥା ବୈଷ୍ଣବ ପ୍ରଭୃତି ସକଳ ଧର୍ମ ଏହାର କୁକ୍ଷିଗତ । ଜଗନ୍ନାଥ ଦର୍ଶନର ଉଦାର ବାହୁଚ୍ଛାୟା ତଳେ ଏସବୁ ଦର୍ଶନ ଏକାକାର ହୋଇଯାଇଛି । ସଂକୀର୍ଣ୍ଣତାର ଆବରଣ ଫିଙ୍ଗି ମୁଣ୍ଡ ଟେକିଛି ଆଉ ଏକ ନୂତନ ଦର୍ଶନ, ଯାହା ଜଗନ୍ନାଥ ଦର୍ଶନ ନାମରେ ସଚରାଚର ପରିଚିତ ଓ ପ୍ରସିଦ୍ଧ ।

ଜଗନ୍ନାଥ ଧାମପରି ଜଗନ୍ନାଥ ମନ୍ଦିର ମଧ୍ୟ ବିରାଟ ବିଶ୍ୱ ବିଗ୍ରହର ପ୍ରତିଚ୍ଛାୟା । ମନେହୁଏ, ସତେ ଯେପରି ଅବ୍ୟକ୍ତ ସ୍ୱୟମ୍ଭୂ ପ୍ରାଥମିକ ସୃଷ୍ଟି ~~ଇଚ୍ଛାରେ~~ ବଶବର୍ତ୍ତୀ ହୋଇ ଏଠାରେ ପ୍ରଥମେ ଜୀବାବତାରରୂପରେ ଆବିର୍ଭୂତ ହୋଇଅଛନ୍ତି । ପ୍ରାଚୀନ କାଳରେ ଏହି ଧାମ ଶ୍ରୀକ୍ଷେତ୍ର ବା ପୁରୁଷୋତ୍ତମ କ୍ଷେତ୍ର ନାମରେ ବିଶେଷ ଭାବରେ ପରିଚିତ ଥିଲା । ପୁରାଣମାନଙ୍କରେ ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ସବିଶେଷ ଉଦ୍‌ଘୋଷିତ । ବ୍ରହ୍ମ, ବିଷ୍ଣୁ, ନାରଦ ଓ ପଦ୍ମପୁରାଣରେ ପୁରୁଷୋତ୍ତମ ଦେବତା ଓ କ୍ଷେତ୍ରର ମହାତ୍ମ୍ୟ ସମ୍ପର୍କରେ ସ୍ୱତନ୍ତ୍ର ପରିଚ୍ଛେଦ ରହିଛି । ବିଭିନ୍ନ ତନ୍ତ୍ର, ଆଗମ ଏପରିକି ବେଦରେ ମଧ୍ୟ ଏହାର ଉଲ୍ଲେଖ ଦେଖିବାକୁ ମିଳେ । କେଉଁ ସମୟରୁ ଏହି କ୍ଷେତ୍ର ପୁରୁଷୋତ୍ତମ କ୍ଷେତ୍ରରେ ପରିଣତ ହେଲା, ତାହା ନିର୍ଭୁଲ ଭାବରେ କହି

ହେବନାହିଁ । ମାତ୍ର ଜଗନ୍ନାଥ ମନ୍ଦିରର ନିର୍ମାତା ଅନନ୍ତବର୍ମନ ଚୋଡ଼ଗଙ୍ଗ-ଦେବଙ୍କ ସମୟରୁ ଯେ ଏହି ଧାମ ଏକ ସର୍ବଶ୍ରେଷ୍ଠ ବୈଷ୍ଣବ କ୍ଷେତ୍ର ରୂପରେ ସମ୍ମାନିତ ହେବାକୁ ଲାଗିଲା, ଏଥିରେ ସନ୍ଦେହ ନାହିଁ । କାହାରି କାହାରି ମତରେ ଅଥର୍ବ ବେଦ ରଚନା ସମୟରୁ ବିଷ୍ଣୁ ମୂର୍ତ୍ତି ପୁରୁଷୋତ୍ତମ କ୍ଷେତ୍ରରେ ପୂଜା ପାଇଲେଣି । ଆରାଧନାର ସମନ୍ୱୟ ରକ୍ଷା କରିବା ନିମନ୍ତେ ଶିବ ଓ ଦୁର୍ଗାଙ୍କୁ ବିଷ୍ଣୁଙ୍କ ସହ ଏକ ପୀଠରେ ଉପାସନା କରାଗଲା ସତ, ମାତ୍ର ଏହାଦ୍ୱାରା ଜଗନ୍ନାଥଙ୍କ ପ୍ରାଧାନ୍ୟହିଁ ଘୋଷିତ ହେଲା ।

ଏହି ଶ୍ରୀକ୍ଷେତ୍ର ବୈଷ୍ଣବ କ୍ଷେତ୍ରରେ ପରିଣତ ହେବା ବେଳକୁ ଚତୁର୍ଦ୍ଧାମୂର୍ତ୍ତିଙ୍କର କଳ୍ପନା ହୋଇ ସାରିଥିଲା ଏବଂ ଗୋଟିଏ ପୀଠରେ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ପୂଜା ପାଇଲେ । କୃଷ୍ଣୋପାସନାର ପ୍ରଭାବରେ ବଳଭଦ୍ରଙ୍କୁ ବଳରାମ ରୂପରେ ଧରିନେଇ ଜଗନ୍ନାଥରୂପୀ କୃଷ୍ଣଙ୍କ ଭାଇ, ସୁଭଦ୍ରାଙ୍କୁ ଭଉଣୀ ଓ ସୁଦର୍ଶନଙ୍କୁ ଆୟୁଧ ରୂପରେ କଳ୍ପନା କରାଗଲା । କିନ୍ତୁ ଶୈବମାନେ ବଳଭଦ୍ରଙ୍କୁ ଶିବ ରୂପରେ, ଶାକ୍ତମାନେ ସୁଭଦ୍ରାଙ୍କୁ ଶକ୍ତି ଦୁର୍ଗା ଓ ଭଦ୍ରକାଳୀ ରୂପରେ ଓ ବୈଷ୍ଣବମାନେ ଜଗନ୍ନାଥଙ୍କୁ ବିଷ୍ଣୁ ରୂପରେ ହିଁ ପୂଜା କରି ଆସୁଛନ୍ତି । ଅଦ୍ୟାବଧି ଏହି ପୀଠ ଏକ ପ୍ରସିଦ୍ଧ ଶାକ୍ତପୀଠ ରୂପରେ ମଧ୍ୟ ପରିଚିତ । "ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବଃ" । ଯେଉଁଠି ବିମଳା ଭୈରବୀ, ସେଠାରେ ଜଗନ୍ନାଥ ହେଉଛନ୍ତି ଭୈରବ । ଏହି କ୍ଷେତ୍ର ମଧ୍ୟରେ ବହୁବିଧ ବୈଚିତ୍ର୍ୟ ଗୁମ୍ଫିତ ଥିଲାପରି ଏହାର ଧର୍ମ ଦର୍ଶନରେ ମଧ୍ୟ ଯଥେଷ୍ଟ ବୈଚିତ୍ର୍ୟ ପରିଲକ୍ଷିତ ହୁଏ । ଜଗନ୍ନାଥ ଦର୍ଶନ କହିଲେ ଜଗନ୍ନାଥ-ପୀଠ ପ୍ରତିଷ୍ଠିତ ଦର୍ଶନକୁହିଁ ବୁଝାଏ । ଜଗନ୍ନାଥ ଧର୍ମ ଯେପରି ସର୍ବଧର୍ମର ସମନ୍ୱୟରେ ପ୍ରତିଷ୍ଠିତ, ଜଗନ୍ନାଥ ଦର୍ଶନ ସେହିପରି ସକଳ ପ୍ରକାର ଦର୍ଶନର ସାରଭୂତ । ଜଗନ୍ନାଥ ମୂର୍ତ୍ତି, ଜଗନ୍ନାଥଙ୍କ ନିକଟରେ ଆଚରିତ ଉପାସନା ପ୍ରଣାଳୀ ଆଲୋଚନା କଲେ ସହଜରେ ପ୍ରତିପାଦିତ ହେବ । ଉଦାହରଣ ସ୍ୱରୂପ ଜଗନ୍ନାଥ କ୍ଷେତ୍ରରେ ପଞ୍ଚୋପାସନା ବା ପଞ୍ଚଦେବତା ଉପାସନା ଆଚରିତ । ଏହାଙ୍କର ପୂଜା ଓ ପ୍ରଚଳିତ ନୀତି ପଦ୍ଧତିରେ ଅଭେଦବାଦ, ଭେଦ ଓ ଅଚିନ୍ତ୍ୟ ଭେଦାଭେଦ-ବାଦ ସର୍ବତ୍ର ପରିସ୍ଫୁଟ ହୋଇ ରହିଅଛି । ମହାପ୍ରସାଦ ଅନ୍ନାଦିରେ ଅଭେଦବାଦ; ନୈବେଦ୍ୟ ସାମଗ୍ରୀରେ ନିବେଦନ ପୂର୍ବରୁ ଭେଦଭାବ, ପୂଜା ଉପଯୋଗୀ ଆନୀତ ଜଳରେ ଭେଦାଭେଦଭାବ ପ୍ରକଟିତ । ବିଶ୍ୱାବସୁ ବଂଶୀୟ ପ୍ରତୀକ ରୂପେ ଦଇତାମାନେ ଏହି ମୂର୍ତ୍ତିମାନଙ୍କର ବିଗ୍ରହ ସପାଦକ

Digitized by srujanika@gmail.com

ଓ ନବକଳେବରାଦିରେ ଏହାଙ୍କ ସହିତ ସମଗୋତ୍ର ଭାବାପନ୍ନ ହେବା, ପରନ୍ତୁ ନୈବେଦ୍ୟ ଉପଯୋଗୀ ବେଶଭୂଷାଦିରେ ଅନଧିକୃତ ରହିବା ଦ୍ୱାରା ଅଚିନ୍ତ୍ୟ ଭେଦାଭେଦବାଦ ଉପରେ ପ୍ରତିଷ୍ଠିତ ହୁଏ । ରଥଯାତ୍ରା ଉତ୍ସବ ଓ ସ୍ନାନ ଯାତ୍ରାରେ ମୂର୍ତ୍ତିମାନଙ୍କର ବିଜୟ ଉତ୍ସବରେ ଜାତିଧର୍ମ ନିର୍ବିଶେଷରେ ସମସ୍ତେ ସ୍ପର୍ଶ କରିପାରନ୍ତି । ଏହି ଚତୁର୍ବ୍ୟୂହ ରୂପାନ୍ତରିତ ବିଶ୍ୱଜନୀନ ବିଶ୍ୱ ଉଦ୍ଧାରକ ଷଡାସ୍ତସାଧିତ ପୁରୁଷୋତ୍ତମଙ୍କ ଦାରୁ ବିଗ୍ରହରେ ସର୍ବମତ ନିହିତ । ସମନ୍ୱିତ ।

ଜଗନ୍ନାଥଙ୍କ ରତ୍ନ ସିଂହାସନ ସର୍ବାତ୍ମ ସଂଯୋଗ ଯୋଗପୀଠ, ଏହାଙ୍କର ପୁରୋଭାଗରେ ବେଦମୂର୍ତ୍ତି ବୈନତେୟ ବାହନ ରୂପେ ବିରାଜମାନ । ଏହାଙ୍କର ନୈବେଦ୍ୟ ମହାପ୍ରସାଦ ରୂପେ ପ୍ରସିଦ୍ଧ । ଜଗନ୍ନାଥଙ୍କ ତ୍ରିକାଳ ରୂପ ଓ ଧ୍ୟାନରେ ଭଗବାନ ଶ୍ରୀକୃଷ୍ଣଙ୍କର ଧ୍ୟାନସ୍ଥିତ ରୂପ କଳ୍ପନାହିଁ ଲକ୍ଷ୍ୟ କରିବାର କଥା । ପ୍ରାତଃକାଳରେ ଜଗନ୍ନାଥଙ୍କର ଯେଉଁ ଧ୍ୟାନ ତାହା ଶ୍ରୀକୃଷ୍ଣଙ୍କର ବାଳରୂପ, ମଧ୍ୟାହ୍ନରେ ବୃନ୍ଦାବନସ୍ଥ କଳ୍ପଦ୍ରୁମ ତଳେ ଆସୀନ ଶ୍ରୀକୃଷ୍ଣଙ୍କ ଯୁବକ ରୂପ, ସାୟାହ୍ନରେ ଦ୍ୱାରକାସ୍ଥିତ ଉପବନରେ ମଣି ମଣ୍ଡପାସୀନ ଶ୍ରୀକୃଷ୍ଣଙ୍କର ଧ୍ୟାନ ରୂପ, ରାତ୍ରିକାଳରେ ଗୋପୀମଣ୍ଡଳାବୃତ ଯମୁନା ପୁଳିନ କୁଞ୍ଜରେ ଆସୀନ ଶ୍ରୀକୃଷ୍ଣଙ୍କ ପ୍ରୌଢ଼ାବସ୍ଥା ରୂପ ବାସ୍ତବିକ ଜଗନ୍ନାଥ ଧର୍ମ ଦର୍ଶନର ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ । ଭଗବାନଙ୍କର ସଚ୍ଚିଦାନନ୍ଦ ସ୍ୱରୂପ ସହିତ ଏହି ତିନ ମୂର୍ତ୍ତିର ସମ୍ପର୍କ ସ୍ଥାପନରେ କି ଦାର୍ଶନିକ ତତ୍ତ୍ୱ ନିହିତ, ତାହାହିଁ ଏଠାରେ ବିଚାର୍ଯ୍ୟ । ଭଗବାନ ସଚ୍ଚିଦାନନ୍ଦ, ସେ ସତ୍ ବା ଅସ୍ତିତ୍ୱ ସ୍ୱରୂପ, ସେ ଚିତ୍ ବା ଚେତନା ସ୍ୱରୂପ ଏବଂ ସେହି ପୁଣି ଆନନ୍ଦ ସ୍ୱରୂପ । ବ୍ରହ୍ମ ବା ଭଗବାନ ଯେଉଁ ତିନୋଟି ସ୍ତରରେ ଭିନ୍ନ ଭାବରେ ଅବସ୍ଥିତ ରହିଅଛନ୍ତି, ସେହି ତିନିସ୍ତରର ସମାହାର ହିଁ ତାଙ୍କର ସଚ୍ଚିଦାନନ୍ଦ ସ୍ୱରୂପ । ପ୍ରକାଶ ଓ ଅପ୍ରକାଶ, ସଗୁଣ ଓ ନିର୍ଗୁଣ ଏହି ଦୁଇର ମିଳନମୟ ଭାବହିଁ ପୁରୁଷୋତ୍ତମଙ୍କ ସ୍ତର, ଏହାହିଁ ସତ୍ ବା ଅସ୍ତିତ୍ୱ ସ୍ୱରୂପର ବିଶେଷତ୍ୱମୟ ଅବସ୍ଥା । ଏଠାରେ ଆନନ୍ଦ ସତ୍‌ରେ ଆଉ ଚିତ୍ ସତ୍‌ରେ ପରିଣତ ହୁଏ । ଯେଉଁ ଭଗବାନ ତିନିଭାବରେ ଅବସ୍ଥିତ, ଯଦିଓ ସେହି ତିନିସ୍ତର ହିଁ ସଚ୍ଚିଦାନନ୍ଦ ସ୍ୱରୂପ, ତଥାପି ପୁରୁଷୋତ୍ତମ ସ୍ତରରେ ତାହାଙ୍କର ସତ୍ ସ୍ୱରୂପର, ଅକ୍ଷର ପୁରୁଷର ସ୍ତରରେ ତାହାଙ୍କର ଚିତ୍ ସ୍ୱରୂପର ଏବଂ କ୍ଷର ପୁରୁଷର ସ୍ତରରେ ତାହାଙ୍କର ଆନନ୍ଦ ସ୍ୱରୂପର ବିଶେଷତ୍ୱ ରହିଅଛି । ସେଥିପାଇଁ ଜଗନ୍ନାଥ

Digitized by srujanika@gmail.com

ଭଗବାନଙ୍କର ସତ୍ ସ୍ୱରୂପ, ବଳରାମ ଚିତ୍ ସ୍ୱରୂପ ଓ ସୁଭଦ୍ରା ଆନନ୍ଦ ସ୍ୱରୂପ । ପ୍ରକାଶଭୂମିରେ ପୁଣି ସତ୍ ସ୍ୱରୂପରେ ଜଗନ୍ନାଥ ଭଗବାନଙ୍କର ପ୍ରେମଘନ ମୂର୍ତ୍ତି, ଚିତ୍ ସ୍ୱରୂପ ବଳରାମ ଭଗବାନଙ୍କର ବିଜ୍ଞାନ ଘନମୂର୍ତ୍ତି ଓ ଆନନ୍ଦ ସ୍ୱରୂପ ସୁଭଦ୍ରା ଭଗବାନଙ୍କର ଶକ୍ତି ଘନମୂର୍ତ୍ତି । ବଳଭଦ୍ର ଶୁକ୍ଳବର୍ଣ୍ଣ, ଜଗନ୍ନାଥ ପୀତବର୍ଣ୍ଣ, ସୁଭଦ୍ରା ହରିଦ୍‌ବର୍ଣ୍ଣ । ପୁଣି ଏଥିରେ ଆରୋପିତ ବୀଜମନ୍ତ୍ର ସମ୍ବନ୍ଧରେ କୁହାଯାଇଅଛି—

ଶ୍ରୀଁ ବୀଜ ବଳଭଦ୍ର ହୋନ୍ତି । ହ୍ରୀଁ ବୀଜ ସୁଭଦ୍ରା ମୂରତି ॥
କ୍ଳୀଁ ବୀଜ ଜଗନ୍ନାଥ ଭାବ । ଏ ରୂପେ ନଇବେଦ୍ୟ ଦେବ ॥

ଏହି ବୀଜମନ୍ତ୍ରର ସ୍ୱରୂପ ହେଲା—

ଶ୍ରୀଁ କାର ପଦ୍ମବୀଜ ହୋଇ । ହ୍ରୀଁ କାର ରମାବୀଜ କହି ॥
କ୍ଳୀଁ କାର କାମ ବୀଜ ସାର । ବାଳକ ପୌଗଣ୍ଡ କିଶୋର ॥
ଶ୍ରୀ ଯେ ପଦ୍ମବୀଜ ହୋଇ । ହରିନାମ ଅଛଇ ତହିଁ ॥
ହ୍ରୀଁ ଯେ ରମାବୀଜ ତହିଁ । ରାମନାମ ତହିଁ ବଖାଣି ॥
କ୍ଳୀଁ ଯେ କାମବୀଜ ହୋଇ । କୃଷ୍ଣ ବୋଲିଣ ଜାଣ ସେହି ॥
ରକ୍ତ ଶୁକଳ ଶ୍ୟାମ ବର୍ଣ୍ଣ । ତିନି ନାମ କରି ପ୍ରଚ୍ଛନ୍ନ ॥

ଅନ୍ତ ପାର୍ଥିବ ଯେ ଆଦିଚେତନା ତାଙ୍କର ତିନୋଟି ସ୍ତର, ତାହାର ସୂଚନା ମୁଁ ପୂର୍ବରୁ ଦେଇଅଛି । ଏହି ଆଦି ଚେତନାର ସ୍ୱରୂପରେ ଅନାଦି ସତ୍ୟ ଯେ ଭଗବାନ ସେ ଅନନ୍ତ ହୋଇ ମଧ୍ୟ ଶାନ୍ତ । ସେ ନିରାକାର ହୋଇ ମଧ୍ୟ ଯେ କୌଣସି ଆକାରରେ ପ୍ରକାଶର ସମ୍ଭାବନାଯୁକ୍ତ ଅବସ୍ଥାରେ ଅବସ୍ଥିତ । ସେ ସମସ୍ତଙ୍କର ପରିପୂରକ, ସେ ଅଦ୍ୱୈତ ଓ ସତ୍ୟରୂପେ ରହି ମଧ୍ୟ ବହୁ ଆକାରରେ ପ୍ରକାଶିତ । ମନର ଚେତନା 'ସତ୍ୟର ସ୍ୱରୂପ ଗତ' । ଏହି ପରସ୍ପର ବିରୋଧୀ ଭାବରେ ସାମଞ୍ଜସ୍ୟ ଧରିବା ଅବସ୍ଥାର ବହୁ ନିମ୍ନରେ ଅବସ୍ଥିତ । ତେଣୁ ଊର୍ଦ୍ଧ୍ୱ ଚେତନାର ଅପରୋକ୍ଷାନୁଭୂତି ବ୍ୟତୀତ ଭଗବାନଙ୍କର ସେହି ସମସ୍ତ ଅବସ୍ଥା ଚିନ୍ତାର ଅତୀତ । ଜଗନ୍ନାଥ ଦେବଙ୍କ ମୂର୍ତ୍ତି ଅବୟବ ସମ୍ବନ୍ଧରେ ଯେଉଁ ଦାର୍ଶନିକ ମତବାଦ ଅଛି, ତାହାର ଗୁରୁତ୍ୱ ଅପରିସୀମ । ଭଗବାନ ଜଗନ୍ନାଥ ସଚ୍ଚିଦାନନ୍ଦ । ସେ ପ୍ରେମ, ଜ୍ଞାନ ଓ ଶକ୍ତିର ମୂର୍ତ୍ତି । ପ୍ରେମ ମୂର୍ତ୍ତିରେ ସେ ସମ୍ପୂର୍ଣ୍ଣତାରେ ପ୍ରସ୍ତୁତ କରି ପୂର୍ଣ୍ଣାତ୍ମକ ଅନାଦି ସତ୍ ସ୍ୱରୂପରେ ବିରାଜିତ । ଜ୍ଞାନରେ ସେ ବ୍ରହ୍ମଭାବର ବିଚିତ୍ରତାରେ ନିଜକୁ ଲୟ କରି ପରିପୂର୍ଣ୍ଣ ଅଦ୍ୱୈତର ଚିତ୍ ସ୍ୱରୂପରେ ବିରାଜିତ । ଶକ୍ତିରେ ସେ ନିର୍ଗୁଣ ହୋଇ ମଧ୍ୟ ସଗୁଣ ସୃଷ୍ଟି ତତ୍ତ୍ୱ ଏବଂ ଏହାର ଅନ୍ତଃସ୍ଥ ଆତ୍ମା

Digitized by srujanika@gmail.com

ରୂପେ ଆନନ୍ଦ ସ୍ୱରୂପରେ ଉଲ୍ଲସିତ । ଭଗବାନଙ୍କ ତିନ ସ୍ତରରେ ଅବସ୍ଥିତିର ସ୍ୱରୂପଗତ ପରିଚୟ ଏକାନ୍ତ ପ୍ରୟୋଜନ । ତାହା ବର୍ତ୍ତମାନ ଆଲୋଚନା କରାଯାଉ । ସୁଭଦ୍ରା କ୍ଷରପୁରୁଷ, ସେ ସଗୁଣ ଆତ୍ମା, ସେ ବ୍ୟକ୍ତ ସ୍ୱରୂପ, ସଗୁଣ ବ୍ରହ୍ମ, ସେ ଶକ୍ତି, ସେ ଆନନ୍ଦ, ସେ ପ୍ରକାଶ ସତ୍ୟ ଏବଂ ବିଶ୍ୱବ୍ୟାପକତାରେ ପରିସ୍ଫୁର୍ତ୍ତି । ବଳରାମ ଅକ୍ଷର ପୁରୁଷ, ସେ ନିର୍ଗୁଣ ଆତ୍ମା, ସେ ଅବ୍ୟକ୍ତ ସ୍ୱରୂପ, ନିର୍ଗୁଣ ବ୍ରହ୍ମ, ସେ ଶିବ, ସେ ଚିତ୍, ସେ ଅପ୍ରକାଶ ସତ୍ୟ, ଜ୍ଞାନ ଓ ଅନନ୍ତରେ ସଂପୂର୍ଣ୍ଣତାରେ ପୂର୍ଣ୍ଣ । ଜଗନ୍ନାଥ ପୁରୁଷୋତ୍ତମ, ସେ ପରମାତ୍ମା, ସେ ବ୍ୟକ୍ତାବ୍ୟକ୍ତ ସ୍ୱରୂପ, ପରଂବ୍ରହ୍ମ, ସେ ଈଶ୍ୱର, ସେ ସତ୍, ସେ ଅନାଦି ସତ୍ୟ, ସେ ପ୍ରେମ ଏବଂ ମୂର୍ତ୍ତିମତ୍ତ୍ୱରେ ପୂର୍ଣ୍ଣ । ବଳରାମ ବିଶ୍ୱ, ସେ ପୁଣି ବିରାଟ । ସୁଭଦ୍ରା ତୈଜସ, ସେ ପୁଣି ସୂତ୍ରାତ୍ମା । ଜଗନ୍ନାଥ ପ୍ରାଜ୍ଞ, ସେ ପୁଣି ଅନ୍ତର୍ଯ୍ୟାମୀ । ସୁଦର୍ଶନ ତୁରୀୟ, ସେ ପୁଣି ଶୂନ୍ୟ । ନିଦେବ ଜଗନ୍ନାଥ ହେଉଛନ୍ତି ଓଁକାରମୟ, ଅ-ଉ-ମ ହେଉଛି ସତ୍, ଚିତ୍ ଓ ଆନନ୍ଦର ଦ୍ୟୋତକ, ଯାହାର ମୂର୍ତ୍ତିମନ୍ତ ବିଗ୍ରହ ହେଉଛନ୍ତି ଜଗନ୍ନାଥ । ତେଣୁ ଜଗନ୍ନାଥ ଦେବ ଓ ଧାମ ଐତିହାସିକ, ସମୀକ୍ଷକ ଓ ଦାର୍ଶନିକ ତଥା ଗବେଷକମାନଙ୍କର ଏକ ପରମ କୌତୂହଳ ଓ ଜିଜ୍ଞାସାର ବିଷୟରୂପେ ଦଣ୍ଡାୟମାନ । ବିଶ୍ୱରେ ଏପରି ପରିକଳ୍ପନା କେଉଁ ଜାତି ପକ୍ଷରେ ଆଉ ସମ୍ଭବ ହୋଇ ପାରିଛି ? ଓଡ଼ିଶାର ଶିଳ୍ପୀ ମୂର୍ତ୍ତି ତତ୍ତ୍ୱରେ ଗଭୀର ଦାର୍ଶନିକ ତତ୍ତ୍ୱର ଯେପରି ଅନବଦ୍ୟ ରୂପାୟନ କରିପାରିଛି, ବିଶ୍ୱର ଆଉ କୌଣସି ଜାତି ପକ୍ଷରେ ସମ୍ଭବ ତ ଦୂରର କଥା, ତାହାର ପରିକଳ୍ପନା ମଧ୍ୟ ହୋଇ ପାରିନାହିଁ । ଯଦି ସମଗ୍ର ବିଶ୍ୱକୁ ଓଡ଼ିଶାର ସର୍ବୋତ୍କୃଷ୍ଟ ଦାନ କହୁଥାଏ, ତେବେ ତାହାହିଁ ହେଉଛି ଆମର ପରମାରାଧ୍ୟ ଜଗନ୍ନାଥ । ଏ ଜଗତଃରୂପୀ ନାଥ ନୁହଁନ୍ତି, ଏ ଜଗତ ଏବ ନାଥ ନୁହନ୍ତି, ଏ ଜଗତଃ ନାଥ ଅର୍ଥାତ୍ ଜଗତର ନାଥ । ଜଗନ୍ନାଥ ଦେବ ଓ ଜଗନ୍ନାଥ ଧାମ ହେଉଛି ସର୍ବଜନୀନତା ସମନ୍ୱୟ [illegible] ଆଧାର ସ୍ୱରୂପେ ପ୍ରତିଷ୍ଠିତ । [illegible] ଓ [illegible] [illegible] [illegible] [illegible] [illegible] ଓ [illegible] ଦେବଦେବୀ [illegible] [illegible] [illegible] [illegible] ।

# ଉତ୍କଳରେ ଶୈବଧର୍ମ

ଅଦ୍ୟାବଧି ଶୈବଧର୍ମ ସମ୍ବନ୍ଧରେ ନାନା ମତବାଦର ଆଲୋଚନା ହୋଇଥିଲେ ମଧ୍ୟ ଏହାର ସମ୍ପୂର୍ଣ୍ଣ ଇତିହାସ ଲିଖିତ ହୋଇନାହିଁ । ତଥାପି ଆନୁଷଙ୍ଗିକ ଆଲୋଚନାରୁ ଜଣାଯାଏ ଯେ, ଏହା ଭାରତର ପ୍ରାଚୀନତମ ଧର୍ମ । ଋଗ୍‌ବେଦର ଦଶମ ମଣ୍ଡଳରେ ରୁଦ୍ରଙ୍କୁ ମରୁତଗଣ ସଙ୍ଗରେ ଓ ଈଶାନ ଭାବରେ ତାହାଙ୍କୁ ଦିଗପାଳମାନଙ୍କ ସଙ୍ଗରେ ସନ୍ନିବେଶିତ କରି ପ୍ରାୟ ଶତାଧିକ ମନ୍ତ୍ରରେ ତାଙ୍କର ପ୍ରଶସ୍ତି ଦେଖିବାକୁ ମିଳେ । ଯଜୁର୍ବେଦ ମଧ୍ୟରୁ ଶୁକ୍ଳ ଯଜୁର୍ବେଦର "ରୁଦ୍ରାଷ୍ଟାଧ୍ୟାୟୀ" ଶୈବଧର୍ମର ସର୍ବଶ୍ରେଷ୍ଠ ଗ୍ରନ୍ଥ ବୋଲି କାହାରି କାହାରି ମତ । ଉକ୍ତ ଗ୍ରନ୍ଥରେ ରୁଦ୍ରଙ୍କର ବିଭିନ୍ନ ନାମ; ଯଥା— ଶିବ, ପଶୁପତି, ରୁଦ୍ର, ବାମଦେବ ପ୍ରଭୃତି ଲିପିବଦ୍ଧ ହୋଇଅଛି । ପୁନଶ୍ଚ ଅଷ୍ଟାଧ୍ୟାୟୀ ମଧ୍ୟରେ "ତ୍ର୍ୟମ୍ବକ" ନାମକୁ ବିଶେଷ ଗୁରୁତ୍ୱ ଦେବା ସଙ୍ଗେ ସଙ୍ଗେ ପୁରଶ୍ଚରଣ ମନ୍ତ୍ରରେ ଏ ନାମକୁ ମୁଖ୍ୟ ଭାବରେ ଗ୍ରହଣ କରାଯାଇଛି । ଆହୁରି ମଧ୍ୟ ରୁଦ୍ରଙ୍କୁ ଦଶଦିଗର ଅଧିପତି, ସହସ୍ରବାହୁ, ନୀଳଗ୍ରୀବ, ସେନାନୀ ପ୍ରଭୃତି ନାମ ଦ୍ୱାରା ନାମିତ କରି ଉଚ୍ଚ ଆସନ ଦିଆଯାଇଛି ।

ବେଦମାନଙ୍କ ମଧ୍ୟରେ ଅଥର୍ବବେଦର ସୂକ୍ତମାନଙ୍କରେ ଶିବ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛନ୍ତି ଓ ରୁଦ୍ର ପ୍ରାପ୍ତି ନିମନ୍ତେ ବହୁପ୍ରକାର ତନ୍ତ୍ରୋକ୍ତ ସାଧନାର ଉପାୟ ମଧ୍ୟ ପ୍ରଦର୍ଶିତ ହୋଇଅଛି । ଅଥର୍ବବେଦର କୌଣସି ଏକ ସୂକ୍ତରେ ଉଷ୍ଣ ଜଳରେ ରୁଦ୍ରଙ୍କୁ ଅଭିଷେକ ପୂର୍ବକ ମାରଣ କ୍ରିୟା କରିବାର ଉପାୟ ମଧ୍ୟ ନିହିତ ଅଛି ।

ଉପନିଷଦ ଯୁଗରେ ପାଶୁପତ ବ୍ରାହ୍ମଣ ଉପନିଷଦ, ଜାବାଳ ଉପନିଷଦ ଏବଂ ତ୍ର୍ୟମ୍ବକ ଉପନିଷଦ ଶିବଙ୍କର ସ୍ଥାଣୁତ୍ୱ ତଥା ଅଚଳତ୍ୱ ଓ ସର୍ବଶକ୍ତିସମ୍ପନ୍ନତା ପ୍ରଭୃତି ଗୁଣକୁ ବହୁ ଭାବରେ ପ୍ରଶସ୍ତି କରିଅଛନ୍ତି । ପୁଣି ଯୋଗଶିଖୋପନିଷଦ, ମାଣ୍ଡୁକ୍ୟ, ମଣ୍ଡଳ, ବ୍ରାହ୍ମଣ ପ୍ରଭୃତି ୨୦ଟି ଯୋଗୋପନିଷଦରେ ରୁଦ୍ରଙ୍କୁ ଯୋଗେଶ୍ୱର ଭାବରେ ଗ୍ରହଣ କରାଯାଇଛି ।

Digitized by srujanika@gmail.com

ଯୋଗଶିଖୋପନିଷଦରେ ଯୋଗଚର୍ଯ୍ୟାର ବା ଯୋଗଶିକ୍ଷାର ଯେଉଁ ଉପାୟମାନ ପ୍ରଦତ୍ତ ହୋଇଅଛି, ସେଥିରେ ଆଧାର ଚକ୍ର ଉପରୁ ଆଜ୍ଞାଚକ୍ର ପର୍ଯ୍ୟନ୍ତ ଯଥାକ୍ରମେ ରୁଦ୍ର, ଶିବ, ନୀଳକଣ୍ଠ ଓ ଅର୍ଦ୍ଧନାରୀଶ୍ୱରଙ୍କୁ ଚକ୍ରାଧିପତି ଭାବରେ ସ୍ଥାନ ଦିଆଯାଇଛି ।

ଉକ୍ତ ଯୋଗେଶ୍ୱର ଶିବଙ୍କ ସାର୍ବଭୌମିକତା ଲିଙ୍ଗପୁରାଣ, ଶିବ ପୁରାଣ, ପଦ୍ମପୁରାଣ, ମାର୍କଣ୍ଡେୟ ପୁରାଣ ପ୍ରଭୃତିରେ ଏପରି ଭାବରେ ବର୍ଣ୍ଣିତ ହୋଇଅଛି ଯେ, ଶିବ ହିନ୍ଦୁଧର୍ମରେ ସର୍ବଶ୍ରେଷ୍ଠ ଆସନ ଅଧିକାର କରିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ପୁରାଣକୁ ଛାଡ଼ିଦେଲେ ବୌଦ୍ଧଧର୍ମର ସ୍ୱୟମ୍ଭୂ ପୁରାଣରେ ଯେଉଁ ଶୋଳକଗୁଡ଼ିକ ଅଛି, ସେଗୁଡ଼ିକୁ ଆଲୋଚନା କଲେ ବୌଦ୍ଧ ଓ ଶୈବଧର୍ମର ଯେ କେତେ ସାମ୍ୟ ଅଛି ତାହା ନାନା ଭାବରେ ପ୍ରମାଣିତ କରାଯାଇ ପାରେ ।

ଆଧ୍ୟାତ୍ମିକ ବିଚାରଧାରାକୁ ବାଦ୍ ଦେଲେ ଇତିହାସରେ ମଧ୍ୟ ରୁଦ୍ର ପୂଜାର ଯେଉଁସବୁ ପ୍ରମାଣ ନିହିତ ରହିଛି, ସେଗୁଡ଼ିକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ଏହା ଭାରତର ସର୍ବପ୍ରାଚୀନ ଧର୍ମ । ସିନ୍ଧୁ ସଭ୍ୟତାର ମହେଞ୍ଜୋଦାରୋର ସିଲ୍ (ମୁଦ୍ରା) ମାନଙ୍କ ମଧ୍ୟରୁ ଲିଙ୍ଗମୂର୍ତ୍ତି ଓ ଧର୍ମ ବୃଷଭର ଚିତ୍ରଠାରୁ ଆରମ୍ଭ କରି ଗୁପ୍ତଯୁଗର ଚାଲୁକ୍ୟ ରାଜା ଓ ସାତକର୍ଣ୍ଣି ବଂଶ ନୃପତିମାନଙ୍କର ପ୍ରଶସ୍ତିରେ ଶିବଙ୍କର ପ୍ରଶସ୍ତି ଦେଖିଲେ ମନେହୁଏ ଯେ, ଭାରତର ପ୍ରାୟ ଅଧିକାଂଶ ରାଜବଂଶଧର ଶୈବ ଥିଲେ । ସେହିଦୃଷ୍ଟିରୁ ଉତ୍କଳରେ ଶୈବଧର୍ମର ପ୍ରବାହକୁ ଦେଖିଲେ ପ୍ରାଚୀନତମ ପ୍ରାଚୀ ସଭ୍ୟତାର ଅଷ୍ଟଶମ୍ଭୁଙ୍କ ଉପରେ ଦୃଷ୍ଟିପଡ଼େ । ଯାଜପୁରର ସପ୍ତମାତୃକା ମଧ୍ୟରେ ରୁଦ୍ରାଣୀଙ୍କର ଗୁରୁତ୍ୱରୁ ଜଣାଯାଏ ଯେ, ଯଯାତିଙ୍କ ମୂଳରୁ କେଶରୀବଂଶର ପ୍ରାରମ୍ଭରୁ ଉତ୍କଳ ସର୍ବତୋଭାବେ ଶୈବଧର୍ମର ମୁଖ୍ୟ ପୀଠ ଥିଲା ଓ ସକଳ ପ୍ରକାର ଶୈବ ଧର୍ମାବଲମ୍ବୀମାନଙ୍କର ଉତ୍କଳହିଁ ଏକ ପ୍ରସିଦ୍ଧ କ୍ଷେତ୍ର ଥିଲା ।

ଅଷ୍ଟମ ଶତାବ୍ଦୀର ବ୍ରହ୍ମେଶ୍ୱର ଓ ମୁକ୍ତେଶ୍ୱର ମନ୍ଦିରର ଗୁରୁତ୍ୱ ଓ ଦଶମ ଶତାବ୍ଦୀର ଲିଙ୍ଗରାଜ ମନ୍ଦିର ଏବଂ ତାକୁ କେନ୍ଦ୍ର କରି ଲିପିବଦ୍ଧ ହୋଇଥିବା ଏକାମ୍ର ପୁରାଣ, ବ୍ରହ୍ମାଣ୍ଡ ପୁରାଣ, ସିଂହାଦ୍ରି ସଂହିତା ପ୍ରଭୃତିରେ ଏହି ପବିତ୍ର ସ୍ଥଳୀର ଉତ୍କର୍ଷ ପ୍ରତିପାଦିତ ହୋଇଅଛି ଏବଂ ଏପରି ଭାବରେ ବର୍ଣ୍ଣିତ ହୋଇଅଛି ଯେ ତାହା ଦେଖିଲେ, ଉତ୍କଳର ଏକାମ୍ର ବନ ବା

Digitized by srujanika@gmail.com

ଭୁବନେଶ୍ୱର, ସେ ବାରଣାସୀଠାରୁ କୌଣସି ଗୁଣରେ ନ୍ୟୂନ ତାହା ମନେକରୁଏ ନାହିଁ ।

କେଶରୀବଂଶ ପରେ ଗଙ୍ଗ ବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗଦେବ ଯେ ଜଣେ ପ୍ରଧାନ ଶୈବ ରାଜା ଥିଲେ, ତାହା ମାର୍କଣ୍ଡେଶ୍ୱର, ଅଳଗୁମ୍, ଗନ୍ଧର୍ବେଶ୍ୱର ଓ ମୁଖଲିଙ୍ଗର ଶତାଧିକ ଶିଳାଲିପିରେ ପ୍ରତିପାଦିତ ହୋଇଅଛି । ଯଦିଚ ଜଗନ୍ନାଥ ମନ୍ଦିରର ସମ୍ପର୍କରେ ଆସି ରାମାନୁଜଙ୍କ ପ୍ରଭାବରେ ପ୍ରଭାବାନ୍ୱିତ ହୋଇ ସେ ନିଜକୁ ପରମ ବୈଷ୍ଣବ ବୋଲି କହୁଥିଲେ, ତଥାପି ସେ ଅନ୍ତରରେ ଶିବ ଉପାସକ ଥିଲେ । ଏପରିକି ପୁରୀରେ ନିଜର ଚତୁର୍ଦ୍ଦିଗ ସାମ୍ରାଜ୍ୟ ମୁଖ୍ୟ ଦେବାଳୟ ମାର୍କଣ୍ଡେଶ୍ୱର ମନ୍ଦିର ରାଜତ୍ୱର ଶେଷ ଅଂଶକୁ ନିର୍ମାଣ କରାଇଥିଲେ । ଉକ୍ତ ମନ୍ଦିରରେ ଯେଉଁ ଶିଳାଲେଖ ଅଛି, ତାର ପାଠୋଦ୍ଧାରରୁ ଜଣାଯାଏ ଯେ, ଚୋଡ଼ଗଙ୍ଗ ପରମ ଶୈବ ଥିଲେ । ତତ୍‌ପରବର୍ତ୍ତୀ ରାଜରାଜ ଓ ଅନଙ୍ଗଭୀମଦେବଙ୍କ ଗଙ୍ଗ ତାମ୍ର ଶାସନକୁ ଦେଖିଲେ ସେଥିରେ ସର୍ବାଦୌ ନୃସିଂହଙ୍କର ଧ୍ୟାନ ଥିଲେ ମଧ୍ୟ ମୁଦ୍ରା ବା ସିଲରେ ଧର୍ମବୃଷଭ, ତ୍ରିଶୂଳ ଓ ଡମ୍ବରୁର ଚିହ୍ନ ମୁଖ୍ୟ ଭାବରେ ରହିଛି । (୧)

ଏହି ଗଙ୍ଗବଂଶ ରାଜତ୍ୱର ଶେଷଭାଗ ବେଳକୁ ବରଂ ଶୈବ ଧର୍ମର ହ୍ରାସ ଉପଲବ୍ଧି କରାଯାଇଥିଲା । କପିଳେନ୍ଦ୍ରଦେବ ଓ ପୁରୁଷୋତ୍ତମଦେବ ପ୍ରମୁଖ ସୂର୍ଯ୍ୟବଂଶୀୟ ରାଜାମାନେ ଦାକ୍ଷିଣାତ୍ୟ ବିଜୟ ବେଳେ ନିଜକୁ ବୈଷ୍ଣବ ବୋଲି ଦାବୀ କରି ଶୈବାଧର୍ମାବଲମ୍ବୀମାନଙ୍କ ସଙ୍ଗେ ନାନା ବିରୋଧଭାବ ଦେଖାଇ ଅଛନ୍ତି । କିନ୍ତୁ ପଞ୍ଚଦେବତା ଉପାସକ ବ୍ରାହ୍ମଣମାନଙ୍କ ମାଧ୍ୟମରେ ଉତ୍କଳର ପ୍ରତିପଲ୍ଲୀରେ ଏପରି ଭାବରେ ଶିବ ମନ୍ଦିର ପ୍ରତିଷ୍ଠିତ ହୋଇଥିଲା, ଯଦ୍ୱାରା ଶୈବ ଧର୍ମକୁ ଉତ୍କଳର ଜାତୀୟଧର୍ମ ବୋଲି ପ୍ରମାଣିତ କରାଯାଇ ପାରେ ।

ଶୈବ ଧର୍ମ ବା ଶୈବବାଦର ମୁଖ୍ୟ ଅଙ୍ଗ ଲିଙ୍ଗପୂଜା । ଲିଙ୍ଗପୂଜା ସାକାର ଓ ନିରାକାର ପୂଜାର ସ୍ମାରକ । ଲିଙ୍ଗ ସୃଷ୍ଟିର ଲିଙ୍ଗ ତଥା ସୃଷ୍ଟିର ପ୍ରତୀକ । ସେହିପରି ଶକ୍ତି—ତାହା ଯୋନିର ଚିହ୍ନ; ମାତ୍ର ତାହା ପରମା ତଥା ଆଦ୍ୟଶକ୍ତିର ପ୍ରତୀକ । ପ୍ରଥମରେ ଆଦ୍ୟାଶକ୍ତି ବା ମାୟାଶକ୍ତି ବା

---

(୧) ନଗରୀ ତାମ୍ର ଶାସନ ଓ ଜଗନ୍ନାଥ ଐତିହାସିକ ସମିତି ଦ୍ୱାରା ପ୍ରାପ୍ତ ଏବଂ ପଠିତ ତାମ୍ର ଶାସନ ଦ୍ରଷ୍ଟବ୍ୟ ।

Digitized by srujanika@gmail.com

ବ୍ରହ୍ମଶକ୍ତି ଅବ୍ୟକ୍ତ ଥିଲେ । ତାହା ସୃଷ୍ଟିରେ ବ୍ୟକ୍ତ ହେଲେ । "ଅବ୍ୟକ୍ତାତ୍ ବ୍ୟକ୍ତ ମୂର୍ତ୍ତୟଂ" । ସୃଷ୍ଟିର ପୂର୍ବରୁ ଶକ୍ତି ଅବ୍ୟାକୃତ ବା ଅବ୍ୟକ୍ତ ଥିଲା । ତାହା ସୃଷ୍ଟିର ପ୍ରଥମରେ ବ୍ୟକ୍ତ ବା ବ୍ୟାକୃତ ହେଲା । ମାୟାଶକ୍ତି ଶିବ ଶକ୍ତି ରୂପରେ ବ୍ୟକ୍ତ ହେଲେ ଦରକାର ବ୍ୟକ୍ତି । ବିନା ବ୍ୟକ୍ତିରେ ଶକ୍ତି ବ୍ୟକ୍ତ ହୋଇ ନ ପାରେ । ତେଣୁ ପୁରୁଷର ପ୍ରୟୋଜନ । ତେଣୁ ଲିଙ୍ଗର ଆବିର୍ଭାବ । ସେହି ଲିଙ୍ଗ ବ୍ୟକ୍ତି ଶକ୍ତି ହିଁ ସୃଷ୍ଟିର ମୂଳାଧାର । ବିନା ଲିଙ୍ଗରେ ଶକ୍ତି ବ୍ୟକ୍ତ ହୋଇ ପାରିବ ନାହିଁ । ସେହି ସକାଶେ ଶକ୍ତି ଓ ଲିଙ୍ଗର ଏକତ୍ରାବିର୍ଭାବ । ସେହି ଶିବଶକ୍ତି ଅର୍ଦ୍ଧନାରୀଙ୍କର ବ୍ରହ୍ମା ପ୍ରଥମେ ସୃଷ୍ଟି କଲେ ମଧ୍ୟ ସ୍ତ୍ରୀ ପୁରୁଷ ପ୍ରାକୃତ ସଂସାରର ସୃଷ୍ଟି ଶିବଙ୍କଠାରୁ ହିଁ ଆରମ୍ଭ । ଶିବଶକ୍ତି ନିକଟରେ ଯେଉଁ ବୃଷଭ ରହିଥାଏ, ତାହା ଧର୍ମର ପ୍ରତୀକ । "ଚତୁଷ୍ପାଦ ବୃଷଭୋଧର୍ମ"—(ଭାଗବତ) । କେବଳ ସୃଷ୍ଟି ହେଲେ ଚଳିବ ନାହିଁ, ତାହା ଧର୍ମଦ୍ୱାରା ନିୟନ୍ତ୍ରିତ ବା ପରିଚାଳିତ ନ ହେଲେ ସେ ସୃଷ୍ଟି ନିରର୍ଥକ । ତେଣୁ ବୃଷଭର ଆବିର୍ଭାବ ।

ଯାହାହେଉ ଲିଙ୍ଗପୂଜା ଦେଶ କାଳ ଭେଦରେ ନାନା ଭାବରେ ବିଭକ୍ତ । ଏପରିକି ଚତୁଃଷଷ୍ଟି ଲିଙ୍ଗପୂଜାର ଉପାସନା ଦେଶରେ ପରିଦୃଷ୍ଟ ହୁଏ । ଲିଙ୍ଗପୁରାଣ, ଯାମଳ ପୁରାଣ ଓ କାପାଳ ତନ୍ତ୍ରରେ ଲିଙ୍ଗର ଲକ୍ଷଣାଦି ବର୍ଣ୍ଣିତ ଅଛି । ସେଥିମଧ୍ୟରୁ ମୁଖ୍ୟତଃ ହିରଣ୍ୟଗର୍ଭ ଲିଙ୍ଗର ପ୍ରଶସ୍ତି ଅଧିକ । ଭୂପୃଷ୍ଠରୁ ବୁଦ୍‌ବୁଦ୍ ଆକାରରେ ଲିଙ୍ଗାଙ୍କୁର ଉଦ୍‌ଗମନ ହେଲେ ଓ ସେଠାରେ ଜଳ ନିଷ୍କ୍ରମଣ ହେଲେ ତାହାର ଉପରିଭାଗେ ଶକ୍ତି ମୂର୍ତ୍ତି ସ୍ଥାପନ ପୂର୍ବକ ତାହାଙ୍କୁ ମହାଲିଙ୍ଗ ଆଖ୍ୟା ଦିଆ ଯାଇଥାଏ । ଜଳସ୍ରୋତଧାରା କପିଳଲିଙ୍ଗ କ୍ୱଚିତ ପରିଦୃଷ୍ଟ ହେଲେ ମଧ୍ୟ ତାହାର ପ୍ରଶସ୍ତି ତନ୍ତ୍ରରେ ବହୁଭାବରେ ରହିଅଛି । ଦ୍ୱାଦଶ ଜ୍ୟୋତି ଲିଙ୍ଗ ଓ ବାଣଲିଙ୍ଗର ପ୍ରତିଷ୍ଠା ଲିଙ୍ଗପୂଜା ପଦ୍ଧତିରେ ନାନାଭାବରେ ପରିଲକ୍ଷିତ ହୁଏ ଓ ସେଥିରେ ଶୋଧନାଦି ପ୍ରତିଷ୍ଠା କର୍ମର ପ୍ରୟୋଜନ ହୁଏ ନାହିଁ । ଏ ସମସ୍ତ ଲିଙ୍ଗକୁ ବାଦ୍ ଦେଲେ ଶୈବମାନେ ପ୍ରସ୍ତରରେ ନାନା ଲିଙ୍ଗ ବିଗ୍ରହ ନିର୍ମାଣ କରି-ଥିବାର ଦେଖାଯାଏ । ଗଙ୍ଗ ରାଜତ୍ୱରେ ଓଡ଼ିଶାରେ ମୁଖଲିଙ୍ଗର ଯଥେଷ୍ଟ ପ୍ରଚାର ଓ ପ୍ରସାର ହୋଇଥିଲା । ଲିଙ୍ଗାକାର ସ୍ତମ୍ଭରେ ମୁଖନିୟୁକ୍ତ ସଂସ୍ଥାନ କରି ତାହାଙ୍କୁ ତ୍ରିଦେବାତ୍ମିକ ଭାବରେ ଉପାସନା କରାଯାଉଥିଲା ଓ ଉକ୍ତ ପୂଜା ପଦ୍ଧତି ଗୁପ୍ତଯୁଗରୁ ମଧ୍ୟ ଆଚରିତ ହୋଇ ଆସୁଥିଲା ।

Digitized by srujanika@gmail.com

ଲିଙ୍ଗ ପୂଜା ବ୍ୟତୀତ ଶୈବମାନଙ୍କର ବାଲୁକା ଲିଙ୍ଗର ଉପାସନା ମଧ୍ୟ ପୁରାଣରେ ଦ୍ରଷ୍ଟବ୍ୟ । ବାଲୁକାଲିଙ୍ଗର ଉପାସନା ଧୀମାନଙ୍କର ଶୈବୋପାସନାର ମୁଖ୍ୟ ଅଙ୍ଗ । ନାନା ଓଷା ପର୍ବ ମଧ୍ୟରେ ବାଲୁକା ଦ୍ୱାରା ଲିଙ୍ଗ ସ୍ଥାପନ କରି ତାହାକୁ ସ୍ତ୍ରୀଲୋକେ ଆମ ଦେଶରେ ଉପାସନା କରି ଥାଆନ୍ତି । ନେତ ଓଷାରେ ବାସୁଆବଳଦ ବା ଧର୍ମବୃଷଭର ପୂଜା ତଥା ବାଲୁକା ଲିଙ୍ଗର ଉପାସନା, ବାଳତ୍ରୁଟିସ୍ଥା, ଦ୍ୱିତୀୟା ଓଷା, ପଥ ଓଷା, ବାଟଓଷା ପ୍ରଭୃତି ଓଷାମାନଙ୍କରେ ବାଲୁକା ପୂଜା ଏତେ ପ୍ରସିଦ୍ଧ ଏବଂ ଜନ-ପ୍ରିୟ ଯେ, ତାକୁ ଉତ୍କଳରେ ମୁଖ୍ୟ ପୂଜା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଶୈବମାନଙ୍କର ଉକ୍ତ ଶୈବୋପାସନା ପୁଣି ସାତ୍ତ୍ୱିକ, ରାଜସିକ ଓ ତାମସିକ ଭେଦରେ ନିବଦ୍ଧ । ମେଷ ସଂକ୍ରାନ୍ତିରେ ଚଡ଼କ ପୂଜା ସମଗ୍ର ଭାରତ ତଥା ଉତ୍କଳରେ ପ୍ରଚଳିତ । ଅଗ୍ନିରେ ଚାଲିବା, ପିଠିରେ କଣ୍ଟା ଫୋଡ଼ିବା, କଣ୍ଟାରେ ଶୋଇବା ପ୍ରଭୃତି ନାନା କଠୋର ସାଧନା ଦ୍ୱାରା ଭକ୍ତ ବା ସାଧକମାନେ ଶୈବଧର୍ମର ପ୍ରସାର କରିଥାନ୍ତି । ଏଗୁଡ଼ିକ ରାଜସିକ ବା ତାମସିକ ଶୈବୋପାସନା ।

ଉତ୍କଳରେ ଶୈବବାଦୀମାନଙ୍କର ଅନ୍ୟ ଏକ ଅଙ୍ଗ ପରିଦୃଷ୍ଟ ହୁଏ । ତାହା ହେଉଛି ନାଥପୂଜା ପଦ୍ଧତି । ନାଥ ବା ଯୋଗୀମାନେ ଶିବଙ୍କୁ ଉପାସନା କରନ୍ତି । କୁଜଙ୍ଗ କେସ୍ନାର ବାଙ୍କର ଶୈବ ନାଥମାନେ ଦୌପଦ୍ୟାସ ଚୈତ୍ୟର ଉପାସନା ସଙ୍ଗେ ସଙ୍ଗେ ଶିବଙ୍କର ଉପାସନା କରି ଥାଆନ୍ତି । ସେମାନଙ୍କ ଆଚରଣରୁ ସେମାନଙ୍କୁ ଜୈନ ବୋଲି ଗ୍ରହଣ କଲେ ମଧ୍ୟ ସେମାନେ ଶୈବ ଭାବରେ ତ୍ରିପୁଣ୍ଡ୍ର ଧାରଣ କରି ରୁଦ୍ରାକ୍ଷ ଗ୍ରହଣ କରିଥାନ୍ତି । ଉତ୍କଳରେ ଏହି ମୁଖ୍ୟ ଉପାସନା ଛାଡ଼ିଦେଲେ ନାନା ମଠ ପ୍ରଭୃତିରେ ମଧ୍ୟ ଶୈବାରାଧନା ପ୍ରଚଳିତ । ପୁରୀର ଲଙ୍ଗୁଳି ମଠ ଉକ୍ତ ଶୈବ ସଂପ୍ରଦାୟର ଶ୍ରେଷ୍ଠ ସ୍ଥାନ । ଏମାନଙ୍କ ମଧ୍ୟରେ ପୁଣି ନାନା ଭେଦ ରହିଛି । କେହି ଲଙ୍ଗୁଳି, କେହି ବା ଯାଯାବର । ଲଙ୍ଗୁଳିମାନେ ଶିବଙ୍କର ଉପାସନା କରନ୍ତି । ତ୍ୟାଗ ଦ୍ୱାରା ଶିବପ୍ରାପ୍ତିକୁ ହିଁ ସେମାନେ ଶ୍ରେଷ୍ଠ ମାର୍ଗ ବୋଲି ମନେ କରନ୍ତି । ଅନ୍ୟମାନେ ଚାମର, ଘଣ୍ଟା ଓ କଷାୟ ବସ୍ତ୍ର ଗ୍ରହଣ ପୂର୍ବକ ଶିବଙ୍କର ଉପାସନା କରିଥାନ୍ତି । କପାଳ ମୁଦ୍ରାରେ ଭିକ୍ଷା କରିବାଠାରୁ ଆରମ୍ଭ କରି ନାନାପ୍ରକାର ଆଚରଣ ସେମାନଙ୍କ ଉପାସନା ପଦ୍ଧତିରେ ଦେଖାଯାଏ । ଏହିପରି ନାନା ଭାବରେ ଉତ୍କଳରେ ଶୈବ-ଉପାସନା ପ୍ରଚଳିତ ରହିଛି ।

Digitized by srujanika@gmail.com

ଜଗନ୍ନାଥ ମନ୍ଦିରରେ ମଧ୍ୟ ଏ ଧର୍ମ ପରିଦୃଷ୍ଟ । ପାଣ୍ଡବମାନଙ୍କର ଆଗମନ ବିଷୟକ ସ୍ମୃତିରେ ଜଗନ୍ନାଥ ମନ୍ଦିରର ଜଗନ୍ନାଥ ପୂଜା ସହ ପଞ୍ଚପାଣ୍ଡବ ନାମରେ ଯମେଶ୍ୱରାଦି ମହାଲିଙ୍ଗଙ୍କର ଉପାସନା ବିଜଡ଼ିତ ।

କେହି କେହି ବଳରାମଙ୍କୁ ସ୍ୱୟମ୍ଭୁ ଶଙ୍କର ବୋଲି ମତ ପ୍ରକାଶ କରନ୍ତି । ସୋମବାର ଏକାଦଶୀ ପଡ଼ିଲେ ଶମ୍ଭୁ ଏକାଦଶୀ ଭାବରେ ଜଗନ୍ନାଥଙ୍କର ପ୍ରତିମୂର୍ତ୍ତି ଓ ଲୋକନାଥ ଏକତ୍ର ଉପାସିତ ହୋଇଥାନ୍ତି । ଜଗନ୍ନାଥଙ୍କ ସମସ୍ତ ସେବା ଓ ଯାତ୍ରାରେ ଶିବ ପ୍ରତିମାନ ଉପାସନା କରନ୍ତି । ବିଶେଷତଃ ଜଗନ୍ନାଥ ମନ୍ଦିରର ମୁଖ୍ୟ ବ୍ୟବସ୍ଥାପକ ଦୃଷ୍ଟିରୁ ଦେଖିଲେ ଏ ମନ୍ଦିର ସୁରକ୍ଷାଜନିତ କାଳରୁ ଦଣ୍ଡୀ ବା ଶୈବଙ୍କ ତତ୍ତ୍ୱାବଧାନରେ ରହି ଆସୁଅଛି । କେବଳ ସେତିକି ନୁହେଁ, ଏହା ପରମ୍ପରା ଯେ ସମର୍ଥିତ, ତାହା ସ୍ଥାପତ୍ୟ କଳାରୁ ମଧ୍ୟ ପ୍ରତିପାଦିତ । ଜଗନ୍ନାଥ ମନ୍ଦିରର ଭୋଗ ମଣ୍ଡପର ଉତ୍ତର ପାର୍ଶ୍ୱରେ ଯେଉଁସବୁ ଚିତ୍ର ଅଛି, ସେଥିରେ ଏକ ସ୍ଥଳରେ ଶିବ, ଶକ୍ତି ବା ଦୁର୍ଗା ଏବଂ ଜଗନ୍ନାଥଙ୍କୁ ଗୋଟିଏ ଫଳକରେ ରଖାଯାଇଛି । ତାହାର ଅର୍ଥ ବ୍ୟାପକ ଭାବରେ ଦେଖିଲେ ସବୁ ଏକ । ଯେ ଶିବ, ସେ ଶକ୍ତି; ସେ ମଧ୍ୟ ବିଷ୍ଣୁ । ତେଣୁ ଜଗନ୍ନାଥଙ୍କୁ ବିଷ୍ଣୁ, ସୁଭଦ୍ରାଙ୍କୁ ଶକ୍ତି ଏବଂ ସଙ୍କର୍ଷଣଙ୍କୁ ଶିବ ବୋଲି ଅନେକ ପଣ୍ଡିତ ଅନୁମାନ କରନ୍ତି ଏବଂ ଏ ଅନୁମାନରେ ଯାଥାର୍ଥ୍ୟ ରହିଛି ।

ଉପରୋକ୍ତ ଆଲୋଚନାରୁ ଏହା ନିଃସନ୍ଦେହରେ ପ୍ରମାଣିତ କରାଯାଇପାରେ ଯେ, ଶୈବ ଧର୍ମ ହିଁ ଉତ୍କଳର ଗଣଧର୍ମ । ଭାରତ ତଥା ଉତ୍କଳର ଗଣଧର୍ମ ଶୈବ ଧର୍ମ ନାନାଭାବରେ ବିଭିନ୍ନ ଗୋଷ୍ଠୀମାନଙ୍କ ଦ୍ୱାରା ପରିଚାଳିତ ହୋଇ ଆସିଅଛି । ଶୈବ ଧର୍ମର ମୁଖ୍ୟ ପ୍ରଚାରକ ଭଗବାନ ଶଙ୍କର, ଆଚାର୍ଯ୍ୟ ପଦ୍ମପାଦ, ନକୁଳେଶ ପ୍ରଭୃତି ପ୍ରସିଦ୍ଧ ପ୍ରଚାରକମାନେ ପ୍ରାଚୀନ କାଳରେ ରୁଦ୍ରଙ୍କୁ ମହାକାଳ ଶିବ ତଥା ସର୍ବଶକ୍ତିମାନ ଭାବରେ ଏପରି ପରିପ୍ରମାଣ କରନ୍ତି ଯେ, ସେଥିରେ ଶିବଙ୍କର ସତ୍ତ୍ୱ, ରଜ ଓ ତମ ଭେଦରେ ତିନି ପ୍ରକାର ଶୈବ ପରିଦୃଷ୍ଟ ହୁଅନ୍ତି । ଶଙ୍କର ପ୍ରବର୍ତ୍ତିତ ବେଦାନ୍ତ ମାର୍ଗରେ ସତ୍ୟ, ଶିବ, ସୁନ୍ଦର ରୁଦ୍ରଙ୍କୁ ସନ୍ନ୍ୟାସୀ ବା ଦଣ୍ଡୀମାନେ ସାକ୍ଷାତ ବ୍ରହ୍ମ ଭାବରେ ଉପାସନା କରନ୍ତି ଏବଂ ଯୌଗିକ ଦୃଷ୍ଟିରୁ ନିଜକୁ ସ୍ୱୟଂ ଶିବ ବୋଲି ଅନୁଭବ କରନ୍ତି । ଭାରତୀୟମାନେ ଏହି ସାତ୍ତ୍ୱିକ ଶୈବ ଅଟନ୍ତି ।

ଗିରି ଓ ପୁରୀ ସମ୍ପ୍ରଦାୟର ଶୈବମାନେ ଶିବଙ୍କର ରୁଦ୍ର ତଥା ପ୍ରଚଣ୍ଡ ମୂର୍ତ୍ତିର ଉପାସକ । ସେମାନେ ମହାକାଳ ଧୂର୍ଜଟୀଙ୍କୁ ଉପାସନା

Digitized by srujanika@gmail.com

କରିବା ସଙ୍ଗେ ସଙ୍ଗେ ନାନା କଠୋର ମାର୍ଗରେ ସିଦ୍ଧି ଲାଭ ଆଶା କରନ୍ତି । ତେଣୁ ଏମାନଙ୍କୁ ରାଜସିକ ଶ୍ରେଣୀୟ ଶୈବ ବୋଲି କୁହାଯାଏ । ତାନ୍ତ୍ରିକ ଦୃଷ୍ଟିକୋଣରୁ କେତେକ ଶିବଙ୍କୁ କାଳଭୈରବ, ପ୍ରଚଣ୍ଡ ଭୈରବ, ଏକାଙ୍ଘି ଭୈରବ, ଶ୍ୱାନ ଭୈରବ ବୋଲି ମାନିବା ରୁଦ୍ରଙ୍କୁ ତାମସିକ ଭାବରେ ଉପାସନା କରନ୍ତି । ପଞ୍ଚ ଦେବତା ଉପାସକ ବ୍ରାହ୍ମଣ ନୃସିଂହଙ୍କୁ ପଞ୍ଚ-ଦେବତାର ସମଷ୍ଟି ମହାରୁଦ୍ର ବୋଲି କହିବା ବହୁ ଗ୍ରନ୍ଥରୁ ପ୍ରତୀୟମାନ ହୁଏ । ନାରାୟଣ ଉପାସକ ବୈଷ୍ଣବମାନେ ଭଗବାନ ବିଷ୍ଣୁଙ୍କୁ ଯେତିକ ଗୁରୁତ୍ୱ ଦିଅନ୍ତି, ଶିବଙ୍କୁ ମଧ୍ୟ ସେତିକ ପ୍ରାଧାନ୍ୟ ଦେବା ହରିହର ମୂର୍ତ୍ତିର କଳ୍ପନାରୁ ଜଣାପଡ଼େ । ଶାକ୍ତମାନେ ମଧ୍ୟ ଶିବା ବା ଦୁର୍ଗାଙ୍କୁ ପରମାରାଧ୍ୟା ବୋଲି ଗ୍ରହଣ କରନ୍ତି । କାଳକ୍ରମେ ବୈଷ୍ଣବ ଧର୍ମ ରାଜାନୁଗତ ଧର୍ମ ହେବାରୁ ଗଙ୍ଗବଂଶର ନୃପତିମାନଙ୍କ ସମୟରେ ଶିବମୂର୍ତ୍ତି ହରିହର ମୂର୍ତ୍ତିରେ ପରିଣତ ହେଲେ । ପରମ ଶୈବ କ୍ଷେତ୍ର ଭୁବନେଶ୍ୱରର ଲିଙ୍ଗରାଜ ହରିହର ମୂର୍ତ୍ତି ଭାବରେ ବର୍ତ୍ତମାନ ଉପାସ୍ୟ—ମାଧବ, ଉମା ମାଧବ ଏକ ବୋଲି ଶାସ୍ତ୍ର ସମର୍ଥିତ ବାକ୍ୟ ଉଦ୍ଧାର କରି ସେ ବେଳର ପଣ୍ଡିତମାନେ ରାଜାମାନଙ୍କୁ ପରୀକ୍ଷା ଦେଲେ । କପିଳ ସଂହିତାରେ ପ୍ରଥମରୁ ହରିହର ମୂର୍ତ୍ତିର ବ୍ୟାଖ୍ୟା ମିଳେ । ପୁନଶ୍ଚ ନରସିଂହ ବାଜପେୟୀଙ୍କ ଗ୍ରନ୍ଥରେ ମଧ୍ୟ ସେହି ମାଧବ ଓ ଉମାମାଧବଙ୍କ ଏକତ୍ୱ ସ୍ୱୀକୃତ । ଶୈବ ମନ୍ଦିରରେ ବା ଧର୍ମରେ ବୈଷ୍ଣବ ଧର୍ମର ଏପରି ପ୍ରଭାବ ପରିଦୃଷ୍ଟ ହେଲେ ମଧ୍ୟ ଶୈବଧର୍ମର ପ୍ରାଧାନ୍ୟ ହ୍ରାସ ପ୍ରାପ୍ତ ହୋଇନାହିଁ । ଅଦ୍ୟାପି ଉତ୍କଳରେ ସର୍ବତ୍ର ଶିବ ପୂଜିତ । ନାନା ପୂଜାପଦ୍ଧତି ଅନୁଷ୍ଠାନ ବେଳେ ଆମେ ଶିବ ମନ୍ଦିରକୁ ଯାଇ ଭକ୍ତି-ପୂର୍ଣ୍ଣ ଚିତ୍ତରେ ଶିବଙ୍କୁ ହିଁ ନୈବେଦ୍ୟ ଦାନ କରୁଁ ।

Digitized by srujanika@gmail.com

# ଜଗନ୍ନାଥ କ୍ଷେତ୍ରରେ ବିବିଧ ଯାତ୍ରା

ପୁଣ୍ୟଭୂମି ଭାରତରେ ଏହି ପୁରୁଷୋତ୍ତମଧାମ ଅନାଦି ନିତ୍ୟଲୀଳାମୟ ଶ୍ରୀ ବୈକୁଣ୍ଠନାଥଙ୍କର ନିତ୍ୟ ଲୀଳାଙ୍ଗକାର କ୍ଷେତ୍ର । ନୀଳାଦ୍ରି ସିଂହ ଜଗନ୍ନାଥଙ୍କ ଆବିର୍ଭାବାଦି ଇତିହାସ, ପୂଜାପଦ୍ଧତି ଓ ଗୀତନୀତି, ନୈବେଦ୍ୟ ନିମପଦ୍ଧତି ଓ ଯାତ୍ରାଦି ବିବେଚନା କଲେ ଏହାର ଅପୂର୍ବ ବିଶେଷତ୍ୱ ପରିଲକ୍ଷିତ ହୁଏ । ଏହି ପବିତ୍ରଧାମର ଅନାଦିତ୍ୱ ନେଇ କେହି କେହି ସନ୍ଦେହ ପ୍ରକାଶ କରିଥାନ୍ତି । କିନ୍ତୁ ନାନାବିଧ ସଂହିତା, ଆଗମ ଓ ପୁରାଣାଦିର ଆଲୋଚନା କଲେ ଉକ୍ତ ଧାମର ନିତ୍ୟତା, ପବିତ୍ରତା ତଥା ଶାଶ୍ୱତତା ସମ୍ବନ୍ଧରେ ବଳିଷ୍ଠ ପ୍ରମାଣ ଆଲୋଚକର ଦୃଷ୍ଟିପଥାରୂଢ଼ ହୁଏ । ଅନ୍ୟାନ୍ୟ ସୂକ୍ଷ୍ମ ବିଷୟ ଛାଡ଼ିଦେଲେ ମଧ୍ୟ ପୁରୁଷୋତ୍ତମପୀଠରେ ବ୍ୟବହୃତ ନୈବେଦ୍ୟ ପାତ୍ର, ଖେଚରାନ୍ନ ମାସପୂପ ଓ ମାସବଟକ, ବ୍ରୀହିନାଡ଼ୀ ଆଦି ନୈବେଦ୍ୟ ସାମଗ୍ରୀ, ଅଷ୍ଟ କପାଳ ଓ ଦ୍ୱାଦଶ କପାଳ, ପୟଃପେଟି, ସୁବାସ ଜଳଘଣ୍ଟା ପ୍ରଭୃତିରେ ଆଗମୋକ୍ତ ତତ୍ତ୍ୱମାନଙ୍କର ବ୍ୟଞ୍ଜନାବିହିତ ଓ ନୈବେଦ୍ୟ-ସାମଗ୍ରୀରେ ବେଦପୁରାଣାଦିର ନିୟମ ପ୍ରଚଳିତ ରହିଅଛି । ବେଦୋକ୍ତ ସୋମଯାଗର ବିବରଣୀ ପାଠ କଲେ ଉକ୍ତ ଯାଗର କେତେକ ନିୟମ ମଧ୍ୟ ଏ କ୍ଷେତ୍ରରେ ଅକ୍ଷୁନ୍ନ ରହିଅଛି । ମହାପ୍ରସାଦ ସେବନ ପରେ ଭକ୍ତ ତଥା ଯାତ୍ରୀମାନେ ହସ୍ତ ପ୍ରକ୍ଷାଳନ ନ କରି ଅନେକ ସମୟରେ ମସ୍ତକୋପରି ହସ୍ତ ସଂଘୃଳନ କରିବାଦ୍ୱାରା ହସ୍ତଧୌତର କାର୍ଯ୍ୟ ସମାପନ କରିଥାନ୍ତି । ଏ ବିଧି ସୋମଯାଗରେ ବିହିତ ରହିଅଛି । ଦେବତାମାନେ ସୋମଯାଗ ଶେଷରେ ଚରୁଅନ୍ନ ଭକ୍ଷଣ କରି ସାରିଲା ପରେ ହସ୍ତଧୌତ ନ କରି କେବଳ ମୁଣ୍ଡରେ ହାତ ବୋଳିଦିଅନ୍ତି ।

ଏହି ପୀଠସ୍ଥ ରତ୍ନସିଂହାସନ ଗୋଟିଏ ମାତ୍ର ଶିଳାଚକ୍ର ଉପରେ ପ୍ରତିଷ୍ଠିତ । ଉକ୍ତ ରତ୍ନପିଣ୍ଡି ଓ ଦାରୁପ୍ରତିମାଙ୍କ ସଂଯୋଗ ହେତୁ ଏହା ସର୍ବାତ୍ମ-ସଂଯୋଗ ଯୋଗପୀଠ ରୂପେ ସମ୍ମାନିତ ଏହାର ପୂର୍ବଭାଗରେ ବେଦମୂର୍ତ୍ତି

Digitized by srujanika@gmail.com

ବୈନତେୟ ବାହନ ରୂପେ ବିରାଜମାନ । ଏଣୁ ଏହାଙ୍କର ନୈବେଦ୍ୟ ମହାପ୍ରସାଦ ରୂପେ ସୁବିଖ୍ୟାତ । ଏହି ପିଣ୍ଡି ପ୍ରତିମା ଯୋଗରେ ଯେଉଁ ମହାପ୍ରସାଦ ବିମଳାଦି ଆଦିଶକ୍ତିମାନଙ୍କର ସମର୍ପଣୀୟ ହୁଏ ଓ ଦାରୁବ୍ରହ୍ମଙ୍କର ବିଗ୍ରହ ନିର୍ମାଲ୍ୟ ମାଳାଦି ଶକ୍ତିମାନଙ୍କଠାରେ ଅର୍ପିତ ହୋଇଥାଏ, ତାହା ଅସାଧାରଣ ଓ ଅତ୍ୟନ୍ତ ଦୁର୍ଲଭ । ଏହା ସର୍ବୋପନିଷଦ ସାରଭୂତ, ସର୍ବାଗମ-ତନ୍ତ୍ର, ସ୍ମୃତି ଓ ଶ୍ରୁତିସମର୍ଥିତ ପୀଠ ଅଟେ । ଏହା ହିଁ ମର୍ତ୍ତ୍ୟବୈକୁଣ୍ଠ । ତେଣୁ ଏଠାରେ କୈବଲ୍ୟ ବୈକୁଣ୍ଠ ପ୍ରତିଷ୍ଠିତ ରହିଅଛି—ଯେଉଁଠି କି କଳେବର ସମୟରେ ଚତୁର୍ଦ୍ଧା ଦାରୁବିଗ୍ରହଙ୍କର ନବକଳେବର ବିଧି ଅନୁଷ୍ଠିତ ହୋଇଥାଏ । ଅତ୍ର ପୀଠସ୍ଥ ଚାରିଗୋଟି ସ୍ଥାନ ଯଥାକ୍ରମେ ଭକ୍ତର ଭକ୍ତିଧନ-ସମର୍ପଣଯୋଗ୍ୟ ସ୍ଥଳ ଅଟେ । ପ୍ରଥମ ରତ୍ନସିଂହାସନ, ଦ୍ୱିତୀୟ କୈବଲ୍ୟ-ବୈକୁଣ୍ଠ, ତୃତୀୟ ଅକ୍ଷୟ କଳ୍ପବଟ, ଚତୁର୍ଥ ବ୍ରହ୍ମାସନ ବା ମୁକ୍ତିମଣ୍ଡପ । ଏଥିରେ ପ୍ରଥମ ତିନୋଟି ସ୍ଥାନରେ ସମର୍ପଣୀୟ ବସ୍ତୁ ଦେବାୟତ ଓ ଚତୁର୍ଥ ବ୍ରହ୍ମାସନରେ ସମର୍ପିତ ବସ୍ତୁ ଶ୍ରୋତ୍ରୀୟ ବ୍ରାହ୍ମଣାୟତ। ଏହି ସ୍ଥାନଗୁଡ଼ିକ ନାନା କାମନାପରିପୂରକ ଓ ନିର୍ବାଣପ୍ରଦ; ଏହା ଅତ୍ୟନ୍ତ ଦୁର୍ଲଭ । କଳିଯୁଗରେ ନାନାବିଧ କଳୁଷକୁଳକଳୁଷିତ ମାନବମାନଙ୍କର କେବଳ ଉଦ୍ଧାରାର୍ଥ ଅମୂର୍ତ୍ତି ଅବାଙ୍ମାନସଗୋଚର ଅବ୍ୟକ୍ତ ବ୍ରହ୍ମଙ୍କର ଓଁକାର ରୂପ ଦାରୁବିଗ୍ରହ ଧାରଣ ଏବଂ ବିଚିତ୍ର ନାନାବିଧ ଯାତ୍ରା ଆବିଷ୍କାର, ମହାପ୍ରସାଦ ବିତରଣ, ସ୍ୱବିଗ୍ରହାଦି ସ୍ପର୍ଶନ ଦର୍ଶନାଦି ପ୍ରଦାନ ପ୍ରଭୃତି କର୍ମକଳାପ ରୂପଲୀଳା ଦୀନଜନ ଉଦ୍ଧାରାର୍ଥେ ପ୍ରକଟିତ । ଉତ୍କଳୀୟ ନରସିଂହ ବାଜପେୟୀ ଏହି ଦାରୁବିଗ୍ରହଙ୍କ ସମ୍ବନ୍ଧରେ ସ୍ୱୀୟ ନିତ୍ୟାଚାର ପ୍ରଦୀପାନ୍ତରେ ପ୍ରଥମ ମଙ୍ଗଳାଚରଣରେ ଶ୍ରୀ ନୀଳାଦ୍ରିନାଥଙ୍କୁ ଚିନ୍ତା କରି କହିଛନ୍ତି:—

"ଶାଖାଭିଃ ସକଳାଭିରୁକ୍ତମହିମା
ନୀଳାଦ୍ରିମୂଳସ୍ଥିତ
ପୀନସ୍କନ୍ଧଧୃତ ପ୍ରସୂନବିଭବ
ସ୍ୱାନନ୍ଦକେଦୋଦୟଃ
ଯସ୍ୟେଣାଧରପଲ୍ଲବୋ ବିବୁ-
ଧୈର୍ସେବ୍ୟ ଶ୍ରିୟାଶୋଭିତ
ଭକ୍ତେଭ୍ୟଃ ବିତରନ୍ ଫଳମ୍ ବିଜୟତେ
କୋପ୍ୟେଶଃ କଳ୍ପଦ୍ରୁମଃ ।"

Digitized by srujanika@gmail.com

ଏହିପରି ଅପୂର୍ବ ଅଲୌକିକ ଦେବତାଙ୍କର ପ୍ରଚଳିତ ଓ ଅନୁସୃତ ବିବିଧ ସରଣୀରେ ସର୍ବଦର୍ଶନସମନ୍ୱୟର ଧାରା ମଧ୍ୟ ପ୍ରକଟିତ । ପ୍ରଚଳିତ ନୀତିପଦ୍ଧତିରେ ଅଭେଦ, ଭେଦ, ଭେଦାଭେଦ ଓ ଅଚିନ୍ତ୍ୟ ଭେଦାଭେଦ-ବାଦାଦି ସର୍ବସ୍ୱ ପ୍ରତିଷ୍ଠିତ । ମହାପ୍ରସାଦ ଅନ୍ନାଦିରେ ଅଭେଦ ଭାବ, ନୈବେଦ୍ୟସାମଗ୍ରୀରେ ନିବେଦନ ପୂର୍ବରୁ ଭେଦଭାବ, ପୂଜୋପଯୋଗୀ ଆମ୍ନାତ ଜଳରେ ଭେଦାଭେଦବାଦ (ଶୂଦ୍ର ଜଳ ଆଣେ ଓ ଗରାବଡ଼ୁ ସେଥିରୁ ଜଳ ଆଣି ସିଂହାସନରେ ରଖେ) ବିଶ୍ୱାବସୁବଂଶୀୟ ପ୍ରଣୀତ ରୂପେ ଦୈତ୍ୟମାନେ (ଦଇତା) ଏହି ମୂର୍ତ୍ତିମାନଙ୍କର ବିଗ୍ରହ ସଂପାଦକ ଓ ନବକଳେବରାଦିରେ ଏହାଙ୍କ ସହିତ ସମଗୋତ୍ରଭାବାପନ୍ନ ହେବା ପରନ୍ତୁ ନୈବେଦ୍ୟ ଉପଯୋଗୀ ବେଶଭୂଷାଦିରେ ଅନଧିକୃତ ରହିବାଦ୍ୱାରା ଏହା ଅଚିନ୍ତ୍ୟ ଭେଦାଭେଦବାଦର ସୂଚକ ଅଟେ ।

ରଥ ଯାତ୍ରା ଉତ୍ସବ ଓ ସ୍ନାନଯାତ୍ରାରେ ମୂର୍ତ୍ତିମାନଙ୍କର ବିଜୟ ଉତ୍ସବରେ ଜାତି-ଧର୍ମ-ନିର୍ବିଶେଷରେ ଏହାଙ୍କ ବିଗ୍ରହକୁ ସମସ୍ତେ ସ୍ପର୍ଶ କରିପାରନ୍ତି । ଏହି ଚତୁର୍ବ୍ୟୂହ ରୂପାନ୍ତରିତ ବିଶ୍ୱଜନୀନ ବିଶ୍ୱଉଦ୍ଧାରକ ଷରାଷରାଶ୍ରିତ ପୁରୁଷୋତ୍ତମଙ୍କ ଏ ଦାରୁବ୍ରହ୍ମରେ ସର୍ବମତ ନିଷ୍ପନ୍ନିତ । କୌଣସି ନାସ୍ତିକ ପାପାତ୍ମକଙ୍କ ବିକଳ୍ପର ଅବକାଶ ନାହିଁ । ଏହାଙ୍କ ବିଗ୍ରହରେ ଆବରଣ କଳ୍ପନା ଦ୍ୱାରା ଚରାଚରାଧୀଶ ଅର୍ଦ୍ଧନାରୀଶ୍ୱର ଏକୋଦେବଃ ଅଖିଳପ୍ରାଣ କର୍ମନିୟନ୍ତାଙ୍କର ଚିନ୍ତା ହିଁ ଭକ୍ତର ଅନ୍ତରରେ ଜାଗ୍ରତ ହୁଏ । ଏହିପରି ଦେବତାଙ୍କର ଐଶୀ ବିଶ୍ୱନିୟାମିକା ଶକ୍ତି ହିଁ ମହାକାଳୀ । ଉକ୍ତ ଶକ୍ତି ହିଁ ସୁଭଦ୍ରା ରୂପେ ପରିଚିତା । ପୂର୍ବରୁ କୁହାଯାଇଛି ଯେ, ପୁରୁଷୋତ୍ତମ ତଥା ଜଗନ୍ନାଥଧାମ ସର୍ବଭାରତୀୟ ସ୍ତରରେ ଏକ ଶ୍ରେଷ୍ଠ ଧାମ । ଉକ୍ତ ଧାମର ସମ୍ବନ୍ଧ ଅନୁଷ୍ଠାନ ଯାତ୍ରା ଏବଂ ଉତ୍ସବାଦି ରହସ୍ୟାତ୍ମକ ଓ କୌତୂହଳୋଦ୍ଦୀପକ । ବିଭିନ୍ନ ଯାତ୍ରା ଓ ଉତ୍ସବାଦି ମଧ୍ୟରେ ଜଗନ୍ନାଥଙ୍କ ଦ୍ୱାଦଶଯାତ୍ରା ପ୍ରସିଦ୍ଧ । ପୁଣି ଏହି ଦ୍ୱାଦଶଯାତ୍ରା ମଧ୍ୟରେ ସ୍ନାନୋତ୍ସବ, ରଥଯାତ୍ରା ଓ ଚନ୍ଦନଯାତ୍ରା ଉଲ୍ଲେଖଯୋଗ୍ୟ । ଦ୍ୱାଦଶଯାତ୍ରା ଯଥାକ୍ରମେ ମଞ୍ଜସ୍ନାନ, ଶ୍ରୀଗୁଣ୍ଡିଚା, ଶୟନଯାତ୍ରା, ଦକ୍ଷିଣାୟନ, ଉତ୍ତରାୟଣ, ପାର୍ଶ୍ୱପରିବର୍ତ୍ତନ ଉଦ୍‌ବୋଧନ, ପ୍ରାବରଣ, ପୁଷ୍ୟାଭିଷେକ ବା ପୁଷ୍ୟସ୍ନାନ ଦୋଳକେଳି, ଦମନକ ଓ ଚନ୍ଦନଯାତ୍ରା । ଆଲୋଚ୍ୟ ପ୍ରବନ୍ଧରେ କେତେକ ବିଶିଷ୍ଟ ଯାତ୍ରାର ବିବରଣୀ ପ୍ରଦତ୍ତ ହେଉଅଛି ।

Digitized by srujanika@gmail.com

ଆଦ୍ୟଯାତ୍ରା ଭାବରେ ମଞ୍ଚସ୍ନାନ ଅତୀବ ଗୁରୁତ୍ୱପୂର୍ଣ୍ଣ । ଏହା ଜ୍ୟେଷ୍ଠ ମାସର ଉଦୟକାଳୀନ ପୂର୍ଣ୍ଣିମାରେ ବିହିତ ପ୍ରଥମଯାତ୍ରା ଓ ଦାରୁ-ବ୍ରହ୍ମଙ୍କ ଆବିର୍ଭାବ-ଦିବସ । ସତ୍ୟଯୁଗର ସର୍ବପ୍ରଥମ ଦିବସ ଭାବରେ ଜ୍ୟେଷ୍ଠ ପୂର୍ଣ୍ଣିମା ପ୍ରସିଦ୍ଧ । କେହି କେହି ଏହି ଦିବସକୁ ଅମାବାସ୍ୟା ବୋଲି କହିବାକୁ ଯାଇ ନାନା ମତ ମଧ୍ୟ ପ୍ରକାଶ କରି ଅଛନ୍ତି ।

ନୀଳାଦ୍ରିବିହାରୀ ଜଗନ୍ନାଥଙ୍କ ସ୍ନାନୋତ୍ସବ ସକାଶେ ତତ୍ପୂର୍ବ-ଦିନ ଉତ୍ତରପାର୍ଶ୍ୱବର୍ତ୍ତୀ ଶୀତଳାଦେବୀଙ୍କ ସମ୍ମୁଖବର୍ତ୍ତୀ କୂପରୁ ଜଳ ସଂଗୃହୀତ ହୋଇଥାଏ । କୂପଜଳ ସଂସ୍କୃତ ପୁରଃସରପୂର୍ବକ ବ୍ରହ୍ମା ଆଚାର୍ଯ୍ୟଙ୍କ ଦ୍ୱାରା ଉକ୍ତ ଅଷ୍ଟୋତ୍ତର ଶତସ୍ୱର୍ଣ୍ଣ ରଜତ ବା ତାମ୍ରଘଟରେ ଦେବଦେବୀଙ୍କ ପୂର୍ବ-ଦିନରେ ଭୋଗମଣ୍ଡପ ଗୃହରେ ଅଧିବାସିତ ଓ ବସ୍ତ୍ରାଚ୍ଛାଦିତ ସନାଶୀକେଳ ଭାବରେ ସୁସଜ୍ଜିତ ହୋଇ ରହିଥାଏ । ସ୍ନାନପୂର୍ଣ୍ଣିମାଦିନ ଉକ୍ତ ଘଟମାନ ମଞ୍ଚସ୍ଥ ଦେବତାଙ୍କ ସମ୍ମୁଖରେ ସ୍ଥାପିତ ହୁଏ ଓ ପୂଜାବିଧି ସଂସ୍କାରପୂର୍ବକ ପ୍ରଭୁଙ୍କର ଶିରୋଦେଶରେ କ୍ରମଶଃ ସେବକଙ୍କ ଦ୍ୱାରା ଅଭିଷେକ କରାଯାଏ । ସ୍ନାନାନ୍ତର ଗଜାନନବେଶ ଅନୁଷ୍ଠିତ ହୁଏ । ଅର୍ଥାତ୍ ପ୍ରଭୁଙ୍କର ଜନ୍ମଦିବସରେ ସମସ୍ତ ଜଗତର ବିଘ୍ନହନ୍ତାରୂପୀ ଗଜାନନବେଶ ପ୍ରଥମାବିର୍ଭାବ ଦିବସରେ ସ୍ୱୟଂ ଜଗନ୍ନାଥ ଗ୍ରହଣ କରନ୍ତି । ଏହି ସ୍ନାନୋତ୍ସବ ଦର୍ଶକ ଭକ୍ତମାନଙ୍କ ପକ୍ଷରେ ପୁନର୍ଜନ୍ମନିବାରକ ସ୍ୱରୂପ । ଦ୍ୱିତୀୟ ଶ୍ରୀଗୁଣ୍ଡିଚା—ଏହା ପତିତପାବନ ଯାତ୍ରା ବା ଘୋଷଯାତ୍ରା ନାମରେ ନାମିତ । ଉକ୍ତ ରଥରେ ଚତୁର୍ଦ୍ଧା ମୂର୍ତ୍ତିଙ୍କ ଯାତ୍ରା ଓ ପୂଜା ମହାସମାରୋହରେ ଅନୁଷ୍ଠିତ ହୁଏ । ପ୍ରଥମତଃ ରଥନିର୍ମାଣ ସ୍ଥାନରୁ ସର୍ବାଦୌ ଜଗନ୍ନାଥଙ୍କ ରଥ ସିଂହଦ୍ୱାର ସମୀପବର୍ତ୍ତୀ ସ୍ଥାନକୁ ଆସେ । ରଥର ଦଉଡ଼ି ଟାଣିବା ଓ ରଥଚଳନ ଇତ୍ୟାଦି କାର୍ଯ୍ୟ ପ୍ରଥମରେ କିନ୍ତୁ ବଳଦେବଙ୍କର ସୁସମ୍ପନ୍ନ ହୁଏ । ବାହୁଡ଼ା ସମୟରେ ରଥକୁ ଦକ୍ଷିଣାୟନ କରାଯାଏ । ସେଠାରୁ ପ୍ରଥମରେ ସୁଭଦ୍ରାଙ୍କ ରଥ ଚଳନକାର୍ଯ୍ୟ ସମାହିତ ହୁଏ । ଏହି ରଥମାନ କ୍ରମଶଃ ଉଭୟ ପାର୍ଶ୍ୱରେ ନାନାବିଧ ସଂକୀର୍ତ୍ତନ-ପୁରଃସର ବିବିଧ ବନ୍ଦାପନାପୂର୍ବକ ନାନାବାଦ୍ୟ ଲୋକସାଗର କୋଳାହଳ ମଧ୍ୟ ଦେଇ ଯାତ୍ରା କରନ୍ତି । ଯାତ୍ରାଦିନ ରଥରେ ଅବସ୍ଥାନ କରି ଚତୁର୍ଦ୍ଧା ମୂର୍ତ୍ତି ମହା ସମାରୋହରେ ତତ୍ପରଦିନ ଯଜ୍ଞବେଦୀକୁ ଯାତ୍ରାକରି ସେହି ବେଦୀରେ ଏକ ସପ୍ତାହବ୍ୟାପୀ କାଳଯାପନ କରିଥାଆନ୍ତି । ସେଠାରେ ନୀଳାଦ୍ରି ପରି ଯଥୋପଚାରରେ ଅନ୍ନଭୋଗାଦି ଅନୁଷ୍ଠିତ ହୁଏ । ବାହୁଡ଼ା ଦଶମୀ ଦିନ ସୂର୍ଯ୍ୟୋଦୟରୁ ପୂର୍ବରୁ ଖେଚରାନ୍ନ ଭକ୍ଷଣପୂର୍ବକ ଭଗବାନ ଦକ୍ଷିଣମୁଖ

Digitized by srujanika@gmail.com

ହୋଇ ରଥାରୂଢ ହୁଅନ୍ତି । ଶୟନଯାତ୍ରା—ଆଷାଢ଼ ଶୁକ୍ଳ ଏକାଦଶୀ ରାତ୍ରରେ ଶୟନବିଧି ଏବଂ ଭାଦ୍ର ଶୁକ୍ଳ ଏକାଦଶୀ ଦିନ ପାର୍ଶ୍ୱପରିବର୍ତ୍ତନ, କାର୍ତ୍ତିକ ଶୁକ୍ଳ ଏକାଦଶୀ ଦିନ ପ୍ରବୋଧନ ଯାତ୍ରା ଅନୁଷ୍ଠିତ ହୋଇଥାଏ ।

ଦକ୍ଷିଣାୟନ ଓ ଉତ୍ତରାୟଣ ଯାତ୍ରା ଦିୟ କର୍କଟ ଓ ମକର ସଂକ୍ରାନ୍ତିରେ ପୂର୍ବବତ ବିହିତ ହୋଇଥାଏ । ପୌଷ ଶୁକ୍ଳ ଷଷ୍ଠୀରେ ପ୍ରାବରଣ ଉତ୍ସବ । ଏହି ଉତ୍ସବରେ ମହାପ୍ରଭୁଙ୍କ ଯୋଡ଼ଲାଗି ହୁଏ । ପୁଷ୍ୟ ପୂର୍ଣ୍ଣିମା ଦିନ ପୁଷ୍ୟାଭିଷେକ ଅନୁଷ୍ଠିତ ହୁଏ । ପୁଷ୍ୟାଭିଷେକ ପରେ ଦୋଳପୂର୍ଣ୍ଣିମା ଓ ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀରେ ଦମନକ ଯାତ୍ରା ଅନୁଷ୍ଠିତ ହୁଏ । ଅକ୍ଷୟ ତୃତୀୟାଠାରୁ ଆରମ୍ଭ ହୁଏ ଚନ୍ଦନଯାତ୍ରା । ଏହିପରି ଦ୍ୱାଦଶଯାତ୍ରା ଯେପରି ବିଧିରେ ଏ କ୍ଷେତ୍ରରେ ଅନୁଷ୍ଠିତ ହୁଏ, ଏହା ଅନନ୍ୟସାଧାରଣ । ଆଉ ତ୍ରିବିଧ ଦେବତାଙ୍କ ପରିଚୟ ରହସ୍ୟମୟ ଏବଂ ଦର୍ଶନ ଶାସ୍ତ୍ରସମର୍ଥିତ, କିନ୍ତୁ ଭଗବାନଙ୍କର ତିନ ସ୍ତରରେ ଅବସ୍ଥିତିର ସ୍ୱରୂପଗତ ପରିଚୟ ଆହୁରି ବେଶୀ ସୂକ୍ଷ୍ମ, ରହସ୍ୟାତ୍ମକ ଓ ଗୂଢ଼ ।

ସୁଭଦ୍ରା—କ୍ଷରପୁରୁଷ, ସଗୁଣଆତ୍ମା, ବ୍ୟକ୍ତସ୍ୱରୂପ, ସଗୁଣ-ବ୍ରହ୍ମ, ଶକ୍ତି, ଆନନ୍ଦ, କର୍ମ, ବିଶ୍ୱବ୍ୟାପକ ବା ବିଶ୍ୱର ଶକ୍ତି ।

ବଳରାମ—ଅକ୍ଷରପୁରୁଷ, ନିର୍ଗୁଣଆତ୍ମା, ଅବ୍ୟକ୍ତସ୍ୱରୂପ, ନିର୍ଗୁଣବ୍ରହ୍ମ, ଶିବ, ଚିତ୍, ଜ୍ଞାନ, ଜ୍ଞାନ ।

ଜଗନ୍ନାଥ—ପୁରୁଷୋତ୍ତମ, ପରମାତ୍ମା, ବ୍ୟକ୍ତାବ୍ୟକ୍ତ, ସ୍ୱରୂପ, ପରଂବ୍ରହ୍ମ, ପରମପୁରୁଷ, ସତ୍, ଭକ୍ତି, ବିଶ୍ୱାତୀତ, ପରିପୂର୍ଣ୍ଣ-ସତ୍ତ୍ୱ, ପ୍ରେମ ।

Digitized by srujanika@gmail.com

# ଦାରୁବ୍ରହ୍ମଙ୍କ ନବକଳେବର

ସମଗ୍ର ପୃଥିବୀରେ କେବଳ ପୁରୁଷୋତ୍ତମ କ୍ଷେତ୍ରରେ ହିଁ ଦାରୁବ୍ରହ୍ମଙ୍କ ଉପାସନା ପ୍ରଚଳିତ । ଭାରତର ବିଭିନ୍ନ ପୁଣ୍ୟକ୍ଷେତ୍ର ମାନଙ୍କରେ ଦାରୁ-ନିର୍ମିତ ଦେବତା ନ ଥିବା ସ୍ଥଳେ କେବଳ ପୁରୀରେ କାହିଁକି ଏପରି ଦାରୁନିର୍ମିତ ଦେବତାଙ୍କ ଉପାସନା ଅଦ୍ୟାବଧି ବିଧିବଦ୍ଧ ଭାବରେ ଅନୁସୃତ ହୋଇ ଆସୁଅଛି, ତାହା କୌତୂହଳର ବିଷୟ ଏବଂ ତାର କାରଣ ମଧ୍ୟ ଅନୁସନ୍ଧେୟ ।

ଭାରତର ସର୍ବାଞ୍ଚଳ ଅପେକ୍ଷା ଓଡ଼ିଶାରେ ହିଁ ବେଦାଧ୍ୟନର ପ୍ରଶସ୍ତ କ୍ଷେତ୍ର ଏବଂ ଅନୁକୂଳ ବାତାବରଣ ବହୁକାଳରୁ ଆଜି ପର୍ଯ୍ୟନ୍ତ ରହି ଆସିଛି । ଦ୍ୱିବେଦୀ, ତ୍ରିବେଦୀ, ଚତୁର୍ବେଦୀ, ଶତପଥୀ, ତ୍ରିପାଠୀ ପ୍ରଭୃତି ସଙ୍ଗାଧାରୀ ବହୁ ବ୍ରାହ୍ମଣ ସମ୍ପ୍ରଦାୟ ଏଠାରେ ଅଛନ୍ତି । ପୁନଶ୍ଚ ସାମବେଦୀ, ଯଜୁର୍ବେଦୀ, ଅଥର୍ବ ବେଦୀ ବ୍ରାହ୍ମଣ ମଧ୍ୟ ଏହି ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବହୁଦିନରୁ ବସବାସ କରି ଆସୁଛନ୍ତି । ଏବେ ବି ଓଡ଼ିଶାର ପ୍ରାୟ ସବୁ ଅଂଚଳରୁ ବେଦ ସମ୍ବନ୍ଧୀୟ ଅସଂଖ୍ୟ ତାଳପତ୍ର ପୋଥି ମିଳୁଛି । ଯଜୁର୍ବେଦରେ କାଣ୍ୱଶାଖା ସମ୍ବନ୍ଧୀୟ ଏବଂ ଅଥର୍ବ ବେଦର ପ୍ରାୟ ସକଳ ଶାଖାର ସୂକ୍ତ ଏହି ଅଂଚଳରେ ହିଁ ଦେଖିବାକୁ ମିଳେ ।

ଏଥିରୁ ମନେହୁଏ, ବହୁକାଳରୁ ବେଦାଧ୍ୟୟନ, ବେଦଚର୍ଚ୍ଚା, ବୈଦିକ ଉପାସନା, ବୈଦିକ କର୍ମକାଣ୍ଡର ଅନୁଶୀଳନ, ବିବାହବ୍ରତାଦିରେ ବୈଦିକ ରୀତିର ଅନୁସରଣ ପ୍ରଭୃତି ଏଠାରେ ବହୁଳ ଭାବରେ ପ୍ରଚଳିତ ହୋଇଆସୁଛି । ସର୍ବୋପରି ଜଗନ୍ନାଥ ମନ୍ଦିରସ୍ଥ ଉପାସନା ପ୍ରଣାଳୀରେ ଅନ୍ୟାନ୍ୟ ରୀତିସହ ବୈଦିକ ରୀତି ବହୁଳାଂଶରେ ଅନୁସରଣ କରା-ଯାଉଛି ।

"ଅଦୋ ଯଦ୍ଦାରୁ ପ୍ଲବତେ
ସିନ୍ଧୋଃ ପାରେ ଅପୁରୁଷମ୍

Digitized by srujanika@gmail.com

ତଦାରଭସ୍ୱ ଦୁର୍ହଣୋ ତେନ
ଗଛ ପରସ୍ତରମ୍ ।"

ଋଗ୍‌ବେଦୀୟ ଏହି ସୂକ୍ତ ବିଶେଷ ଭାବରେ ପ୍ରଣିଧେୟ । ଏହି ସୂକ୍ତଟି (ଋଗ୍‌ବେଦ ୧୧୨।୧୫୫) ପୁନର୍ବାର ଅଥର୍ବବେଦର ପୈପଲାଦ ସଂହିତାରେ ମଧ୍ୟ ଉଲ୍ଲିଖିତ ହୋଇଅଛି (ଅଥର୍ବବେଦ ୬।୮।୭୧) ।

ଏହି ଉଭୟବିଧ ସୂକ୍ତରୁ ହିଁ ଉତ୍କଳୀୟ ଶିଳ୍ପୀ, ପଣ୍ଡିତ ଏବଂ ମନ୍ଦିର ନିର୍ମାତା ରାଜବଂଶମାନଙ୍କ ମନରେ ଦାରୁମୂର୍ତ୍ତି ପ୍ରତିଷ୍ଠା ସମ୍ପର୍କରେ ଚିନ୍ତା, ଚେତନା ଏବଂ କଳ୍ପନାର ଉଦ୍ରେକ ହୋଇଥିବ । ଏହି ସୂକ୍ତକୁ ଛାଡ଼ିଦେଲେ ମଧ୍ୟ ଦାରୁ ଉପାସନାକୁ ସଙ୍କେତ କରୁଥିବା ଆହୁରି କେତୋଟି ସୂକ୍ତ ମଧ୍ୟ ଋଗ୍‌ବେଦରେ ପରିଲକ୍ଷିତ ହୁଏ । ଅନୁସନ୍ଧିତ୍ସୁ ଭକ୍ତ, ଋଷିଙ୍କ ମନରେ ଯେଉଁ ପ୍ରଶ୍ନବାଚୀ ଉଦୟ ହୋଇଛି ତାହା ରୂପାୟିତ ହୋଇଛି ଋଗ୍‌ବେଦୀୟ ୧୦ମ ମଣ୍ଡଳସ୍ଥ ୮୧ ଅଧ୍ୟାୟ ୪ର୍ଥ ସୂକ୍ତରେ (୧୦।୬।୮୧। ୪ ପୃ ୫୬୩)

କିଂ ସ୍ୱିଦ୍‌ବ ନଂ କ ଉ ସ ବୃକ୍ଷ ଆସ ଯତୋ ଦ୍ୟାବାପୃଥିବୀ ନିଷ୍ଟତକ୍ଷୁଃ ।
ମନୀଷିଣୋ ମନସା ପୃଚ୍ଛତେଦୁ ତଦ୍ୟଦଧ୍ୟ ତିଷ୍ଠଦ୍ ଭୁବନାନି ଧାରୟନ୍
ଇତ୍ୟାଦି ।

ଉପରୋକ୍ତ ସୂକ୍ତର ଭାଷ୍ୟରେ ସାୟଣାଚାର୍ଯ୍ୟ ଭାଷ୍ୟ କହିଛନ୍ତି— ପୂର୍ବସ୍ୟାମୁଚ୍ୟୁକ୍ତଂ ବୃହ୍ମୈବ ଭୂମ୍ୟାଦି କାରଣମିତି ତଦେବାନୟା ପ୍ରଶ୍ନକଥନ ବ୍ୟାଜେନୋଚ୍ୟତେ, ଲୋକେ ହି ପ୍ରୌଢ଼ଂ ପ୍ରାସାଦଂ ନିର୍ମିମଣଃ କସ୍ମିଂଶ୍ଚିତ୍ ପ୍ରୋଡ଼େ ବନେ କଂଚତ୍ ମହାନ୍ତଂ ବୃକ୍ଷଂ ଛିତ୍ୱା ତକ୍ଷଣାଦିନା ସ୍ତମ୍ଭାଦିକଂ ସଂପାଦୟନ୍ତି । ଇହନ୍ତୁ ପରମେଶ୍ୱର-ପ୍ରେରିତା ଜଗତ୍ ସ୍ରଷ୍ଟାରଃ ଯତଃ ଯସ୍ମାଦ୍ ବନାଦ୍ୟଂ ବୃକ୍ଷମାଦାୟ ଦ୍ୟାବାପୃଥିବୀ ନିଷ୍ଟତକ୍ଷୁଃ ତକ୍ଷଣେନ ଦ୍ୟାବାପୃଥିବ୍ୟୌ ନିଷ୍ପାଦିତବନ୍ତଃ । ତଦ୍‌ବନଂ କିଂ ସ୍ୱିତ୍ କିଂ ନାମ ସ୍ୟାତ୍ । ତଥା, କ ଉ ସ ବୃକ୍ଷ, ଆସ କସ୍ମାଦ୍‌ବଣୋ ମହାନ୍ ବୃକ୍ଷୋଽଭୂତ୍, ହେ ମନୀଷିଣଃ ମନସଃ ଈଶ୍ୱରାଃ ତଦୁଭୟଂ ମନସା ଜିଜ୍ଞାସା ଯୁକ୍ତେନ ପୃଚ୍ଛତେଦୁ ପୃଚ୍ଛତୈବ । କିଂ ଚ ଈଶ୍ୱରଃ ଭୁବନାଦି ଧାରୟାନ୍ ଯତ୍ ସ୍ଥାନମ୍ ଅଧ୍ୟତିଷ୍ଠତ୍ ତତ୍ ଅପି ପୃଚ୍ଛତ୍ । ଏତସ୍ୟ ସର୍ବସ୍ୟାପ୍ୟୁତ୍ତରଂ ବ୍ରହ୍ମଂ ସ ବୃକ୍ଷ ଆସୀତ୍ ଇତ୍ୟାଦିକ-ମୁତ୍ତରମ୍ ।

Digitized by srujanika@gmail.com

ସେହି ବନ କିଏ ବା ସେହି ବୃକ୍ଷ କିଏ, ଯାହା ସାହାଯ୍ୟରେ ଏହି ଆକାଶ ପୃଥିବୀ ତଥା ସାରା ବିଶ୍ୱ ବ୍ରହ୍ମାଣ୍ଡ ସୃଷ୍ଟି ହୋଇଅଛି ? କେଉଁ ସ୍ଥାନରେ ବସି ସେହି ଈଶ୍ୱର ଏ ସବୁକୁ ସୃଷ୍ଟି କରିଛନ୍ତି ? ଇତ୍ୟାଦି ଏ ସମସ୍ତ ପ୍ରଶ୍ନର ସମାଧାନ କରିବାକୁ ଯାଇ ସାୟଣାଚାର୍ଯ୍ୟ କହିଛନ୍ତି ଯେ, ବ୍ରହ୍ମାହିଁ ଏ ସମସ୍ତ ପ୍ରକାର ଉତ୍ତର ରୂପେ ସମ୍ଭାବିତ, ସ୍ୱିକୃତ ଓ ପ୍ରମାଣିତ । ଦାରୁ ଭାସୁଛି ଏବଂ ବ୍ରହ୍ମଦାରୁ ରୂପରେ ଏ ବିଶ୍ୱ ବ୍ରହ୍ମାଣ୍ଡର କର୍ତ୍ତା—ଏହି ଦୁଇବୈଦିକ ଧାରଣା ଦ୍ୱାରା ବିଶେଷ ଭାବରେ ଔତ୍କଳୀୟମାନେ ଯେ ଆକୃଷ୍ଟ ଓ ପ୍ରଭାବିତ ହୋଇଛନ୍ତି, ଏଥିରେ ଆଉ ସନ୍ଦେହ ନାହିଁ । ତେଣୁ କବି ସାରଳା ଦାସଙ୍କ ମତରେ କୃଷ୍ଣଙ୍କ ଦେହସ୍ଥି ସମୁଦ୍ରରେ ଭାସି ଭାସି ଆସି ବାଙ୍କି ମୁହାଣରେ ଦାରୁ-ସ୍ୱରୂପରେ ପ୍ରକଟିତ ହୋଇଅଛି । ଜଗନ୍ନାଥ ଦାସ ଦାରୁବ୍ରହ୍ମ ଗୀତାରେ ମଧ୍ୟ ସେହିକଥା ହିଁ କହିଛନ୍ତି । ବିଷ୍ଣୁ, ବ୍ରହ୍ମ, ନାରଦ, ସ୍କନ୍ଦ ଓ ଅନ୍ୟାନ୍ୟ ପୁରାଣରେ ଠିକ୍ ସେହି ଭାସମାନ ଦାରୁ ହିଁ ଜଗନ୍ନାଥଙ୍କ ମୂର୍ତ୍ତିର ଯେ ମୌଳିକ ଉପାଦାନ, ତାହାହିଁ ବର୍ଣ୍ଣିତ ହୋଇଅଛି । ସୁତରାଂ ପୁରୁଷୋତ୍ତମ କ୍ଷେତ୍ରସ୍ଥ ସକଳ ପ୍ରକାର ବିଧି ଯଥା: ଦାରୁ ଆନୟନ, ଦାରୁପୂଜା ଓ ଦାରୁପ୍ରତିଷ୍ଠା ପ୍ରଣାଳୀରେ ସେହି ବୈଦିକ ସ୍ମୃତିହିଁ ପ୍ରତିଷ୍ଠିତ । ତେଣୁ ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟର ୫୮ ପୃଷ୍ଠା ୧୮ ଅଧ୍ୟାୟରେ ମୂର୍ତ୍ତିନିର୍ମାଣ ଓ ଦାରୁସ୍ୱରୂପ ପାଇଁ ଏକ ବିଶେଷ ଅଧ୍ୟାୟ ସନ୍ନିବିଷ୍ଟ ହୋଇଅଛି ।

ଇନ୍ଦ୍ରଦ୍ୟୁମ୍ନ ସହସ୍ର ଅଶ୍ୱମେଧଯଜ୍ଞ କରିବାପରେ ଯେଉଁ ସ୍ୱପ୍ନ ଦେଖିଥିଲେ ସେଥିରେ ସ୍ୱୟଂ ଭଗବାନ କହିଥିଲେ, "ନୀଳାଚଳର ସମୁଦ୍ର ଦକ୍ଷିଣ ତଟସ୍ଥ ବିଲେଶ୍ୱରଙ୍କ ନିକଟରେ ଏକ ବୃକ୍ଷ ଦେଖିବ । ସେହି ବୃକ୍ଷରେ ମୋର ମୂର୍ତ୍ତି ଗଢ଼ାହେବ ।" ଠିକ୍ ଇନ୍ଦ୍ରଦ୍ୟୁମ୍ନଙ୍କ ସ୍ୱପ୍ନ ଦଶଦିନ ମଧ୍ୟରେ ସଫଳ ହେଲା । ବ୍ରାହ୍ମଣମାନେ ସେ ବୃକ୍ଷକୁ ଦେଖି ରାଜାଙ୍କୁ ଜଣାଇଲେ—

"ସେ ବୃକ୍ଷଟି ଉଦୟମାନ ସୂର୍ଯ୍ୟ କିରଣ ପରି ତେଜୋମୟାନ । ସୁଗନ୍ଧରେ ତଟଭୂମିକୁ ସୁଗନ୍ଧିତ କରୁଅଛି । ସେ ବୃକ୍ଷ ଶ୍ୱେତ ଦ୍ୱୀପରେ ଥିବା ବିଶ୍ୱମୂର୍ତ୍ତି ବିଷ୍ଣୁଙ୍କର ଅଙ୍ଗ ସ୍ଖଳିତ ଲୋମ, ତରୁରୂପରେ ଅବତୀର୍ଣ୍ଣ ହୋଇଅଛି । ଏ ବୃକ୍ଷକୁ ଦର୍ଶନ କରିବାକୁ କେହି ସମର୍ଥ ନୁହନ୍ତି ।"

ଇନ୍ଦ୍ରଦ୍ୟୁମ୍ନ ଏ କଥା ଶୁଣି ଆନନ୍ଦିତ ହୋଇଥିଲେ ଓ ତତ୍କ୍ଷଣାତ୍ ସେ ବୃକ୍ଷ ଦର୍ଶନ କଲେ ।

Digitized by srujanika@gmail.com

"ତଥ ଦଦର୍ଶ ତଂ ବୃକ୍ଷଂ
ଚତୁଃଶାଖଂ ଚତୁର୍ଭୁଜଂ ।"

ସେ ବୃକ୍ଷକୁ ବ୍ରାହ୍ମଣମାନଙ୍କ ଦ୍ୱାରା ଶଂଖ, କାହାଳ, ମୃଦଙ୍ଗ ଢକ୍କାଦି ଦିବ୍ୟ ବାଦ୍ୟ ପୂର୍ବକ ମନ୍ତ୍ରସ୍ତୋତ୍ରାଦି ପାଠକରାଇ ଅଣାଇଥିଲେ । ସେ ଦାରୁ ଗୁପ୍ତ ଗୃହରେ ରଖାଇ ଦେବବର୍ଦ୍ଧକୀ ଦ୍ୱାରା ନିର୍ମାଣ କରାଇଥିଲେ । ବର୍ଦ୍ଧକୀ ଗୁପ୍ତ ଗୃହରେ ରହି ପନ୍ଦର ଦିନ ମଧ୍ୟରେ ମୂର୍ତ୍ତି ନିର୍ମାଣ ସାରିଥିଲେ । ନିର୍ମାଣ ସମୟରେ ଗୃହର ବହିର୍ଦ୍ଦେଶରେ ବାଦ୍ୟାଦି ଶବ୍ଦ କରାଯାଇଥିଲା । କାରଣ ମୂର୍ତ୍ତିଗଠନକାଳୀନ ଶବ୍ଦ ଶୁଣିଲେ ଶ୍ରୋତୃବର୍ଗର ଅମଙ୍ଗଳ ଘଟେ— ଯଥା :—

"ଶୃଣୋତି ଘଟନାଶବ୍ଦୋ
ବାଧିର୍ଯ୍ୟାନ୍ଧିତ୍ୱଦାୟକଃ
ନରକେ ବସତଂ ଚୈବ
କୁର୍ଯ୍ୟାତ୍ ସନ୍ତାନ ନାଶକମ୍
ନାନ୍ତଃ ପ୍ରବେଶନଂ କୁର୍ଯ୍ୟାତ୍
ନ ପଶ୍ୟେଚ୍ଚ କଦାଚନ
ନିର୍ଦ୍ଦିଷ୍ଟାଦନ୍ୟ ପଶ୍ୟେଚ୍ଛେଦ୍—
ରାଜ୍ଞୋରାଷ୍ଟ୍ରସ୍ୟଚ ବହ୍ନିଃ
ଦ୍ରଷ୍ଟୁଃସ୍ତାପି ମହାଭ୍ରାନ୍ତ
ରନ୍ଧତାଂ ଚକ୍ଷୁଶୋର୍ଦ୍ଧ୍ୱଜୋ
ତସ୍ମାନ୍ନାବେଶଣଂ କୁର୍ଯ୍ୟାଂ
ଯାବତ୍ ପ୍ରତିମାନିର୍ମିତା ॥"

ପ୍ରକାଶ ଥାଉ କି, କୋଇଲି ବୈକୁଣ୍ଠରେ ନବକଳେବର ନିର୍ମାଣ ସମୟରେ ନିର୍ମାଣକାଳୀନ ଶବ୍ଦ କେହି ଯେପରି ଶୁଣିପାରିବେ ନାହିଁ, ତତ୍‌ପ୍ରତି କର୍ତ୍ତୃପକ୍ଷ ବିଶେଷ ସାବଧାନତା ଅବଲମ୍ବନ କରିଥାନ୍ତି । ବାସ୍ତବରେ ସେ ସ୍ଥାନଟି ଅହରହ ବିବିଧ ବାଦ୍ୟଧ୍ୱନିରେ ମୁଖରିତ ହେଉଥାଏ । ୧୦୮ ଜଣ ବ୍ରାହ୍ମଣ ବରଣ ହୋଇଥାନ୍ତି ଏବଂ ଦାରୁ ପ୍ରତିଷ୍ଠା ବିଧି ଠିକ୍ ବୈଦିକ ରୀତିରେ ସମାହିତ ହୁଏ । ବିଭିନ୍ନ ଆଗମୋକ୍ତ ପ୍ରଥା ମଧ୍ୟ ଏଠାରେ ଆଚରିତ ହୁଏ । ପୂର୍ବରୁ କୁହାଯାଇଛି ଯେ, ଏ କ୍ଷେତ୍ରରେ ସକଳ ପ୍ରକାର କାର୍ଯ୍ୟ ବିଧି ବ୍ୟବସ୍ଥାରେ ଶାସ୍ତ୍ରୀୟ ପରମ୍ପରା ଅନୁସୃତ ।

Digitized by srujanika@gmail.com

ଦାରୁ ସନ୍ଧାନ, ଦାରୁମନୋନୟନ, ଦାରୁଛେଦନ, ଦାରୁ ଆନୟନ ଓ ଦାରୁ ପ୍ରତିଷ୍ଠା ପ୍ରଭୃତି ସମସ୍ତ କାର୍ଯ୍ୟରେ କପରି ଶାସ୍ତ୍ରୀୟ ବିଧି ସୁରକ୍ଷିତ ହୁଏ, ତାହାହିଁ ଆଲୋଚ୍ୟ । ଯାଦୃଚ୍ଛିକ କୌଣସି କାର୍ଯ୍ୟ ଏଠାରେ ଅନୁଷ୍ଠିତ ହୁଏ-ନାହିଁ । ସେଇଥିପାଇଁ ଏ ଧାମ ବା କ୍ଷେତ୍ରର ମହାତ୍ମ୍ୟ ଏତେ ପବିତ୍ର, ଏତେ ପ୍ରସିଦ୍ଧ । ଏବର୍ଷ ନବକଳେବର ନିମିତ୍ତ ବନଯାଗ ବିଧିରେ ଦାରୁ ଆନୟନ କ୍ରିୟା ସମ୍ପନ୍ନ ହୋଇଅଛି । 'ଭବିଷ୍ୟପୁରାଣ' ଓ 'ବୈଖାନସ ଆଗମ'ରେ ବନ ପ୍ରବେଶପୂର୍ବକ କପରି ଏବଂ କେଉଁ ଉପଯୁକ୍ତ ଦାରୁ ସଂଗୃହୀତ ହେବ, ସେ ସଂପର୍କରେ ବିଶେଷ ନୀତି ଓ ରୀତି ପ୍ରଦତ୍ତ ହୋଇଅଛି ।

"କର୍ତ୍ତାନୁକୂଲେ ଦିବସେ, ସଂବତ୍ସର ବିଶୋଧିତେ
ଶୁଭୈ ନିମିତ୍ତୈଃ ଶକୁନୈଃ, ସ୍ଥପତିନୈଚ ବନଂ ବିଶେତ୍,
କ୍ଷୀରଶୋବର୍ଜିତାଃ ସର୍ବେ, ଦୁର୍ବାଳାସ୍ତେ ସ୍ୱଭାବତଃ,
ଚତୁଷ୍ପଥେଷୁ ନଗ୍ରାହ୍ୟା, ଯେଚ ପ୍ରବନ୍ଧକ ବୃକ୍ଷକାଃ ଦେବାୟତନ ସୁ
ଯେ ତଥା ବଲ୍ମୀକ ସଂଭବାଃ, ଉଦ୍ଗୀର୍ଣ୍ଣୋ ଦେବତା ଯେଷୁ
ଚୈତ୍ୟ ବୃକ୍ଷାଶ୍ଚଯେ ସ୍ମୃତା, ଶ୍ମଶାନ ଭୂମିକା ଯେଚ
ପକ୍ଷିଣାଂ ନିଳୟାଶ୍ଚ ଯେ
ସକୋଟରାଶ୍ଚ ଯେ ବୃକ୍ଷାଃ, ଶୁଷ୍କାଗ୍ରା ଯେଚ ପାଦପାଃ
ଶସ୍ତ୍ରେଣ ନିହତା ଯେ ଚ, କୁଂଜରାଶ୍ଚ ସ୍ତ୍ରାଥାକୃତାଃ
ସାମାଦ୍ୟାଃ ସରୁଜୋଽଧରୁ, ବ୍ୟାଧିତଶ୍ଚ ତଥୈବଚ
ଅକାଳେ ପୁଷ୍ପିତା ଯେ ଚ, କାଳେ ଚେତ ବିବର୍ଜିତାଃ
ଶୀର୍ଣ୍ଣପର୍ଣ୍ଣାଶ୍ଚ ତରବୋ, ରକ୍ଷୋଧ୍ୱାଂକ୍ଷ ନିଷେବିତାଃ
ଏକଶାଖା ଦ୍ୱିଶାଖାଶ୍ଚ ବହୁଶାଖା ତଥାଧମାଃ ।

ମଧୁକୋ ଦେବଦ୍ୱାରୁଶ୍ଚ
ରୂକ୍ଷରାଜଶ୍ଚ ଚନ୍ଦନଃ
ବିଲ୍ୱା ସ୍ତୁମ୍ରାତକଶ୍ଚୈବ
ଖଦିରଶ୍ଚୋଥାଞ୍ଜନସ୍ତଥା
ନିମ୍ବଃ ଶ୍ରୀପର୍ଣ୍ଣି ବୃକ୍ଷଶ୍ଚ
ପନସଃ ସରକୋର୍ଜୁନଃ

Digitized by srujanika@gmail.com

ରକ୍ତଚନ୍ଦନ ପର୍ଯ୍ୟାନ୍ତାଃ
ଶ୍ରେଷ୍ଠାଃ ସ୍ୟୁଃ ପ୍ରତିମାଦ୍ରୁମା ।
ବର୍ଣ୍ଣାନାମାନୁପୂର୍ବ୍ୟେଣ
ଦ୍ୱୌ ଦ୍ୱୌ ବୃକ୍ଷୌ ପ୍ରକୀର୍ତ୍ତିତୌ
ନିମ୍ବାଦ୍ୟାଃ ସର୍ବବର୍ଣ୍ଣାନାଂ
ବୃକ୍ଷାଃ ସାଧାରଣାଃ ସ୍ମୃତା ।"
ଭବିଷ୍ୟପୁରାଣ— ୧୩୧, ଅଧ୍ୟାୟ ୪-୧୬ ଶ୍ଳୋକ

ଅର୍ଥାତ୍ ଦାରୁ ସଂଗ୍ରହ ନିମିତ୍ତ ଶୁଭଦିନରେ ଅନୁକୂଳ କରି ବନକୁ ଯାତ୍ରା କରିବେ ।

ଯେଉଁ ବୃକ୍ଷ ଦୁର୍ବଳ ଓ କ୍ଷୀରଯୁକ୍ତ ନୁହେଁ, ତାହା ବର୍ଜନ କରିବାକୁ ହେବ । ରାସ୍ତା ଉପରେ ବର୍ଦ୍ଧିତ, କ୍ଷୁଦ୍ର, ମଳରେ ଜାତ, ଉଇହୁଙ୍କାରେ ବା ନିକଟରେ ଜାତ, ଯେଉଁ ବୃକ୍ଷରେ ଦେବମୂର୍ତ୍ତି ଖୋଦିତ ହୋଇଥାଏ, ଜୈନ ବା ବୌଦ୍ଧ ମଠର ଅଧିକାରଭୁକ୍ତ, ଶ୍ମଶାନ ଜାତ, ପକ୍ଷୀନୀଡ଼ଯୁକ୍ତ, କୋଟରଯୁକ୍ତ, ଶୁଷ୍କାଗ୍ର, ଶସ୍ତ୍ରାଘାତ, ଛିଦ୍ରଯୁକ୍ତ, ହସ୍ତୀଦ୍ୱାରା କ୍ଷତବିକ୍ଷତ, ଭଗ୍ନଶାଖ ବା ରୁଗ୍‌ଣ ବୃକ୍ଷ, ଅଦିନ ଜାତ ଅର୍ଥାତ୍ ଯେଉଁ ବୃକ୍ଷ ଯଥା ଋତୁରେ ଜାତ ନୁହେଁ, ଶୁଷ୍କପତ୍ରଯୁକ୍ତ, ରାକ୍ଷସ ବାସସ୍ଥଳୀ, ଏକଶାଖାଯୁକ୍ତ, ବହୁ ଶାଖାଯୁକ୍ତ ବା ଦ୍ୱିଶାଖାଯୁକ୍ତ, ବୃକ୍ଷଗୁଡ଼ିକ ଅଧମ ବୃକ୍ଷ, ଅର୍ଥାତ୍ ଉକ୍ତ ବୃକ୍ଷଗୁଡ଼ିକ ବର୍ଜନ କରିବେ ।

ମଧୂକ, ଦେବଦାରୁ, ବଟ, ଅଶ୍ୱତ୍ଥ, ଚନ୍ଦନ, ବିଲ୍ୱ, ଆମ୍ର, ଖଦିର, ଅର୍ଜୁନ, ନିମ୍ବ, ପନସ, ସରଳ ରକ୍ତଚନ୍ଦନ—ଏହି ବୃକ୍ଷଗୁଡ଼ିକ ପ୍ରତିମା ନିର୍ମାଣ ପାଇଁ ଉତ୍କୃଷ୍ଟ । ବ୍ରାହ୍ମଣାଦି ବର୍ଣ୍ଣଭେଦରେ ବୃକ୍ଷ ନିର୍ବାଚନର ପାର୍ଥକ୍ୟ ଦେଖାଯାଏ । ନିମ୍ବାଦି ବୃକ୍ଷ ସମସ୍ତ ବର୍ଣ୍ଣ ପାଇଁ ଉତ୍କୃଷ୍ଟ । ତେଣୁ ନିମ୍ବ ବୃକ୍ଷରେ ଜଗନ୍ନାଥଙ୍କ ମୂର୍ତ୍ତି ନିର୍ମିତ ହୁଏ । ପୁନଶ୍ଚ ଏକମାତ୍ର ନିମ୍ବ, ଯେ କି ମଳୟ ସ୍ପର୍ଶରେ ଚନ୍ଦନ ହୋଇଯାଏ ।

ପୁନଶ୍ଚ ବୈଖାନସ ଆଗମରେ ମଧ୍ୟ ଏହି ଦାରୁର ଆନୟନ ବିଧି ଏବଂ ଦାରୁର ଛେଦନ ସମ୍ପର୍କରେ କୁହାଯାଇଛି—

ବୃକ୍ଷାସ୍ତ୍ରିବିଧାଃ । ସ୍ତ୍ରୀ-ପୁଂ-ନପୁଂସକାଃ । ମୂଳାଗ୍ରାଦାର୍ଜ୍ଜବଂ ସୁବୃତଂ । ଶାଖାଳକଂ ପୁଂ ବୃକ୍ଷମ୍ । ସ୍ଥୁଳମୂଳ କୃଶାଗ୍ରଂ । ଯନ୍ମହୀରୁହ ତତ୍

Digitized by srujanika@gmail.com

ସ୍ତ୍ରୀଯୂଃ । ସ୍ଥୂଳାଗ୍ର କୃଶମୂଳଂ ବୃକ୍ଷମ୍ ତନ୍ନପୁଂସକଂ ଗ୍ରାହ୍ୟମ୍ । ସ୍ତ୍ରୀ ବୃକ୍ଷେଣ ସ୍ତ୍ରୀବେରଂ, ପୁଂ ବୃକ୍ଷେଣ ପୁଂ ବେରଂ କାରୟେତ୍ ।

## ବନ ପ୍ରବେଶ ରୀତି

ପୂର୍ବପକ୍ଷେ କର୍ତ୍ତାନୁକୂଳେ ଦେବଂ ସମାହୃତ୍ୟାଚାର୍ଯ୍ୟ ଯଜମାନଶ୍ଚ ସାଧନୈର୍ହୋମ ସମ୍ଭାରୈଃ ଶିଳ୍ପିଭିଃ ସାର୍ଦ୍ଧଂ ପ୍ରାଙ୍ମୁଖଂ ବା ବନଂ ଗଚ୍ଛେତ୍ । ଶୁଭେ ମୁହୂର୍ତ୍ତେ ତଦ୍‌ବୃକ୍ଷ ମାସ୍ୟାଦ୍ୟ ପରିତଃ ମୃତ ଗୁଲ୍ମାଦି ସଂଶୋଧ ତସ୍ମିନ୍ ଦେଶେ ବସନ୍ତୋଦ୍‌ବ ସ୍ୟେତେତି ଇତି ଉକ୍ତ୍ୱା ପଶ୍ଚାତ୍ ଶାନ୍ତିଂ ବାଚୟିତ୍ୱା ବୃକ୍ଷସ୍ୟୋତ୍ତରେ ପାର୍ଶ୍ୱେ ବାସ୍ତୁ ହୋମଂ କୃତ୍ୱା ବୃକ୍ଷ ମୂଳେ ପର୍ଯ୍ୟାଗ୍ନି କୃତ୍ୱା ପଞ୍ଚଗବ୍ୟୈଃ ସମଭ୍ୟୁକ୍ଷ୍ୟ ପୁଣ୍ୟାହଂ ବାଚୟିତ୍ୱା ଚରୁଂ ପକ୍ତ୍ୱା । × × ×

ଦ୍ରୁମଂ ସଂଗୃହ୍ୟ ଶ୍ରୀ ଭୂମ୍ୟାଦୀନାଂ ତତ୍ ମନ୍ତ୍ରେଣ ସଂଗୃହ୍ୟ ପରଶୁ ମଦାୟ ବିଷ୍ଣୁ ଗାୟତ୍ରୀଂ ସୋମଂ ରାଜାନ ମିତି ଜପେତ୍ ।

× × ×

ଯଥୋଚିତଂ ଛିତ୍ୱା ତତ୍ ବୃକ୍ଷଂ ଶକଟେ ସମାରୋପ୍ୟ ନରୈ-ର୍ବାହୟିତ୍ୱାଲୟମା ନୟିତ୍ୱା ବିଶ୍ୱକର୍ମା ମଣ୍ଡପେ ସଂସ୍ଥାପ୍ୟ ଶୋଷୟିତ୍ୱା ମୂଳାତ୍ ପ୍ରଭୃତମାଦ୍ୟଂ ବିଧାନୋତ୍ତରେଣ କାରୟେତ୍ ।

ଅର୍ଥାତ୍ ବୃକ୍ଷ ନିର୍ବନ୍ଧ-ସ୍ତ୍ରୀ, ପୁରୁଷ ଓ ନପୁଂସକ ମୂଳଠାରୁ ଅଗ ପର୍ଯ୍ୟନ୍ତ ସଳଖ, ସୁଗୋଲ ଏବଂ ଅନେକ ଶାଖା ବିଶିଷ୍ଟ ବୃକ୍ଷ ପୁରୁଷ ।

ମୂଳଭାଗ ସ୍ଥୂଳାକାର ଏବଂ ଅଗ୍ରଭାଗ କୃଶ ହେଲେ ତାହା ସ୍ତ୍ରୀ ବୃକ୍ଷ । ଅଗ୍ରଭାଗ ସ୍ଥୂଳ ଏବଂ ମୂଳ କୃଶ ହେଲେ ତାକୁ ନପୁଂସକ ବୃକ୍ଷ ବୋଲି ଧରାଯାଏ ।

ସ୍ତ୍ରୀ-ବୃକ୍ଷଦ୍ୱାରା ଦେବୀ ବିଗ୍ରହ ଏବଂ ପୁଂ ବୃକ୍ଷଦ୍ୱାରା ଦେବ-ବିଗ୍ରହ ନିର୍ମାଣ କରିବାକୁ ହେବ ।

ଦାରୁ ସଂଗ୍ରହ ନିମିତ୍ତ ଆଚାର୍ଯ୍ୟ, ଯଜମାନ ଓ ଶିଳ୍ପୀ ହୋମ ନିମିତ୍ତ ଯାବତୀୟ ଉପକରଣ ସହ ପୂର୍ବପକ୍ଷରେ ଅନୁକୂଳ କରି ପୂର୍ବମୁଖୀ ହୋଇ ବନକୁ ଯାତ୍ରା କରିବେ । ଶୁଭ ମୁହୂର୍ତ୍ତରେ ଉକ୍ତ ଲକ୍ଷଣଯୁକ୍ତ ବୃକ୍ଷ ଦେଖିଲେ ତାହାର ଚତୁଃପାର୍ଶ୍ୱସ୍ଥ ମୃତ ଲତାଗୁଳ୍ମାଦି ପରିଷ୍କାର କରି ସେହି ସ୍ଥାନରେ 'ବସନ୍ତୋଦ୍‌ବାସସ୍ୟ' ଏହି ମନ୍ତ୍ର ଏବଂ ଶାନ୍ତି ପାଠ କରି ବୃକ୍ଷର ଉତ୍ତର ପାର୍ଶ୍ୱରେ ବାସ୍ତୁହୋମ କରି ବୃକ୍ଷ ମୂଳରେ ପର୍ଯ୍ୟାଗ୍ନି ଓ ପଞ୍ଚଗବ୍ୟ କରି

Digitized by srujanika@gmail.com

ପୁଣ୍ୟାହବାଚନ ସହ ଚରୁପାକ କରିବେ । ତତ୍ପରେ ତିଳପୂର୍ଣ୍ଣ, ମୁଗନିଷ୍ପକ (ଖିରି) ବୃକ୍ଷମୂଳ ଏବଂ ଚତସ୍ର ବନ ମଧ୍ୟରେ ଗୁଡ଼ଆଡ଼େ ବିକୀର୍ଣ୍ଣ କରି ପ୍ରଥମେ ଅଗ୍ନିଦେବତାଙ୍କୁ ବନସ୍ପତି ଦେବତା-ଭୂତ ଯକ୍ଷ ପିଶାଚ-ନାଗ, ବିଦ୍ୟାଧର ଏବଂ ଅଷ୍ଟାଦଶ ଗଣଦେବତାଙ୍କୁ ଜଳ, ପୁଷ୍ପ ଅର୍ପଣ କରି 'ଅସ୍ତୁତୃପ୍ତି' ଏହା ଉଚ୍ଚାରଣ କରିବେ । ତତ୍ପରେ ଆଚାର୍ଯ୍ୟଙ୍କୁ ପୂଜା କରି ପୂର୍ବମୁଖୀ ହୋଇ 'ଇଦଂ ବିଷ୍ଣୁଂ' ଏହା କହି ହସ୍ତରେ ବୃକ୍ଷ ସ୍ପର୍ଶ କରି ଶ୍ରୀ ଭୂମ୍ୟାଦିଙ୍କୁ ତତ୍ତତ୍ ମନ୍ତ୍ରରେ ଆହ୍ୱାନ କରିବେ । ପରେ କୁଠାର ଗ୍ରହଣ କରି ବିଷ୍ଣୁ ଗାୟତ୍ରୀ ଏବଂ 'ସୋମ ରାଜାନଂ' ଏହି ମନ୍ତ୍ର ଜପ କରିବେ ।

ପୂର୍ବାଦି ଚତୁର୍ଦ୍ଦିଗ ଛେଦନ ପରେ ବର୍ଦ୍ଧକୀଙ୍କୁ ଆହ୍ୱାନ ଓ ପୂଜା କରି ବୃକ୍ଷର ସର୍ବାବିଗ ଛେଦନ କରାଇ ସେହି ବୃକ୍ଷକୁ ଶକଟରେ ଆରୋପଣ କରି ମନୁଷ୍ୟମାନଙ୍କଦ୍ୱାରା ବହନ କରାଇ ଆଣିବେ । ତତ୍ପରେ ତାହା ବିଶ୍ୱକର୍ମା ମଣ୍ଡପରେ ରଖି ଶୁଆଇ ମୂଳଭାଗକୁ ଯଥାବିଧି ପ୍ରତିମା ଗଠନ ଆରମ୍ଭ କରିବେ ।

କହିବା ବାହୁଲ୍ୟ ଯେ, ଏ ବର୍ଷ ନବକଳେବର ନିମିତ୍ତ ଯେଉଁ ଦାରୁ ଅନ୍ୱେଷଣ କରାଯାଇଥିଲା ଏବଂ ଯେଉଁ ବିଧିରେ ଦାରୁ ସନ୍ଧାନ, ଦାରୁ ପୂଜା, ଦାରୁଛେଦନ, ଦାରୁ ଆନୟନ କରାଯାଇଛି ତାହା ଶାସ୍ତ୍ର ସମର୍ଥିତ ।

ଏହିପରି ଦାରୁମାନଙ୍କୁ ଆଣି କୋଇଲି ବୈକୁଣ୍ଠସ୍ଥ ନବନିର୍ମିତ ଦାରୁ ଗୃହରେ ରଖାଯାଏ । ପରେ ଯଜ୍ଞମଣ୍ଡପ ତିଆରି କରି ସେଥିରେ ଯଜ୍ଞକ୍ରିୟା ସମାପନ ହୁଏ । ଏ କାର୍ଯ୍ୟରେ ସୁଦର୍ଶନଙ୍କ ପୂଜା ହିଁ ଏଠାରେ ସମସ୍ତ କାର୍ଯ୍ୟର ମୂଳରେ ନ୍ୟସ୍ତ—ନୃସିଂହ ମନ୍ତ୍ରରେ ଓ ନ୍ୟାସରେ ଏବଂ ବୈଷ୍ଣବ ଓ ତନ୍ତ୍ରାଗମ ଅନୁଯାୟୀ ସମସ୍ତ ପ୍ରତିଷ୍ଠାବିଧି ଏଠାରେ ଅନୁଷ୍ଠିତ ହୁଏ । ଏହା ଅନନ୍ୟ ସାଧାରଣ । କୌଣସି କ୍ଷେତ୍ରରେ ଦାରୁ ପ୍ରତିଷ୍ଠା ଏପରି ବିଧିରେ ସମାହିତ ହୁଏନା । ଏହା ହିଁ ଏ କ୍ଷେତ୍ରରେ ବୈଶିଷ୍ଟ୍ୟ ।

Digitized by srujanika@gmail.com

# ଜାତୀୟ ସାହିତ୍ୟ ଉନ୍ନତିରେ ବିଶ୍ୱ-ବିଦ୍ୟାଳୟର କର୍ତ୍ତବ୍ୟ

'ଜାତୀୟ ସାହିତ୍ୟ ଉନ୍ନତିରେ ବିଶ୍ୱବିଦ୍ୟାଳୟର କର୍ତ୍ତବ୍ୟ' ପ୍ରବନ୍ଧଟିର ସମ୍ୟକ୍ ଆଲୋଚନା କରିବାକୁ ଗଲେ, ସାହିତ୍ୟ ଓ ଜାତୀୟ ସାହିତ୍ୟର ସ୍ୱରୂପ ନିର୍ଣ୍ଣୟ କରିବା ଅପରିହାର୍ଯ୍ୟ ହୋଇପଡ଼େ। କାରଣ ସାହିତ୍ୟ ସମ୍ବନ୍ଧରେ ଗୋଟାଏ ବ୍ୟାପକ ଧାରଣା ନ ଆସିଲେ, କୌଣସି ସମାଲୋଚନା ତାର ଉନ୍ନତିକରଣରେ ନାନାବିଧ ସୁଚିନ୍ତିତ କର୍ମପନ୍ଥା ଉଦ୍ଭାବନ କାର୍ଯ୍ୟରେ ସଫଳକାମ ହୋଇପାରିବ ନାହିଁ । 'ସାହିତ୍ୟ' ଶବ୍ଦଟି ସଂସ୍କୃତରୁ ଓଡ଼ିଆକୁ ଆସିଛି । ସୁତରାଂ ଏହି ଶବ୍ଦଟିର ଆଲୋଚନା ପୂର୍ବରୁ ସଂସ୍କୃତ ଭାଷାରେ ଏହାର ଅର୍ଥ ତାହାର ତାତ୍ପର୍ଯ୍ୟ କିପରି ଭାବରେ ଚଳି ଆସିଛି, ତାହା ଅନୁଶୀଳନ କରିବା ବିଧେୟ । କେହି କେହି ସମାଲୋଚକ କହିଛନ୍ତି ଯେ, ସଂସ୍କୃତ ଭାଷାରେ ଏହି ସାହିତ୍ୟ ଶବ୍ଦଟି ଅପେକ୍ଷାକୃତ ଆଧୁନିକ । କାରଣ, ଅତି ପ୍ରାଚୀନ ଗ୍ରନ୍ଥରେ ଏହାର ଉଲ୍ଲେଖ ମିଳେ ନାହିଁ । ଏହାର ମୂଳ ଅର୍ଥ ଏକ ସଙ୍ଗରେ ବା ଏକତ୍ର ରହିବା । ଏହି ମୂଳ ଅର୍ଥାନୁଯାୟୀ 'ସହ' ବା ସହିତ ଶବ୍ଦରୁ ସାହିତ୍ୟ ଶବ୍ଦ ନିଷ୍ପନ୍ନ ହୋଇଛି । ଏହି କଥା କହିବା ଯୁକ୍ତିଯୁକ୍ତ । ଯୋଡ଼ିଏ ପଦାର୍ଥ ଏକ ସଙ୍ଗରେ ରହିଛି । ଏହି କଥା ବୁଝାଇବାକୁ ଯାଇ ଆମେ କହିପାରୁ ଯେ, ସେହି ଯୋଡ଼ିଏ ପଦାର୍ଥର ସାହିତ୍ୟ ଅଛି । କବୀନ୍ଦ୍ର ରବୀନ୍ଦ୍ରନାଥ 'ସାହିତ୍ୟ' ଶବ୍ଦରୁ ବ୍ୟୁତ୍ପତ୍ତିଗତ ଅର୍ଥ ଧରି, ସାହିତ୍ୟ ଶବ୍ଦର ମର୍ମ ନିର୍ଣ୍ଣୟ କରିବାକୁ ଯାଇ କହିଛନ୍ତି ଯେ, 'ସହିତ' ଶବ୍ଦରୁ ସାହିତ୍ୟ ଶବ୍ଦ ମଧ୍ୟରେ ଗୋଟାଏ ମିଳନର ଭାବ ଦେଖିବାକୁ ମିଳେ । ସେ ମିଳନ ଯେ କେବଳ ଭାବ ସହିତ ଭାବର, ଭାଷା ସହିତ ଭାଷାର, ଗ୍ରନ୍ଥ ସହିତ ଗ୍ରନ୍ଥର ମିଳନ ତାହା ନୁହେଁ, ମନୁଷ୍ୟ ସହିତ ମନୁଷ୍ୟର, ଅତୀତ ସହିତ ବର୍ତ୍ତମାନର, ଦୂର ସହିତ

Digitized by srujanika@gmail.com

ନିକଟରେ ଅନ୍ତରଙ୍ଗ ଯୋଗ ସାଧନ ସାହିତ୍ୟ ବ୍ୟତୀତ ଅନ୍ୟ କୌଣସି ଦ୍ୱାରା ସମ୍ଭବପର ନୁହେ । ଯେଉଁ ଦେଶରେ ସାହିତ୍ୟର ଅଭାବ, ସେ ଦେଶର ଲୋକେ ପରସ୍ପରଠାରୁ ସଜୀବ ବନ୍ଧନରେ ସଂଯୁକ୍ତ ନୁହନ୍ତି—ସେମାନେ ବିଚ୍ଛିନ୍ନ । ପୂର୍ବପୁରୁଷମାନଙ୍କ ସହିତ ମଧ୍ୟ ସେମାନଙ୍କର ଜୀବନ୍ତ ଯୋଗ ନାହିଁ; କେବଳ ପୁରାପର ପ୍ରଚଳିତ ଜଡ଼ପ୍ରଥା ବନ୍ଧନ ଦ୍ୱାରା ଯେଉଁ ଯୋଗ ସାଧନ ହୁଏ, ତାହା ଯୋଗ ବା ମିଳନ ନୁହେଁ—ତାହା ବନ୍ଧନ ମାତ୍ର । ସାହିତ୍ୟର ଧାରାବାହିକତା ବ୍ୟତୀତ ପୂର୍ବପୁରୁଷମାନଙ୍କ ସହିତ ସଚେତନ ମାନସିକ ଯୋଗ କଦାପି ରକ୍ଷା କରି ହୁଏ ନାହିଁ ।

କବି ସାର୍ବଭୌମ ରବୀନ୍ଦ୍ରନାଥଙ୍କ ଏହି ଉକ୍ତିରେ କିପରି ଗଭୀର ଅନ୍ତର୍ଦୃଷ୍ଟି ଅଛି, ତାହା ପ୍ରତ୍ୟେକ ସମାଲୋଚକ ହୃଦୟଙ୍ଗମ କରି ପାରୁଥିବେ । ବାସ୍ତବିକ ସହିତତ୍ୱ ହିଁ ସାହିତ୍ୟର ପ୍ରଧାନ ଉପାଦାନ । ସେ ବିଚ୍ଛିନ୍ନତାକୁ ଏକତ୍ରିତ କରିଥାଏ । ପ୍ରତ୍ୟେକ ପଦାର୍ଥ ମଧ୍ୟରେ ସେ ଗୋଟାଏ ଐକ୍ୟସାଧନ କରେ । ଏହି ଐକ୍ୟସାଧନ ଆମ୍ଭମାନଙ୍କ ହୃଦୟ ରାଜ୍ୟରେ ଅନାବିଳ ଆନନ୍ଦ ସୃଷ୍ଟି କରେ । ତେଣୁ ସାହିତ୍ୟରେ ଆମେ ଯେଉଁ ଆନନ୍ଦ ବା ଐଶ୍ୱର୍ଯ୍ୟ ପାଉଁ, ତାହା ଅନ୍ୟତ୍ର ଦୁର୍ଲ୍ଲଭ । ଯେଉଁଠାରେ ଐକ୍ୟ ନାହିଁ—ଯେଉଁଠାରେ କେବଳ ବିଚ୍ଛେଦ ଓ ବିଚ୍ଛିନ୍ନତା ନିଜର ଦୃଢ଼ ଆସନ ଜମେଇ ବସେ, ସେଠାରେ ନିରାନନ୍ଦର ମାତ୍ରା ବେଶୀ । ସେଠାରେ ଜୀବନର ପ୍ରବାହ ନାହିଁ; ତେଣୁ ଜୀବନ ସହିତ ସାହିତ୍ୟର ସମ୍ବନ୍ଧ ଘନିଷ୍ଠ । ଜୀବନକୁ ନେଇ ସାହିତ୍ୟ କେତେ ପ୍ରକାର କାରବାର କରେ—ଜୀବନର ରହସ୍ୟ ଉଦ୍‌ଘାଟନ କରି ପାଠକ ଗୋଷ୍ଠୀର ମନୋରାଜ୍ୟରେ ଗୋଟାଏ ଗଭୀର ରେଖାପାତ କରିଥାଏ । ସେଥିଯୋଗୁଁ ଜଗତରେ ସାହିତ୍ୟ ଦରବାରରେ ଜନତ-ସମାଗମ ବେଶୀ । କାରଣ ସେଠାରେ ଜୀବନର ସନ୍ଧାନ ମିଳେ, ଗୋଟାଏ ସୃଷ୍ଟିର ସ୍ୱରୂପ ପରିଦୃଷ୍ଟ ହୁଏ । ସେହି ସୃଷ୍ଟିରେ ଆମେ ଆମକୁ ଦେଖିବାକୁ ପାଉଁ । ଆମ ଜାତୀୟ ଜୀବନର ପରିଚୟ ଲାଭ କରୁଁ । ଜାତିର ସୁଖ-ଦୁଃଖ, ଆଶା-ନିରାଶା, ମିଳନ-ବିରହ, ସର୍ବୋପରି ଜାତିର ଅନ୍ତରାତ୍ମା ସାହିତ୍ୟରେ ପ୍ରତିବିମ୍ବିତ ହୋଇଥାଏ । ତେଣୁ ସାହିତ୍ୟ ଓ ଜାତି ଏକ ସୂତ୍ରରେ ଗ୍ରଥିତ । ଜାତୀୟ ଜୀବନର ଯାବତୀୟ ଆଦର୍ଶ, ଯାବତୀୟ ଆକାଂକ୍ଷା ସାହିତ୍ୟ ବକ୍ଷରେ ଗୋଟାଏ ଅବିଚ୍ଛିନ୍ନ ଧାରା ବୁହାଇ ଦିଏ । ଜାତୀୟ ଜୀବନ ବିକାଶ ପଥରେ ସାହିତ୍ୟ ପ୍ରଧାନ ସହାୟକ । ପ୍ରତ୍ୟେକ ଜାତିର ଭାଷା ଓ

Digitized by srujanika@gmail.com

ସାହିତ୍ୟରେ ସେହି ଜାତିର ଗୌରବ, କୃଷି ଓ ସଭ୍ୟତା ପରିଫଳିତ ହୁଏ ଏବଂ ଜାତୀୟ ଜୀବନରେ ସାହିତ୍ୟ ତାର ଅଭିବୃଦ୍ଧି ଘଟାଇ ଗୋଟାଏ ସୁଦୂରପ୍ରସାରୀ ପରିବର୍ତ୍ତନ ଆଣେ । ସୁତରାଂ ସାହିତ୍ୟରେ ବିକାଶ ଓ ଜାତୀୟ ଜୀବନର ଉତ୍କର୍ଷ ପରସ୍ପରଠାରୁ ବିଚ୍ଛିନ୍ନ ନୁହେଁ । ପୁଣି ସାହିତ୍ୟ ଜୀବନର ପ୍ରତିବିମ୍ବ ହେବାରୁ ତାହା ମହାଜାତୀୟ ଜୀବନର ଉଜ୍ଜ୍ୱଳ ଓ ସତ୍ୟସୁନ୍ଦର ଚିତ୍ର ପ୍ରକଟିତ କରି ଜାତିକୁ କ୍ରମୋନ୍ନତି ପଥରେ ଅଗ୍ରସର କରାଏ । ଅବଶ୍ୟ କୌଣସି ଜାତି ପୃଥିବୀର ଅନ୍ୟାନ୍ୟ ଜାତି ସଙ୍ଗରେ କାନ୍ଧକୁ କାନ୍ଧ ନ ପକାଇ ଏକାକୀ ତିଷ୍ଠି ପାରେ ନାହିଁ । ତଥାପି ଜାତୀୟ ସ୍ୱାତନ୍ତ୍ର୍ୟ ରକ୍ଷା କରି ସମସ୍ତଙ୍କ ସଙ୍ଗରେ ସେ ଗୋଟିଏ ହୋଇ ରହିଥାଏ ।

ସୁକବି ବା ସୁଲେଖକ ଜାତୀୟଭାବକୁ ଲୋକସମକ୍ଷରେ ପ୍ରକଟିତ କରି ଦିଅନ୍ତି । ସମଗ୍ର ଜାତି ସେମାନଙ୍କ ଲେଖାରେ ଆପଣାର ଚରି ବିକାଶ ଦର୍ଶନ କରି, ସେହି ଦର୍ପଣରେ ଆପଣା ରୁଚିର ପୁନର୍ବିକାଶ ଦେଖି ଆତ୍ମହରା ହୁଏ । ଜାତୀୟ ସାହିତ୍ୟ ଓ ଜାତୀୟ ସଭ୍ୟତା ଅଙ୍ଗାଙ୍ଗୀଭାବେ ଜଡ଼ିତ । ଯୁଗର ରୁଚି ଅନୁସାରେ ସାହିତ୍ୟ ସ୍ରୋତ ପ୍ରଧାବିତ ହୁଏ । ରୁଚିର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସ୍ରୋତର ବି ପରିବର୍ତ୍ତନ ହୁଏ । ଯେଉଁ ପ୍ରଭାବ ଜାତି ଉପରେ ବିସ୍ତୃତ ହୋଇ, ଜାତିକୁ ଉନ୍ନତି ପଥରେ ଅଗ୍ରସର କରାଏ—ସେହି ପ୍ରଭାବ ଜାତୀୟ ସାହିତ୍ୟ ଉପରେ ମହିମା ବିସ୍ତାର କରି ସାହିତ୍ୟକୁ ଉନ୍ନତ ମାର୍ଗକୁ ଘେନିଯାଏ । ଯେଉଁ ସାହିତ୍ୟିକ ବା କବିଙ୍କ ଲେଖାରେ ତଦାନୀନ୍ତନ ଯୁଗର ଗୀତ ପରିସ୍ଫୁଟ ହୋଇଥାଏ, ସେହି ଲେଖକ ବା କବିମାନେ ସେହି ସେହି ଯୁଗର ପ୍ରତିନିଧି ବୋଲି ବିବେଚିତ ହୋଇଥାନ୍ତି । ସେହିମାନେହିଁ ଜାତୀୟ ସାହିତ୍ୟର ବିଧାୟକ । ସେହିମାନଙ୍କ ସାହିତ୍ୟ ପାଠ କରି ଜାତି ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ଉନ୍ନତିରେ ପ୍ରଧାବିତ ହୁଏ । ତେଣୁ ସେହିପରି ସାହିତ୍ୟର ରକ୍ଷଣାବେକ୍ଷଣ ଓ କ୍ରମୋନ୍ନତିରେ ଜାତିର କର୍ତ୍ତବ୍ୟ ଅପରିସୀମ । ଯୁଗ ଯୁଗ ଧରି ସାହିତ୍ୟକୁ ବଞ୍ଚାଇ ରଖିବାର ଦାୟିତ୍ୱ ଜାତି ଉପରେ ନ୍ୟସ୍ତ । ଜାତି କଦାପି ଏ ଦାୟିତ୍ୱରୁ ଅବ୍ୟାହତି ପାଇ ନ ପାରେ । ତେଣୁ ପ୍ରତ୍ୟେକ ସଭ୍ୟ ତଥା ପ୍ରଗତିଶୀଳ ଜାତି ତାଙ୍କର ଜାତୀୟ ସାହିତ୍ୟକୁ ଶ୍ରେଷ୍ଠ ଆସନ ଦେଇ ତାର ଆଲୋଚନା ଓ ସମାଲୋଚନାରେ ମନପ୍ରାଣ ଢାଳି ଦେଇଥାନ୍ତି । ଅଧିକନ୍ତୁ ସେହି ସାହିତ୍ୟର କିପରି କ୍ରମୋନ୍ନତି ସାଧିତ ହେବ ସେଥି ସକାଶେ ନାନାବିଧ ଯୋଜନା ମଧ୍ୟ ପ୍ରସ୍ତୁତ କରିଥାନ୍ତି ।

Digitized by srujanika@gmail.com

ପ୍ରାଚୀନ ଉତ୍କଳ ସାହିତ୍ୟ ପ୍ରତି ଦୃଷ୍ଟିପାତ କଲେ ସର୍ବାଗ୍ରେ ଜାତୀୟ ସାହିତ୍ୟରଥୀ ସିଦ୍ଧମୁନି ସାରଳା ଦାସଙ୍କ ଉପରେ ଆମର ଦୃଷ୍ଟି ପଡ଼େ । ତାଙ୍କ ରଚିତ ମହାଭାରତରେ ସେ ଓଡ଼ିଆ ଜାତିର ପ୍ରାଣ ପ୍ରତିଷ୍ଠା କରି ଯାଇଛନ୍ତି । ଆମ୍ଭ ଜାତୀୟ ଜୀବନର ପୂର୍ଣ୍ଣାଙ୍ଗ ଚିତ୍ର ସେଠାରେ ପ୍ରତିଫଳିତ । କି ସାମାଜିକ କି ଅର୍ଥନୈତିକ ସମସ୍ତ ଜୀବନର ଚିତ୍ର ସେଠାରେ ସୁସ୍ପଷ୍ଟ । ତାଙ୍କପରେ ଚୈତନ୍ୟଙ୍କ ପଞ୍ଚସଖାମାନଙ୍କ ମଧ୍ୟରୁ ମହାପୁରୁଷ ଜଗନ୍ନାଥ, ଭାବବିଳାସୀ ବଳରାମ, ଯୋଗୀ ଓ ଅନୁସନ୍ଧାନୀ ଅଚ୍ୟୁତାନନ୍ଦ ସେମାନଙ୍କ ଅମର ଲେଖନୀରେ ଜାତିର ଅଶେଷ କଲ୍ୟାଣ ସାଧନ କରିଯାଇ ଅଛନ୍ତି । ଜଗନ୍ନାଥଙ୍କର ଭାଗବତ, ବଳରାମଙ୍କ ରାମାୟଣ ଓ ଅଚ୍ୟୁତାନନ୍ଦଙ୍କ ହରିବଂଶ ସମଗ୍ର ଓଡ଼ିଶାରେ ସମାଦର ଲାଭ କରିଛି । ସମଗ୍ର ଓଡିଆ ଜାତିର ଚିତ୍ତ ରାଜ୍ୟରେ ସେମାନଙ୍କର ପ୍ରତିଷ୍ଠାଭୂମି ରଚିତ । ସେଗୁଡ଼ିକରେ ମଧ୍ୟ ଆମ ଜାତିର ନାନାବିଧ ଚିତ୍ରର ପରିଚୟ ମିଳେ । ସାହିତ୍ୟ ସୃଷ୍ଟିରେ ସେମାନଙ୍କ ମୌଳିକତା ଅତୀବ ପ୍ରଶଂସନୀୟ । ତାପରେ ଉତ୍କଳ-ସାହିତ୍ୟ କ୍ଷେତ୍ରରେ ଯେଉଁ କବି ବା ସାହିତ୍ୟରଥୀମାନଙ୍କର ଆବିର୍ଭାବ ହେଲା, ସେମାନେ ବି ଆମ ଜାତୀୟ ସାହିତ୍ୟକୁ ନାନା ଭାବରେ ପରିପୁଷ୍ଟ କଲେ, ଉତ୍କଳ-ସାହିତ୍ୟ ଭଣ୍ଡାରକୁ ଅଭିନବ ଓ ଅମୂଲ୍ୟ ସମ୍ପଦରେ ପରିପୂର୍ଣ୍ଣ କଲେ । ବୀରର ଦୃଷ୍ଟିରେ ଦେଖିଲେ ଭାବଙ୍କଭୋର ଅର୍ଜୁନ ରସିକଭକ୍ତ ଦେବଦୁର୍ଲ୍ଲଭ, କାନ୍ତକୋମଳ ପଦାବଳୀ ରସିକ ଦୀନକୃଷ୍ଣ, ପ୍ରେମିକକବି ଭୂପତି ପଣ୍ଡିତ, ଅଦ୍ଭୁତ କଳ୍ପନା-ବିଳାସୀ ରାମୋପାସକ କବି ସାର୍ବଭୌମ ଉପେନ୍ଦ୍ର, ଭକ୍ତ ସଦାନନ୍ଦ ବ୍ରହ୍ମା, ଭକ୍ତ ଶିରୋମଣି ପଣ୍ଡିତ କବି ଅଭିମନ୍ୟୁ, ପ୍ରେମ ଭକ୍ତ ଉପାସକ କବି ଭକ୍ତ ଚରଣ, ସମର ତରଙ୍ଗ କବି ବ୍ରଜନାଥ, କବିସୂର୍ଯ୍ୟ ବଳଦେବ, ହାସ୍ୟରସିକ କବି ଯଦୁମଣି, ସିଦ୍ଧଗାୟକ ଗୋପାଳକୃଷ୍ଣ ପ୍ରଭୃତି ମହାତ୍ମାଗଣ ସ୍ୱ ସ୍ୱ ଅଲୌକିକ ପ୍ରତିଭା ଦ୍ୱାରା ଜାତୀୟ ସାହିତ୍ୟକୁ ଉନ୍ନତ କରିଯାଇଛନ୍ତି । ତାପରେ ଊନବିଂଶ ଶତାବ୍ଦୀରେ ଫକୀରମୋହନ, ରାଧାନାଥ, ମଧୁସୂଦନ, ଗଙ୍ଗାଧର, ନନ୍ଦକିଶୋର, କୁନ୍ତଳାକୁମାରୀ, ଗୋପବନ୍ଧୁ ପ୍ରଭୃତି କବିମାନେ ସ୍ୱ ସ୍ୱ ପ୍ରଜ୍ଞା ବଳରେ ଆଧୁନିକ ଓଡ଼ିଆ ସାହିତ୍ୟକୁ ବୈଚିତ୍ର୍ୟମୟ କଲେ । ପ୍ରାଚୀନ କାଳର ଅଳଙ୍କାରବତୀ ସାହିତ୍ୟ ସୁନ୍ଦରୀ ଅଭିନବ ବେଶଭୂଷାରେ ବିମଣ୍ଡିତା ହୋଇ ଦେଶାତ୍ମବୋଧ ଓ ଜାତୀୟତା ବୋଧରେ ପାଠକ ଗୋଷ୍ଠୀକୁ ଅନୁପ୍ରାଣିତ କଲେ । ବିଶ୍ୱପ୍ରୀତି

Digitized by srujanika@gmail.com

ଓ ଭଗବତ୍ ପ୍ରୀତିର ଧାରା ଆମ ସାହିତ୍ୟରେ ପ୍ରବାହିତ ହେବାକୁ ଲାଗିଲା । ପୁନରାୟ ଜାତୀୟ ଜୀବନ ସହିତ ସାହିତ୍ୟର ସଂଯୋଗ ଦୃଢ଼ ଭାବରେ ସ୍ଥାପିତ ହେଲା । ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଜନ୍ମ ଗ୍ରହଣ କରି ଯେଉଁ ସାହିତ୍ୟରଥୀମାନେ ଆମ ସାହିତ୍ୟକୁ କାବ୍ୟ, କବିତା, ନାଟକ, ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପାଦିରେ ଭୂଷିତ କଲେ, ସେମାନେ ସମସ୍ତେ ଜାତିର କଲ୍ୟାଣଭାଜନ ହୋଇ ଅଛନ୍ତି; ମାତ୍ର ଅଭିନିବେଶ ସହକାରେ ଚିନ୍ତା କଲେ ଦେଖାଯାଏ ଯେ, ସେମାନଙ୍କ ସୃଷ୍ଟ ସାହିତ୍ୟ ଧୀର ମନ୍ଥର ଗତିରେ ଚାଲିଛି । ଖୁବ୍ ଉଚ୍ଚଧରଣର କାବ୍ୟ, କବିତା, ଉପନ୍ୟାସ ବା କ୍ଷୁଦ୍ର ଗଳ୍ପର ଅଭାବ ଯେପରି ଅନୁଭୂତ ହେଉଛି ଲେଖକମାନଙ୍କର ଶକ୍ତି ଯେ ନାହିଁ ମୁଁ ତାହା କହୁନାହିଁ । କେବଳ ସାଧନା, ଉତ୍ସାହ ଏବଂ ସମବେତ ଚେଷ୍ଟା ଅଭାବରୁ ସେମାନେ ଆଶାନୁରୂପ ଭାବେ ଅଗ୍ରସର ହୋଇ-ପାରି ନାହାନ୍ତି । ଅଧ୍ୟବସାୟ ଥିଲେ ମଧ୍ୟ ସମବେତ ଚେଷ୍ଟା ଓ ଉତ୍ସାହ ନ ଥିଲେ କୌଣସି ଜିନିଷର ଆଶୁ ଉନ୍ନତି ଆଶା କରିବା ବୃଥା । ବିଶେଷ କରି ସାହିତ୍ୟର ଉନ୍ନତି । ଏକକ ବା ବ୍ୟକ୍ତିଗତ ଭାବରେ ଚେଷ୍ଟା କଲେ ଏ ଯୁଗରେ ସାମାଜିକ କାର୍ଯ୍ୟ ସୁଫଳ ଲାଭ କରେ ନାହିଁ । ସାହିତ୍ୟର ଉନ୍ନତି ଗୋଟାଏ ସାମାଜିକ କାର୍ଯ୍ୟ । ଏହି ସାମାଜିକ କାର୍ଯ୍ୟ ସୁସମ୍ପନ୍ନ କରିବାକୁ ଗଲେ, ପ୍ରଚୁର ଅର୍ଥ ଓ ସମ୍ମିଳିତ ଚେଷ୍ଟାର ପ୍ରୟୋଜନ । ସେଥିପାଇଁ ଯେଉଁମାନେ ଆମ ଜାତୀୟ ସାହିତ୍ୟ ଉନ୍ନତିରେ ଏ ପର୍ଯ୍ୟନ୍ତ ଚେଷ୍ଟା କରି ଆସି ଅଛନ୍ତି, ସେମାନଙ୍କ ଚେଷ୍ଟା ସାଫଲ୍ୟ ମଣ୍ଡିତ ହୋଇନାହିଁ । ତେଣୁ ଆଜି ଆମ ଜାତୀୟ ସାହିତ୍ୟରେ କେତେଗୁଡ଼ିଏ ଅଭାବ ରହିଯାଇଛି । ସେ ଅଭାବ ପୂରଣରେ ସରକାର—ବିଶେଷ କରି ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଚେଷ୍ଟିତ ନ ହେଲେ, ଆମ ଜାତୀୟ ସାହିତ୍ୟ ଉନ୍ନତି ପଥରେ ଅଗ୍ରସର ହୋଇ ପାରିବ ନାହିଁ ।

ଉଦାହରଣ ସ୍ୱରୂପ—

(ବିଶ୍ୱବିଦ୍ୟାଳୟ ତରଫରୁ)

୧ । ସବିଂତଥ୍ୟ ସନ୍ନିବେଶିତ, ତୁଳନାତ୍ମକ, ଆଧୁନିକ ଗବେଷଣା ଭିତ୍ତିମୂଳକ ଓଡ଼ିଆ ସାହିତ୍ୟର କ୍ରମବିକାଶ ଦେଖାଇ ଗୋଟାଏ ବ୍ୟାପକ ଗ୍ରନ୍ଥ ଏ ପର୍ଯ୍ୟନ୍ତ ପ୍ରକାଶିତ ହୋଇନାହିଁ ।

Digitized by srujanika@gmail.com

୨ । ଓଡ଼ିଆ ଭାଷାର ମୂଳସୂତ୍ର, ଉତ୍ପତ୍ତି ଓ କ୍ରମବିକାଶ ଦେଖାଇ ବୈଜ୍ଞାନିକ ପ୍ରଣାଳୀରେ ଖଣ୍ଡେ ପୁସ୍ତକ ସଙ୍କଳିତ ହୋଇନାହିଁ ।

୩ । ଯୁକ୍ତିପୂର୍ଣ୍ଣ ଗଠନମୂଳକ ଓ ଗବେଷଣାପୂର୍ଣ୍ଣ ଉଚ୍ଚକୋଟୀର ସମାଲୋଚନା ସାହିତ୍ୟ ଆମ ଦେଶରେ ଏ ପର୍ଯ୍ୟନ୍ତ ଜନ୍ମଲାଭ କରିନାହିଁ ।

୪ । ସାହିତ୍ୟ ଆଲୋଚନା, ବିଜ୍ଞାନ-ଆବିଷ୍କାର, ବିଦେଶ ଭ୍ରମଣ ବୃତ୍ତାନ୍ତ, ବାଣିଜ୍ୟ ବ୍ୟବସାୟ ଓ କଳାନୁଶୀଳନ, ଜୀବନୀ ଇତ୍ୟାଦି ବିଷୟରେ ସରଳ, ପ୍ରାଞ୍ଜଳ, ଚିନ୍ତାଶୀଳ, ସୁରୁଚିସମ୍ପନ୍ନ ପାଠ୍ୟପୁସ୍ତକର ଅଭାବ ଏବେ ମଧ୍ୟ ପରିଦୃଷ୍ଟ ହୁଏ ।

୫ । ବୈଜ୍ଞାନିକ ଓ ଦାର୍ଶନିକ ପାରିଭାଷିକ ଶବ୍ଦାବଳୀ ସମ୍ବଳିତ ଗୋଟିଏ ଅଭିଧାନ ବି ଆମର ନାହିଁ ।

୬ । ଅନ୍ୟାନ୍ୟ ଉଚ୍ଚ ସାହିତ୍ୟର ଶିକ୍ଷାପୂର୍ଣ୍ଣ ନାନା ଶ୍ରେଣୀର ଗ୍ରନ୍ଥ-ମାନ ବିଶୁଦ୍ଧ ଓଡ଼ିଆ ଭାଷାରେ ଅନୁବାଦ କରି, ପ୍ରକାଶ କରିବା କାର୍ଯ୍ୟରେ ଆମେ ଏ ପର୍ଯ୍ୟନ୍ତ ବିଶେଷ ଭାବରେ ଅଗ୍ରସର ହୋଇନାହୁଁ ।

ଏହିପରି ଗୁରିଆଡ଼େ ଆମର ଅଭାବ ରହିଛି । ଏହି ଅଭାବ ଦୂରୀ-କରଣରେ ବିଶ୍ୱବିଦ୍ୟାଳୟର ଦାୟିତ୍ୱ ଅପରିସୀମ । ବିଶ୍ୱବିଦ୍ୟାଳୟ ଜାତିର ଓ ଦେଶର ସର୍ବୋଚ୍ଚ ଶିକ୍ଷା କେନ୍ଦ୍ର । ଜାତି ବା ଦେଶ ସେହି ବିଶ୍ୱବିଦ୍ୟାଳୟରୁ ଆଲୋକ ପାଏ । ତେଣୁ ଜାତି ଯେଉଁ ପରିମାଣରେ ବିଶ୍ୱବିଦ୍ୟାଳୟରୁ ଆଲୋକ ପାଇବ, ଠିକ୍ ସେହି ପରିମାଣରେ ଜାତି ଆଲୋକିତ ହେବ । ଶିକ୍ଷା, ସଭ୍ୟତା ଓ କୃଷ୍ଟିର ଆଦର୍ଶରେ ଜାତି ଅନୁପ୍ରାଣିତ ହେବ ।

ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ଚେଷ୍ଟା କଲେ ଜାତିକୁ ଅଳ୍ପ ସମୟରେ ଉନ୍ନତିର ଚରମ ସୀମାରେ ସମୁନ୍ନିତ କରି ପାରିବେ । ଜାତିର ଯାହା କ୍ଷୁଦ୍ର ଅଛି, ତାକୁ ମହତ୍ କରିଦେଇ ପାରିବେ । ଯାହା ଅସ୍ପଷ୍ଟ ଅଛି ତାକୁ ସ୍ପଷ୍ଟ କରିଦେଇ ପାରିବେ । କେବଳ ପ୍ରୟୋଜନ ଉନ୍ନତ ଦୃଷ୍ଟିକୋଣ ଓ ଅକ୍ଳାନ୍ତ ପରିଶ୍ରମ । ଆମର ବିଶ୍ୱବିଦ୍ୟାଳୟମାନ କାଳ ବିଳମ୍ବ ନ କରି ଆମର କେଉଁ ଦିଗରେ କଣ ସୁବିଧା ଅସୁବିଧା ରହିଛି, ତାହା ଉତ୍ତମରୂପେ ହୃଦୟଙ୍ଗମ କରି କାର୍ଯ୍ୟ ଆରମ୍ଭ କରିଦେଲେ ଆମ ଜାତିର ସର୍ବାଙ୍ଗୀନ ଉନ୍ନତି ହେବ, ଏଥିରେ ସନ୍ଦେହ ନାହିଁ । ବିଶେଷ କରି—ଉତ୍କଳ ସାହିତ୍ୟର ଉନ୍ନତିରେ ମନ ବଳାଇଲେ ଆମ ସାହିତ୍ୟ ଅନ୍ୟ ଅପେକ୍ଷା ଉଚ୍ଚାସନ ପାଇବ ।

Digitized by srujanika@gmail.com

ଆମ ଦେଶରେ ଏ ପର୍ଯ୍ୟନ୍ତ ସହସ୍ର ସହସ୍ର ଅପ୍ରକାଶିତ ଗ୍ରନ୍ଥମାନ ରହିଛି । ସହସ୍ର ସହସ୍ର ଗାଉଁଲି କଥନ ବି ରହିଛି । ସେଗୁଡ଼ିକୁ ଲୋକଚକ୍ଷୁର ସମକ୍ଷକୁ ଅଣାଇ ପାରିଲେ ଆମର ଅଶେଷ ଉପକାର ହୁଅନ୍ତା—ସାରା ପ୍ରଦେଶରେ ଓ ପ୍ରଦେଶର ବାହାରେ ଥିବା ଅସଂଖ୍ୟ ଶିଳାଲେଖ, ଖୋଦିତ ଲିପି, ତାମ୍ରଲିପିଗୁଡ଼ିକୁ ଏକତ୍ରିତ କରି ବିଶୁଦ୍ଧ ପାଠସହ ବିଶ୍ୱବିଦ୍ୟାଳୟ ତରଫରୁ ପ୍ରକାଶ କଲେ ଜାତି ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କ ନିକଟରେ ଚିରକୃତଜ୍ଞ ରହନ୍ତା । ଓଡ଼ିଶା ଇତିହାସ ବା ଓଡ଼ିଆ ସାହିତ୍ୟର ଇତିହାସ ଲେଖନକାର୍ଯ୍ୟ ସହଜସାଧ୍ୟ ହୁଅନ୍ତା—ଅନ୍ୟାନ୍ୟ ପ୍ରଦେଶରେ, ବିଶେଷ କରି ମାନ୍ଦ୍ରାଜରେ ଭିଗଙ୍ଗାଗୃହିଆ ଓ ବେନଗୋପାଳଚେଟି ଅନେକଗୁଡ଼ିଏ ଲିପି ଉଦ୍ଧାର କରି ପୁସ୍ତକାକାରରେ ପ୍ରକାଶ କରିଛନ୍ତି । ସେଥିରେ ଆମ ଓଡ଼ିଆ ରାଜବଂଶାବଳୀର ଇତିହାସ ବହନ କରି କେତେକ ଲିପି ଅଛି । ମାତ୍ର ସେଗୁଡ଼ିକ ବିଶୁଦ୍ଧରୂପେ ପଠିତ ହୋଇ ନ ଥିବାରୁ ଅନେକ ଭ୍ରମ ରହିଯାଇଛି । ଓଡ଼ିଶାର ବିଶିଷ୍ଟ ପଣ୍ଡିତ ଓ ଐତିହାସିକମାନଙ୍କ ଦ୍ୱାରା ଉକ୍ତ ଲିପିଗୁଡ଼ିକୁ ସଂଶୋଧନ କରାଇ ପୁସ୍ତକାକାରରେ ଅତିଶୀଘ୍ର ପ୍ରକାଶ କରିବା ଉଚିତ । ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଅନାୟାସରେ ଏ କାର୍ଯ୍ୟ କରିପାରିବେ । ଏହାଦ୍ୱାରା ଆମର ଗବେଷଣା କାର୍ଯ୍ୟ ସୁରୁଖୁରୁରେ ଗତି କରିବ । ଅନ୍ୟାନ୍ୟ ପ୍ରାଦେଶିକ ସାହିତ୍ୟରେ ଯଥେଷ୍ଟ ଗବେଷଣା ହୋଇଗଲାଣି । ଆମେ ଏ ପର୍ଯ୍ୟନ୍ତ ଆରମ୍ଭ କରିନାହୁଁ । ଅଥଚ ଆମ ପ୍ରାଚୀନ ସାହିତ୍ୟ ଅନ୍ୟାନ୍ୟ ପ୍ରାଦେଶିକ ସାହିତ୍ୟ ଅପେକ୍ଷା ବେଶୀ ବିଭବଶାଳୀ । ଆମର ସାହିତ୍ୟଭଣ୍ଡାର ନାନା ରତ୍ନରାଜିରେ ପରିପୂର୍ଣ୍ଣ । ସେହି ସଂପଦଗୁଡ଼ିକୁ ବାହ୍ୟଜଗତ ସମ୍ମୁଖରେ ଦର୍ଶାଇବାକୁ ପଡ଼ିବ । ଉଦାହରଣସ୍ୱରୂପ—ସାରଳା ମହାଭାରତର ଆଦର୍ଶ ଚରିତ୍ର-ଚିତ୍ରଣ ଓ କବିଙ୍କ ମୌଳିକତା, ଜଗନ୍ନାଥ ଭାଗବତରେ କବିଙ୍କ ଅନୁବାଦ କ୍ଷମତା ଓ ପାଣ୍ଡିତ୍ୟ, ଅନ୍ୟାନ୍ୟ ପଞ୍ଚସଖା ସାହିତ୍ୟରେ ଶରୀର ବା ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ଓ ମହିମାଧର୍ମର ମାହାତ୍ମ୍ୟ, ଦୀନକୃଷ୍ଣଙ୍କର ଭକ୍ତି-ରସାତ୍ମକ ପ୍ରସାଦଗୁଣ, ଭକ୍ତକବି ଭକ୍ତ ଦାସଙ୍କ କରୁଣରସ ବର୍ଣ୍ଣନା, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଅତୁଳନୀୟ ଅଳଙ୍କାରଛଟା, ଶବ୍ଦଯୋଜନା ଓ ଆଦିରସ ବର୍ଣ୍ଣନା, ଅଭିମନ୍ୟୁଙ୍କ ପଦଲାଳିତ୍ୟ, ଭାବମୂର୍ଚ୍ଛନା ଓ ପ୍ରୀତିବର୍ଣ୍ଣନା, ବଳଜେନାଙ୍କ ଯୁଦ୍ଧ ବର୍ଣ୍ଣନା, କବିସୂର୍ଯ୍ୟଙ୍କ ମଧୁର ସଙ୍ଗୀତ ଓ ମନସ୍ତାତ୍ତ୍ୱିକ ପ୍ରକୃତି ଚିତ୍ରଣ, ଗୋପାଳକୃଷ୍ଣଙ୍କର ଔଦାର୍ଯ୍ୟ ଓ ତାଙ୍କ କବିତାର ଅନ୍ତର୍ଦୃଷ୍ଟି

Digitized by srujanika@gmail.com

ଫକୀରମୋହନଙ୍କ ବାସ୍ତବ ଚିତ୍ର ପରିସ୍ଫୁଟନରେ ଅସାମାନ୍ୟ କ୍ଷମତା, ରାଧାନାଥଙ୍କ ସୌନ୍ଦର୍ଯ୍ୟ ପୂଜା, ଭକ୍ତକବି ମଧୁସୂଦନଙ୍କ ଋଷି ପ୍ରାଣେ ଦେବାବତରଣ ଚିତ୍ର, ଗଙ୍ଗାଧରଙ୍କ ମନମୁଗ୍ଧକର ପ୍ରାକୃତିକ ଶୋଭା ବର୍ଣ୍ଣନା ଆଦର୍ଶବାଦ ଓ ନାୟକ ନାୟିକାର ଅନ୍ତର୍ଦ୍ୱନ୍ଦ୍ୱ ଏବଂ ମାନସିକ ଦ୍ୱନ୍ଦ୍ୱ ବର୍ଣ୍ଣନା, କୁନ୍ତଳାକୁମାରୀଙ୍କର କାବ୍ୟରେ ବିଶ୍ୱପ୍ରୀତି, ପଣ୍ଡିତ ଗୋପବନ୍ଧୁଙ୍କ କବିତାର ଦେଶାତ୍ମବୋଧ ପ୍ରଭୃତି ପ୍ରତି ଆମ ଦେଶର ପାଠକ ସମାଜର ଦୃଷ୍ଟି ଆକର୍ଷଣ କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ପ୍ରଦେଶ ଓ ପୃଥିବୀର ପ୍ରସିଦ୍ଧ ସାହିତ୍ୟିକମାନଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ପଡ଼ିବ । ତାହାହେଲେ ଆମ ସାହିତ୍ୟ ବିଶ୍ୱ ସାହିତ୍ୟ ଦରବାରରେ ସ୍ଥାନ ପାଇବ । ତେଣୁ ବିଶ୍ୱବିଦ୍ୟାଳୟ ପକ୍ଷରୁ ଉପରୋକ୍ତ କବି ବା ସାହିତ୍ୟିକମାନଙ୍କର କାବ୍ୟ, କବିତା ଓ ଅନ୍ୟାନ୍ୟ ଲେଖାର ଉତ୍କୃଷ୍ଟାଂଶମାନ ନିର୍ବାଚନ କରି ଟୀକାସହ ପୁସ୍ତକାକାରରେ ପ୍ରକାଶ କରିବାକୁ ହେବ ଏବଂ ହିନ୍ଦି ଓ ଇଂରାଜୀ ଭାଷାରେ ଅନୁବାଦ କରି ଦେଶ ବିଦେଶରେ ପ୍ରଚାର କରିବାକୁ ହେବ । ପ୍ରତିବର୍ଷ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ସର୍ବୋତ୍କୃଷ୍ଟ ଲେଖକ ଲେଖିକାଙ୍କୁ ଉତ୍ସାହ ଦେବା ନିମନ୍ତେ ସେମାନଙ୍କ ସର୍ବଶ୍ରେଷ୍ଠ ରଚନାପାଇଁ ପୁରସ୍କାରମାନ ଘୋଷଣା କରିବାକୁ ପଡ଼ିବ । ଏହିପରି ନାନାବିଧ ଉପାୟମାନ ଅବଲମ୍ବିତ ହେଲେ, ଆମର ଜାତୀୟ ସାହିତ୍ୟର ଉନ୍ନତି ହେବ, ଏଥିରେ ସନ୍ଦେହ ନାହିଁ ।

Digitized by srujanika@gmail.com